

# ସାରଳା ସାହିତ୍ୟ ପରିକ୍ରମା

ସୁରେନ୍ଦ୍ର କୁମାର ମହାରଣା

ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

# ସାରଳା ସାହିତ୍ୟ ପରିକ୍ରମା

ଶ୍ରୀ ସୁରେନ୍ଦ୍ର କୁମାର ମହାରଣା, ଏମ୍ ଏ.



ଓଡ଼ିଶା ବୁକ୍ ଷ୍ଟୋର

ଲେଖକ :

ସୁରେନ୍ଦ୍ର କୁମାର ମହାରଣା, ଏମ୍. ଏ.

ପ୍ରକାଶକ :

ଗୋବିନ୍ଦଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୧

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ,**

କଟକ—୭୫୩୦୦୨

ମୂଲ୍ୟ—ଟ ୧୫-୦୦ (ସାଧାରଣ)
ଟ ୨୦-୦୦ (ବନ୍ଧାଇ)

**SARALA SAHITYA PARIKRAMA**

By :

**Surendra Kumar Maharana**

Publisher by :

Gobind Charan Patra

**ORISSA BOOK STORE**

Binodbehari Cuttack-753002

1st Edition—1981

**Price-Rs 15/-**

**Bound 20/-**

# ଉତ୍ସର୍ଗ

ମା ସାରଳା !
ଝଙ୍କଡ଼ବାସିନୀ, ସିଂହବାହିନୀ,
ଦୁର୍ଗତିନାଶିନୀ, ବରାଭୟ ଦାୟିନୀ ।
ତୋ କୃପାବଳରେ ମୂକ ବାଚାଳ ହୋଇପାରେ,
ପଙ୍ଗୁ ଗିରି ଲଂଘିପାରେ,
ମୂର୍ଖ ସିଦ୍ଧେଶ୍ୱର ପରିଡ଼ା ସାରଳା ଦାସ ହୋଇପାରେ,
'ଶୂଦ୍ରମୁନି' ଆଉ 'ଚଣ୍ଡୀପୁତ୍ର' ହୋଇପାରେ,
ସୁବିପୁଳ ସାହିତ୍ୟ-କୃତିର ଅଧିକାରୀ ହୋଇପାରେ,
କାଳ କାଳକୁ ଅକ୍ଷୟ କୀର୍ତ୍ତି ରଖିପାରେ ।

ଆଉ ମୋ ଭଳି ଅଜ୍ଞାନ ଅର୍ବାଚୀନ ମଧ୍ୟ
ତୋତେ ସୁମରଣା କରି ଚଣ୍ଡୀପୁତ୍ର ସାରଳାଦାସର
ସେହି ବିପୁଳକାୟ ସାହିତ୍ୟ ଉପରେ ଯତ୍କିଞ୍ଚିତ୍
ଆଲୋକପାତ କରିବା ପାଇଁ ସାହସ କରିପାରେ ;
ସେହି ସାହସୋଦ୍ଭବ ପ୍ରସୂନଟିକୁ
ତୋର ପଦ୍ମପୟରରେ ଅର୍ପଣ କରିବା ବ୍ୟତୀତ
ଏ ଅର୍ବାଚୀନ ଅଧିକ କ'ଣ କରିପାରେ ???

# ନିଜ କଥା

ପ୍ରାଚୀନ ସାହିତ୍ୟ ପ୍ରତି ଆଗ୍ରହ ମୋର ବହୁଦିନର । ପିଲାଦିନେ ବିଭିନ୍ନ ପୁରାଣ ପଢ଼ିବାର ସୁଯୋଗ ପାଇଥିଲି । ଗାଁ ଚାଟଶାଳୀରେ ପଢ଼ିବା ସମୟରେ ଚାଟଶାଳୀ ପାଠ, ରାସକ୍ରୀଡ଼ା, ଗୋପୀଭାଷା, ଛାନ୍ଦ ରତ୍ନାକର ଇତ୍ୟାଦି ଗ୍ରନ୍ଥ ମଧ୍ୟ ପଢ଼ି-ଥିଲି । ପ୍ରତିଦିନ ସନ୍ଧ୍ୟାରେ ମା' (ଜେଜୀ) ପାଖରେ ବସି ଭାଗବତ ଅଧ୍ୟାୟେ ଲେଖାଏଁ ପଢ଼ିବା ଥିଲା ମୋର ଅଭ୍ୟାସ । ଏହାଫଳରେ ଦଶମ ସ୍କନ୍ଧ (ଗୋପଲୀଳା) ଓ ଏକାଦଶ ସ୍କନ୍ଧ ଭାଗବତ ମୂଳରୁ ଶେଷଯାଏଁ ଅନେକ ଥର ପଢ଼ିଥିଲି । ସୌଭାଗ୍ୟ-ବଶତଃ ଆମ ଘରେ ଦୁଇ ପଇସିକିଆ, ଅଣିକିଆ ଗ୍ରେଟ ବହିଠାରୁ ଆରମ୍ଭ କରି ବିଭିନ୍ନ ବ୍ରତ, ଉପବାସ ସମ୍ବନ୍ଧୀୟ ବହୁ ମଧ୍ୟମ ଧରଣର ପୁସ୍ତକ ଏବଂ ରାମାୟଣ, ମହାଭାରତ, ପଦ୍ମପୁରାଣ, ଚଣ୍ଡୀପୁରାଣ, ବିଲଙ୍କାରାମାୟଣ ଭଳି ଅନେକ ପୁରାଣ ରହିଥିଲା । ଭଲଭାବେ ବୁଝେଁ ବା ନ ବୁଝେଁ ସେତେବେଳେ ସେ ପୁସ୍ତକରୁ କିଛି କିଛି ଅଂଶ ପଢ଼ିଥିଲି । ବିଭିନ୍ନ ପୁସ୍ତକରେ ନିର୍ଦ୍ଦେଶିତ ବିଭିନ୍ନ ରାଗରାଗିଣୀରେ ଗୀତ ଗାଇପାରୁଥିବାରୁ ଗୁରୁଜନମାନଙ୍କ ପାଖରେ ମୋର ଖୁବ୍ ଆଦର ଥିଲା । ଏହି ଅବକାଶରେ ସାରଳା ମହାଭାରତର ବିଭିନ୍ନ ପର୍ବର କିଛି ଅଂଶ ପଢ଼ିବାର ସୁଯୋଗ ମୋତେ ମିଳିଥିଲା ।

ସ୍ନାତକୋତ୍ତର ପରୀକ୍ଷା ନିମନ୍ତେ ପ୍ରସ୍ତୁତି ଚାଲିଥିଲାବେଳେ ମୋତେ ସାରଳା ମହାଭାରତର ଆଦିପର୍ବର କେତେକାଂଶ ପଢ଼ିବାକୁ ହୋଇଥିଲା । ଏହା ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଦ୍ୱାରା ପ୍ରକାଶିତ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ । ପାଠ୍ୟାଂଶ ପଢ଼ି ଶେଷ କଲି ; ମାତ୍ର ଏହା ଉପରେ ଏପରି ଆଲୋଚନା ପୁସ୍ତକ ଖଣ୍ଡିଏ ପାଇଲି ନାହିଁ । ଆବଶ୍ୟକ ସ୍ଥଳେ ମୋ ଦ୍ୱାରା ସଂଗୃହୀତ ଏକାଧିକ ଆଲୋଚନା ପୁସ୍ତକର ସାହାଯ୍ୟ ନେବାକୁ ହେଲା । ଏତେଗୁଡ଼ିଏ ପୁସ୍ତକର ସାହାଯ୍ୟ ନେଇ ସୁଦ୍ଧା ସାରଳା ମହାଭାରତର କେତୋଟି ନିର୍ଦ୍ଦିଷ୍ଟ ବିଭାଗ ଉପରେ ସମ୍ୟକ୍ ଆଲୋକପାତ କରିହେଲା ନାହିଁ । ଏଣୁ ସ୍ଥିର କଲି ପରୀକ୍ଷାପରେ ସାରଳା ମହାଭାରତ ଉପରେ ଏକ ଆଲୋଚନା ପୁସ୍ତକ ରଚନା କରିବି, ଯାହା ସାଧାରଣ ପାଠକ ତଥା ପରୀକ୍ଷାର୍ଥୀଙ୍କ ପକ୍ଷେ ବିଶେଷ ସହାୟକ ହେବ ଏବଂ 'ସାରଳା ସାହିତ୍ୟ' ଉପରେ ସମ୍ୟକ ଆଲୋକପାତ କରିହେବ ।

ସେ ଯାହାହେଉ, 'ସାରଳା ସାହିତ୍ୟ' ଉପରେ ଆଲୋଚନା ପୁସ୍ତକ ଲେଖିବାକୁ ଯେତେବେଳେ ମନସ୍ଥ କରିଛି, ଏ କାର୍ଯ୍ୟ ନିଷ୍ଠିତ ଭାବେ ଶେଷ କରିବାକୁ ପଡ଼ିବ । ପ୍ରଥମେ ସ୍ୱର୍ଗତ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ଓ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଦ୍ୱାରା ପ୍ରକାଶିତ ସାରଳା ମହାଭାରତ ଶୁଦ୍ଧ ସଂସ୍କରଣରୁ ଏକ ସେଟ୍ ସଂଗ୍ରହ କରି ଯେଉଁ ଯେଉଁ ଅଂଶ ମୋତେ ଭଲ ଲାଗିଛି, ମୁଁ ତାହା ବାରମ୍ବାର ପଢ଼ିଛି । ସାରଳା ମହାଭାରତ ଓ ସାରଳାଙ୍କ ଅନ୍ୟାନ୍ୟ ଗ୍ରନ୍ଥ ଉପରେ ବିଭିନ୍ନ ଆଲୋଚକଙ୍କର ଯେତେଖଣ୍ଡି ଆଲୋଚନା ପୁସ୍ତକ ଯୋଗାଡ଼ କରିପାରିଛି, ସେଗୁଡ଼ିକ ମଧ୍ୟ ପଢ଼ିଛି । କେତେଖଣ୍ଡି 'ଓଡ଼ିଆ ସାହିତ୍ୟର ଇତିହାସ' ଓ କେତେକ ପତ୍ରପତ୍ରିକାରେ ପ୍ରକାଶିତ 'ସାରଳା ସାହିତ୍ୟ' ସମ୍ବନ୍ଧୀୟ ଲେଖା ମଧ୍ୟ ଅନୁଧ୍ୟାନ କରିଛି ।

ଏଥିରେ ବ୍ୟବହୃତ ସାରଳା ମହାଭାରତ ସଂପର୍କୀୟ ଉଦ୍ଧୃତିଗୁଡ଼ିକ ପ୍ରାୟ ଶୁଦ୍ଧ ସଂସ୍କରଣରୁ ଗୃହୀତ । ମାତ୍ର କୌଣସି ବିଶିଷ୍ଟ ଆଲୋଚକଙ୍କ ମତାମତ ବା ଆଲୋଚନାଂଶ ଉଦ୍ଧାର କରିବା ପ୍ରସଙ୍ଗରେ ନେଇଁ ଉଦ୍ଧୃତିଗୁଡ଼ିକୁ ଗ୍ରହଣ କରିବାକୁ ହୋଇଛି, ସେଗୁଡ଼ିକ ସାଧାରଣତଃ ବିଭିନ୍ନ ପୁରୁଣା ପ୍ରକାଶିକା କମ୍ପାନୀଙ୍କଦ୍ୱାରା ପ୍ରକାଶିତ ସାରଳା ମହାଭାରତରୁ ଗୃହୀତ । 'ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ'ର ଶୁଦ୍ଧ ସଂସ୍କରଣ ପ୍ରକାଶିତ ହୋଇ ନ ଥିବାରୁ ଆଲୋଚନା ନିମନ୍ତେ ବଜାରରେ ମିଳୁଥିବା ମୁଦ୍ରିତ ଗ୍ରନ୍ଥ ଉପରେ ମୋତେ ନିର୍ଭର କରିବାକୁ ପଡ଼ିଛି । ନବ ଆବିଷ୍କୃତ ସାରଳାଙ୍କ 'ଲକ୍ଷ୍ମୀନାରାୟଣ ବଚନିକା' ଗ୍ରନ୍ଥଟି ମୁଦ୍ରିତାକାରରେ ଲବ୍ଧ ହୋଇ ନ ଥିବାରୁ ଏହାର ଆଲୋଚନା ନିମନ୍ତେ ସାରଳା ସାହିତ୍ୟର ପ୍ରଖ୍ୟାତ ସମାଲୋଚକ ଡକ୍ଟର ବଂଶୀଧର ମହାନ୍ତିଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଉପରେ ମୋତେ ନିର୍ଭର କରିବାକୁ ହୋଇଛି ।

ଏ ପୁସ୍ତକ ମଧ୍ୟରେ ଭ୍ରମ ପ୍ରମାଦ ରହିଥାଇପାରେ; ସହୃଦୟ ପାଠକଗଣ ତାହା ମୋ ଦୃଷ୍ଟିକୁ ଆଣିଲେ ଉପକୃତ ହେବି ।

ଯେଉଁ ପ୍ରଖ୍ୟାତ ସମାଲୋଚକମାନଙ୍କ ପୁସ୍ତକ ବା ଆଲୋଚନା ଅଧ୍ୟୟନ କରି ସେମାନଙ୍କ ସୁଚିନ୍ତିତ ମତାମତକୁ ଏ ପୁସ୍ତକ ଗଠନରେ ବିନିଯୋଗ କରିଛି, ସେମାନଙ୍କ ନିକଟରେ ମୁଁ ଋଣ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଚିରକୃତଜ୍ଞ ରହିଛି ।

ସାରଳା ସାହିତ୍ୟରେ ମୋର ପ୍ରବେଶ ଅଛି, ଏଭଳି କହିବା ଠିକ୍ ହେବ ନାହିଁ । ସାହିତ୍ୟ ଦୃଷ୍ଟିରୁ ବିଚାର କଲେ ମୁଁ ଏ ବିଷୟରେ ଯେଉଁ ସାମାନ୍ୟତମ ଜ୍ଞାନ ଆହରଣ କରିଛି, ତାହା ଏ ପୁସ୍ତକରେ ସନ୍ନିବେଶିତ କରିଛି କେବଳ । ତତ୍ତ୍ୱ ଦୃଷ୍ଟିରୁ ଦେଖିବାକୁ ଗଲେ, ମୂଳ ସଂସ୍କୃତ ମହାଭାରତରେ ବସ୍ତୁତଃଭାବେ ପ୍ରଦତ୍ତ ତତ୍ତ୍ୱର କାଳିଗ୍ରସ୍ତ ଏ ମଧ୍ୟ ଜନପ୍ରିୟତା ହରାଇବା ଆଶଙ୍କାରେ କୃଷକ କବି ସାରଳା ନିଜ

ମହାଭାରତରେ ଦେଇ ନାହାନ୍ତି । କାରଣ ତାଙ୍କ ପାଠକଗୋଷ୍ଠୀ ଥିଲେ ନିରକ୍ଷର କୃଷକ—ଯେଉଁମାନଙ୍କ ପକ୍ଷରେ ତତ୍ତ୍ୱ ବୁଝିବା ସହଜ ନ ଥିଲା । ଯଦି କୌଣସି ପାଠକ ସାରଳା ମହାଭାରତରେ ତତ୍ତ୍ୱର କିଛିତ୍ ସନ୍ଧାନ ପାଇ, ସେ ସମ୍ପର୍କୀୟ ଆଲୋଚନା ଏ ପୁସ୍ତକରେ ଖୋଜି ବସନ୍ତି, ତେବେ ତାଙ୍କୁ ହତାଶ ହେବାକୁ ପଡ଼ିବ । କାରଣ ଏ ପୁସ୍ତକଟି କେବଳ ସାରଳାଙ୍କ ବିଭିନ୍ନ ଗ୍ରନ୍ଥ ଉପରେ ଏକ ସାହିତ୍ୟିକ ଆଲୋଚନା, ଯାହା ମୁଖ୍ୟତଃ ବିଭିନ୍ନ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ଉଦ୍ଦିଷ୍ଟ । ସାରଳା ଦାସଙ୍କ ଗ୍ରନ୍ଥମାନଙ୍କର ବିଭିନ୍ନ ଦିଗ ଉପରେ ଆଲୋକପାତ କରାଯାଇଥିବାରୁ ଏ ପୁସ୍ତକରେ ସାଧାରଣ ପାଠକର ଚିତ୍ତ ବିନୋଦନ ନିମନ୍ତେ ମଧ୍ୟ ଉପାଦାନର ଅଭାବ ନାହିଁ; କିନ୍ତୁ ଏହା ଯେଉଁମାନଙ୍କ ନିମନ୍ତେ ଉଦ୍ଦିଷ୍ଟ, ସେମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ।

ସର୍ବଶେଷରେ, ଏ ପୁସ୍ତକର ପ୍ରକାଶନ କାଳରେ ଯେଉଁମାନଙ୍କ ନାମୋଲ୍ଲେଖ ନ କଲେ ନିଜକୁ ଦୋଷୀ ମନେ କରିବି—ସେମାନେ ହେଲେ ମୋର ସହଧର୍ମିଣୀ ଶ୍ରୀମତୀ ପ୍ରଭାସିନୀ ଦେବୀ, ଯେ ଏକାକୀ ସମସ୍ତ ଗୃହଜଞ୍ଜାଳ ସମାପନ କରିବା ପରେ ମଧ୍ୟ ମୋତେ ଏ ପୁସ୍ତକଟି ରଚନା କରିବାରେ ସାହାଯ୍ୟ କରିଛନ୍ତି । ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ଲଳିତରଞ୍ଜନ ଦାସଙ୍କ ଅକୁଣ୍ଠ ସାହାଯ୍ୟ ତଥା ଶ୍ରୀ ଗୋବିନ୍ଦଚରଣ ପାଣି, ଯେ ଏ ପୁସ୍ତକ ପ୍ରକାଶନର ଗୁରୁ ଦାୟିତ୍ୱ ବହନ କରି ଆଗେଇଯିବା ପାଇଁ ମୋ ନିମିତ୍ତ କ୍ଷେତ୍ର ପ୍ରସ୍ତୁତ କରିଛନ୍ତି—ସେମାନଙ୍କୁ ଜୀବନରେ ଭୁଲିପାରିବି ନାହିଁ ।

ଭୁବନେଶ୍ୱର,
ଶ୍ରୀଗୁଣ୍ଡିଚା
ଜୁଲାଇ, ୩, ୧୯୮୯

॥ ଜୟ ଜଗନ୍ନାଥ ॥
**ସୁରେନ୍ଦ୍ର କୁମାର ମହାରଣା**

# ସୂଚୀ

ବିଷୟ — ପୃଷ୍ଠାଙ୍କ

# ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ 'ମହାଭାରତ'ର ପରମ୍ପରା

ଭାଷାବିତ୍‌ମାନଙ୍କ ମତରେ ଭାରତରେ ପ୍ରଥମେ ଦ୍ରାବିଡ଼ ଭାଷା ଏବଂ ଦ୍ରାବିଡ଼ ଭାଷା ପରେ ଆର୍ଯ୍ୟ ବା ବୈଦିକ ଭାଷା ପ୍ରଚଳିତ ଥିଲା । ପରେ ସଂସ୍କୃତ ଭାଷା ଓ ପ୍ରାକୃତ ଭାଷା ଏବଂ ଅପଭ୍ରଂଶ ଭାଷା ଦେଇ ପ୍ରାନ୍ତୀୟ ଭାଷା ସୃଷ୍ଟି ହେବାର ପ୍ରୟାସ ଲାଭ କଲା । ଏହି ସମ୍ପର୍କୀୟ ଏକ ଆଲୋଚନାରେ ଭାଷାବିତ୍ ଜନ୍ ବିମସ୍ କହନ୍ତି ଯେ; ଖ୍ରୀଷ୍ଟୀୟ ଏକାଦଶ ଶତକରେ ଗୁଜୁରାଟୀ, ପଞ୍ଜାବୀ ଓ ହିନ୍ଦୀ, ଦ୍ୱାଦଶ-ତ୍ରୟୋଦଶ ଶତକରେ ମରାଠୀ ଏବଂ ଚତୁର୍ଦ୍ଦଶ ଶତକରେ ଓଡ଼ିଆ ଭାଷା ପ୍ରାକୃତ ଭାଷାଠାରୁ ସ୍ୱାତନ୍ତ୍ର୍ୟ ଲାଭ କଲା । ବିଭିନ୍ନ ପ୍ରାନ୍ତୀୟ ଭାଷାର ଲିପି, ଭାଷା ଓ ସାହିତ୍ୟ ନିଜର ସ୍ୱକୀୟତା ଓ ସର୍ଜନଶୀଳତାରେ ପ୍ରତିଷ୍ଠିତ ହେବାପରେ ସମ୍ପୃକ୍ତ ଭାଷାର କବିମାନଙ୍କ ମଧ୍ୟରେ ସାହିତ୍ୟ ସୃଷ୍ଟି କରିବା ନିମିତ୍ତ ଅଭୂତପୂର୍ବ ଉଦ୍ୟମ, ଉଦ୍ଦୀପନା ଓ ଅଭୀପ୍ସା ପ୍ରକାଶ ପାଇଲା; ମାତ୍ର ସଂସ୍କୃତ ସାହିତ୍ୟ ବ୍ୟତୀତ ଅନ୍ୟ ସାହିତ୍ୟ କିଛି ସେମାନଙ୍କ ସମ୍ମୁଖରେ ନ ଥିଲା, ଯାହାର ଆଦର୍ଶରେ ସେମାନେ ସାହିତ୍ୟ ସୃଷ୍ଟି କରିପାରିଥାନ୍ତେ । ଏଣୁ ସେମାନେ ସଂସ୍କୃତ ସାହିତ୍ୟର ଲୋକପ୍ରିୟ ଗ୍ରନ୍ଥ ରାମାୟଣ, ମହାଭାରତ ଏବଂ ଭାଗବତର ଅନୁବାଦ କାର୍ଯ୍ୟ ସର୍ବପ୍ରଥମେ ହାତକୁ ନେଲେ । କେଉଁ କେଉଁ ପ୍ରାନ୍ତୀୟ ସାହିତ୍ୟରେ କେବେ ମହାଭାରତ ରଚିତ ହେଲା, ତାହା ନିମ୍ନରେ ଆଲୋଚନା କରାଗଲା ।

ସର୍ବପ୍ରଥମେ ତେଲୁଗୁ ସାହିତ୍ୟରେ ଖ୍ରୀଷ୍ଟୀୟ ଏକାଦଶ ଶତକରେ ମହାଭାରତ ରଚନାର ଉଦ୍ୟମ ହୋଇଥିଲା । ଚାଲୁକ୍ୟ ରାଜା ରାଜରାଜ ନରେନ୍ଦ୍ର ( ୧୦୨୨-୬୩ ) ଙ୍କ ରାଜତ୍ୱ କାଳରେ ତେଲୁଗୁ ସାହିତ୍ୟର ନାନ୍ନୟା ଭଟ୍ଟ ସଂସ୍କୃତ ମହାଭାରତ ଅବଲମ୍ବନରେ

ମହାଭାରତ ରଚନା ଆରମ୍ଭ କରିଥିଲେ । ଅବଶ୍ୟ ଏଥି ନିମନ୍ତେ ନିଜକୁ ଚନ୍ଦ୍ରବଂଶୀ କୌରବ ବଂଶଧର ମନେ କରୁଥିବା ରାଜରାଜ ତାଙ୍କୁ ସଂସ୍କୃତ ମହାଭାରତ ଅନୁବାଦ କରିବା ନିମିତ୍ତ ନିଯୁକ୍ତ କରିଥିଲେ । ନାନ୍ନୟା ନିଜ ଜୀବନକାଳ ମଧ୍ୟରେ ଏହି ଗ୍ରନ୍ଥର ଆଦି ପର୍ବ ଓ ସଭା ପର୍ବ ସମାପ୍ତ କରିଥିଲେ ଏବଂ ବନ ପର୍ବର ଅଳ୍ପ ଅଂଶମାତ୍ର ସମାପ୍ତ କରି ମୃତ୍ୟୁ ବରଣ କରିଥିଲେ । ଓଡ଼ିଆ ସାହିତ୍ୟରେ 'ସାରଳା ଯୁଗ' ପରି ତେଲୁଗୁ ସାହିତ୍ୟରେ ଏହି ମହାଭାରତକାରଙ୍କ ନାମାନୁସାରେ 'ନାନ୍ନୟା ଯୁଗ' ରହିଅଛି । ତ୍ରୟୋଦଶ ଶତାବ୍ଦୀରେ ତିକ୍କଣ ( ୧୨୨୦—୧୩୦୦ ) ବିରାଟ ପର୍ବଠାରୁ ଆରମ୍ଭ କରି ପନ୍ଦରଟି ପର୍ବ ସମାପ୍ତ କରିଥିଲେ । ଚତୁର୍ଦ୍ଦଶ ଶତକର କବି ଏର୍ରାନ୍ନା ନାନ୍ନୟା କର୍ତ୍ତୃକ ଆରବ୍ଧ ହୋଇଥିବା ତୃତୀୟ ପର୍ବର ଅବଶିଷ୍ଟାଂଶ ରଚନା କରି ଅସମ୍ପୂର୍ଣ୍ଣ ତେଲୁଗୁ ମହାଭାରତ ସମ୍ପୂର୍ଣ୍ଣ କରିଥିଲେ । ଖ୍ରୀ: ଅ: ୧୦୭୦ରୁ ୧୩୭୦ ମଧ୍ୟରେ ନାନ୍ନୟା, ତିକ୍କଣ ଓ ଏର୍ରାନ୍ନା ତେଲୁଗୁ ସାହିତ୍ୟରେ ମହାଭାରତର ଆଦି ଅନୁବାଦକ ଭାବରେ ସ୍ୱୀକୃତ ହୋଇଥାନ୍ତି । ନାନ୍ନୟାଙ୍କ ଅନୁବାଦର ଭାଷା ସମ୍ପୂର୍ଣ୍ଣ ସଂସ୍କୃତ ପ୍ରଭାବିତ ଥିଲାବେଳେ ଶେଷୋକ୍ତ ଅନୁବାଦକ ଦ୍ୱୟ ଶୁଦ୍ଧ ତେଲୁଗୁ ଭାଷା ବ୍ୟବହାର କରିଥିଲେ । ଏହିଭଳି ତେଲୁଗୁ ସାହିତ୍ୟରେ ମହାଭାରତ ରଚନା ଦୀର୍ଘ ତିନିଶତ ବର୍ଷ ପରିବ୍ୟାପ୍ତ ହୋଇଥିବାରୁ ଏଥିରେ ସେ ଦେଶର ଧର୍ମ ଆନ୍ଦୋଳନର ଇତିହାସକ୍ରମ ପ୍ରତିଫଳିତ । ନାନ୍ନୟାଙ୍କ ରଚିତ ମହାଭାରତ ଅଂଶ ସଂସ୍କୃତ ମହାଭାରତର ଅନୁରୂପ ହୋଇଥିବାରୁ ଏଥିରେ ବୈଦିକ ଧର୍ମର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି; ମାତ୍ର ତିକ୍କଣଙ୍କ ଅଂଶରେ ଶୈବ ଓ ବୈଷ୍ଣବ ଧର୍ମର ସମନ୍ୱୟ ରକ୍ଷିତ ହୋଇଅଛି । ଅବଶ୍ୟ ଏହି ବିଶିଷ୍ଟ ତ୍ରୟୀଙ୍କ ପରେ ଏରେପ୍ରାଗଡ଼ା ( ଶମ୍ଭୁ ଦାସ ) ପ୍ରବନ୍ଧ ଶୈଳୀରେ ମହାଭାରତ ରଚନା କରିଥିଲେ ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ କେତେଜଣ କବି କନ୍ନଡ଼ ସାହିତ୍ୟରେ ମହାଭାରତ ପ୍ରସଙ୍ଗରେ ମନୋନିବେଶ କରିଥିଲେ । ସେମାନଙ୍କ ମଧ୍ୟରେ ତ୍ରୟୋଦଶ ଶତାବ୍ଦୀର କବି ନାରଣାପ୍ପା ମୂଳଭାରତର ଦଶଗୋଟି ପର୍ବ ଅନୁବାଦ କରିଥିଲେ । ଏହା ଏକ ଅସମ୍ପୂର୍ଣ୍ଣ ରଚନା ହେଲେ ହେଁ ଏହା କନ୍ନଡ଼ ସାହିତ୍ୟରେ ଅତି ପ୍ରଭାବଶାଳୀ ଗ୍ରନ୍ଥ ଭାବେ ଆଦୃତ । ଏହାର ଅବଶିଷ୍ଟ ପର୍ବଗୁଡ଼ିକ କବି ତିମନ୍ନାଙ୍କ ଦ୍ୱାରା ରଚିତ ହୋଇଥିଲା । ଅବଶ୍ୟ ଏହା ପୂର୍ବରୁ କନ୍ନଡ଼ ସାହିତ୍ୟର ଶ୍ରେଷ୍ଠ ପ୍ରାଚୀନ କବି ପମ୍ପା ( ଖ୍ରୀ ଅ ୯୪୧ ) ଦଶମ ଶତାବ୍ଦୀରେ ପ୍ରଥମେ ମହାଭାରତର କଥାବସ୍ତୁ ଅବଲମ୍ବନରେ 'ବିକ୍ରମାର୍ଜ୍ଜୁନ ବିଜୟମ୍' ଗ୍ରନ୍ଥ ରଚନା କରିଥିଲେ । ଏହା 'ପମ୍ପା ମହାଭାରତ' ନାମରେ ପରିଚିତ ଏବଂ ଏଥିରେ ଅର୍ଜ୍ଜୁନ ନାୟକ ଭାବରେ ସ୍ୱୀକୃତ । ଏଥି ନିମନ୍ତେ ସେ ତତ୍କାଳୀନ ନରପତି ଅରି କେଶରୀଙ୍କ ପୃଷ୍ଠପୋଷକତା ଲାଭ କରିଥିବା ଜଣାଯାଏ ।

ମାଲୟାଲମ୍ ସାହିତ୍ୟ ଦ୍ରାବିଡ଼ ଗୋଷ୍ଠୀର ଏକ ପ୍ରାଚୀନତମ ଋଦ୍ଧିବନ୍ତ ସାହିତ୍ୟ । ଏହି ଭାଷା ଓ ସାହିତ୍ୟ ବିଶେଷ ଭାବରେ ତାମିଲ୍ ଓ ସଂସ୍କୃତ ଭାଷା ଦ୍ୱାରା ପ୍ରଭାବିତ । ମାଲୟାଲମ୍ ସାହିତ୍ୟରେ ମହାଭାରତକାର ହେଉଛନ୍ତି କବି ଟି. ରାମାନୁଜ ଏଝୁତାଚ୍ଛନ (Ezhuttachan) ଏବଂ ଏଲୁତ୍ତକ୍କାନ (Eluttccan) । ଉଭୟ କବି ଷୋଡ଼ଶ ଶତାବ୍ଦୀରେ ଲେଖନୀ ଚାଳନା କରିଥିଲେ । ଏଝୁତାଚ୍ଛନ ମହାଭାରତ ବ୍ୟତୀତ ରାମାୟଣ ଓ ଭାଗବତ ମଧ୍ୟ ଅନୁବାଦ କରିଥିଲେ । ଅନୁବାଦ ହେଲେ ମଧ୍ୟ ଏହି ଗ୍ରନ୍ଥଗୁଡ଼ିକରେ ତାଙ୍କର ମୌଳିକ କଳ୍ପନା ବିଳାସ ପରିଲକ୍ଷିତ ହୁଏ । ତାଙ୍କ ରଚନାଭଙ୍ଗୀ ସମ୍ପୂର୍ଣ୍ଣ ସଂସ୍କୃତାନୁସାରୀ ଥିବାର ଜଣାଯାଏ । କବି ଏଲୁତ୍ତକାନ୍ଙ୍କ ରାମାୟଣ ଓ ମହାଭାରତରେ ମାଲୟାଲମ୍ ଲୋକ-ସଂସ୍କୃତିର ବହୁଳ ପ୍ରଭାବ ଦେଖାଯାଇଥାଏ । ଆଲୋଚକ କହନ୍ତି - ଏହି ଗ୍ରନ୍ଥରେ କବି ଯେତେବେଳେ ଯୁଦ୍ଧ ବର୍ଣ୍ଣନା ଦେବାକୁ ଯାଇଅଛନ୍ତି, ତନ୍ମଧ୍ୟରେ ସେ ପ୍ରାଚୀନ କେରଳର ଯୁଦ୍ଧକୌଶଳ ପଶାଇବାକୁ ଭୁଲିଯାଇ ନାହାନ୍ତି । ପୁତ୍ରମାନଙ୍କ ନିଧନରେ ଗାନ୍ଧାରୀଙ୍କ ଶୋକ ଓ ଦୁର୍ଯ୍ୟୋଧନ ଜୀବନର ଅନ୍ତିମ କାଳ ବର୍ଣ୍ଣନାରେ କବି ଅତି ଚମତ୍କାର ଭାବେ କରୁଣରସ ପରିବେଷଣ କରି ଅଛନ୍ତି । ମହାଭାରତ ବ୍ୟତୀତ ଅନ୍ୟାନ୍ୟ ମାଲୟାଲମ୍ ପୁରାଣ ସାହିତ୍ୟ ମଧ୍ୟରେ ଏଲୁତ୍ତକାନଙ୍କର 'ଭାଷା ଭାଗବତ', 'ଉତ୍ତର ରାମାୟଣ', 'ହରିନାମ କୀର୍ତ୍ତନ' ଓ 'ରାମାୟଣ' ପ୍ରଧାନ ଅଟେ ।

ମହାରାଷ୍ଟ୍ରୀ ବା ମରାଠୀ ସାହିତ୍ୟରେ ଷୋଡ଼ଶ ଶତାବ୍ଦୀରେ କବି ମୁକ୍ତେଶ୍ୱର କଥିତ ଭାଷାରେ ମହାଭାରତ ପ୍ରଣୟନ କରିଥିଲେ । ତାଙ୍କ ଗ୍ରନ୍ଥର ବନପର୍ବ, ସଭାପର୍ବ, ବିରାଟପର୍ବ ଓ ସୌପ୍ତିକ ପର୍ବ ମରାଠୀ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରେ ଏବଂ ସର୍ବସାଧାରଣରେ ସମାଦର ଲାଭ କରେ । ସମସାମୟିକ ସାମାଜିକ ଚିତ୍ରର ନିଖୁଣ ପ୍ରତିଫଳନ ଏଥିରେ ଲକ୍ଷ୍ୟ କରାଯାଏ ।

ଆସାମୀ ସାହିତ୍ୟରେ ସେହି ଷୋଡ଼ଶ ଶତାବ୍ଦୀରେ ମଧ୍ୟ କବି ରାମସରସ୍ୱତୀ ତତ୍କାଳୀନ ଆସାମର ରାଜା ନରନାରାୟଣଙ୍କ ପୃଷ୍ଠପୋଷକତାରେ ମହାଭାରତ ରଚନା କରିଥିଲେ । ସେ କେବଳ ପଚିଶ ହଜାର ଶବ୍ଦ ବିଶିଷ୍ଟ ମହାଭାରତର ବନପର୍ବ ରଚନା କରି ଥିବାର କେତେକ ଆଲୋଚକ ମତ ପ୍ରକାଶ କରନ୍ତି । ସେ ସଂସ୍କୃତ ଭାଷାରେ ଅଗାଧ ବ୍ୟୁତ୍ପତ୍ତି ଲାଭ କରିଥିଲେ ହେଁ ଜନସାଧାରଣଙ୍କ ମଧ୍ୟରେ ବିଶେଷ ଆଦୃତ ହେବା ଲକ୍ଷ୍ୟରେ, କଥିତ ଭାଷାକୁ ତାଙ୍କ ଗ୍ରନ୍ଥର ଭାଷା ରୂପେ ଗ୍ରହଣ କରି ନେଇଥିଲେ । କେବଳ ସେତିକି ନୁହେଁ, ଗ୍ରନ୍ଥର ଛନ୍ଦେ ଛନ୍ଦେ କବିଙ୍କ ମୌଳିକତା ଓ ସ୍ୱକୀୟତାର ଛାପ ଦେଖିବାକୁ ମିଳେ । ଏଥିରେ ଶ୍ରୀକୃଷ୍ଣଙ୍କ ଆଦର୍ଶ ଅଧିକ ଭାବରେ ପ୍ରତିଫଳିତ । ଆସାମର ଆଲୋଚକଗଣ ସାଧାରଣତଃ ଏହାକୁ ଏକ ମୌଳିକ ଗ୍ରନ୍ଥ ରୂପେ ଗ୍ରହଣ କରିଥାଆନ୍ତି ।

ଗୁଜୁରାଟୀ ସାହିତ୍ୟ ଭକ୍ତି ସାହିତ୍ୟରେ ଯେପରି ସମୃଦ୍ଧ, ପୁରାଣ ସାହିତ୍ୟରେ ସେପରି ସମୃଦ୍ଧ ନୁହେଁ । ନକର (୧୫୦୯-୧୫୭୫) ଏବଂ ବିଷ୍ଣୁଦାସ (୧୫୬୪-୧୬୩୨) ଜାତୀୟ ଗୁଜୁରାଟୀ ଆଖ୍ୟାନ ସାହିତ୍ୟର ଜନକ । ଏ କବି ଦ୍ୱୟ ରାମାୟଣ, ମହାଭାରତ ଓ ଭାଗବତର ଅବଲମ୍ବନରେ ବହୁ ଆଖ୍ୟାନ ରଚନା କରିଥିଲେ ।

ଷୋଡ଼ଶ ଶତାବ୍ଦୀରେ ଆସାମୀ, ମରାଠୀ, ମାଲୟାଲମ୍ ଭାଷାରେ ମହାଭାରତ ରଚିତ ହେଲା ଭଳି ଓଡ଼ିଆ ସାହିତ୍ୟରେ ମଧ୍ୟ ମହାଭାରତ ରଚିତ ହେଲା । ଉତ୍କଳ ବ୍ୟାସ ସାରଳା ମୂଳ ମହାଭାରତ ବିଷୟ ବସ୍ତୁର ଆରମ୍ଭ ଓ ଶେଷ ପରିଣତିକୁ ଗ୍ରହଣ କରି ଏକ ନୂତନ ଓ ମୌଳିକ ମହାଭାରତ ପ୍ରଣୟନ କରିବା ନିମନ୍ତେ ସମର୍ଥ ହୋଇଥିଲେ । ସମକାଳୀନ ଭାରତୀୟ ସାହିତ୍ୟରେ ଏପରି ପୂର୍ଣ୍ଣାଙ୍ଗ, ମୌଳିକ ଓ ବିଶାଳକାୟ ମହାଭାରତ ରଚିତ ହୋଇଥିବାର ଦେଖାଯାଏ ନାହିଁ । ସମସାମୟିକ ଅନ୍ୟ ଭାଷାର ମହାଭାରତକାରଙ୍କ ମଧ୍ୟରେ ସାରଳାଦାସ ଏକ ସ୍ୱତନ୍ତ୍ର ଆସନ ଦାବୀ କରନ୍ତି । ତାଙ୍କ ଗ୍ରନ୍ଥର ମୌଳିକତା ଓ ସ୍ୱତନ୍ତ୍ରତା ଅନ୍ୟତ୍ର ଆଲୋଚିତ ।

ବଙ୍ଗଳା ସାହିତ୍ୟର ବିଶିଷ୍ଟ ମହାଭାରତକାର ହେଉଛନ୍ତି କାଶୀରାମ ଦାସ । ସେ ପ୍ରାୟ ସାରଳାଙ୍କ ଏକଶତ ବର୍ଷ ପରବର୍ତ୍ତୀ କବି । ସାରଳାଙ୍କ ଗ୍ରନ୍ଥରୁ ସେ କେତେକ ଉପାଖ୍ୟାନ ଆତ୍ମସାତ୍ କରି ନେଇଥିବାର ଜଣାଯାଏ । କାରଣ ସାରଳା ଦାସଙ୍କ ମହାଭାରତ ଶତାବ୍ଦୀ ଶତାବ୍ଦୀ ଧରି ବଙ୍ଗଳାରେ ପ୍ରଚଳିତ ହୋଇ ଲୋକପ୍ରିୟତା ଅର୍ଜନ କରିଥିଲା । କାଶୀରାମ ପୂର୍ଣ୍ଣାଙ୍ଗ ମହାଭାରତ ରଚନା କରିବା ନିମନ୍ତେ ସମର୍ଥ ହୋଇ ନ ଥିଲେ । ବିରାଟ ପର୍ବର କେତେକାଂଶ ପର୍ଯ୍ୟନ୍ତ ରଚନା କରିବା ପରେ ସେ ମୃତ୍ୟୁ ପଥର ଯାତ୍ରୀ ହୋଇଥିଲେ । ଅବଶିଷ୍ଟାଂଶ ତାଙ୍କର ଭାଇ ଅଥବା ପୁତୁରା ପୂର୍ଣ୍ଣ କରିଥିଲେ, ଯହିଁରେ ପୂର୍ବବର୍ତ୍ତୀ ନିତ୍ୟାନନ୍ଦଙ୍କ ମହାଭାରତର କେତେ ଅଂଶ ସାମାନ୍ୟ ପରିବର୍ତ୍ତିତ ସହ ସ୍ଥାନ ପାଇଥିଲା । ବଙ୍ଗ ଦେଶରେ ଅନେକ କବି ମହାଭାରତର ବିଭିନ୍ନ ଆଖ୍ୟାନ ଅବଲମ୍ବନରେ ବିଭିନ୍ନ ରଚନା କରିଥିବାର ଏବଂ ମହାଭାରତର କିଛି କିଛି ଅଂଶ ଅନୁବାଦ କରିଥିବାର ମଧ୍ୟ ଜଣାଯାଏ ।

ପଞ୍ଜାବୀ ପୁରାଣ ସାହିତ୍ୟ ଅନ୍ୟ ପ୍ରାନ୍ତୀୟ ପୁରାଣ ସାହିତ୍ୟ ଭଳି ସେତେ ପ୍ରାଚୀନ ନୁହେଁ । ଖ୍ରୀ. ଅ. ୧୭୪୮ରେ କୃଷ୍ଣଲାଲ୍ ନାମକ ଜନୈକ କ୍ଷତ୍ରିୟ ପଞ୍ଜାବୀ ଭାଷାରେ ମହାଭାରତ ରଚନା କରିଥିଲେ ।

ହିନ୍ଦୀ ସାହିତ୍ୟରେ ସର୍ବଶେଷରେ ମହାଭାରତ ଅନୁଦିତ ହୋଇଥିବା ଲକ୍ଷ୍ୟ କରାଯାଏ । ଏହି ଅନୁବାଦର କାଳ ହେଉଛି ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଏବଂ ଅନୁବାଦକ ହେଉଛନ୍ତି କବି ଗୋକୁଳନାଥ । ମହାଭାରତ ହିନ୍ଦୀ ସାହିତ୍ୟରେ ଏତେ ବିଳମ୍ବରେ ରଚିତ ହେବାର କାରଣ ହେଉଛି ରାମାୟଣ (ତୁଳସୀ ଦାସଙ୍କ ରାମଚରିତ

ମାନସ) ହିନ୍ଦୀ ପାଠକମାନଙ୍କ ମଧ୍ୟରେ ଯେପରି ଆଦୃତ ହେଉଥିଲା, ମହାଭାରତ ସେପରି ଆଦୃତ ହେଉ ନ ଥିଲା । ଏଣୁ ରାମାୟଣ ଲାଭ କରିଥିବା ସୌଭାଗ୍ୟ ଲାଭ କରିବା ନିମନ୍ତେ ମହାଭାରତକୁ ଦୀର୍ଘ ଦିନ ଧରି ଅପେକ୍ଷା କରିବାକୁ ପଡ଼ିଛି ।

ଉପରୋକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ଦକ୍ଷିଣ ଭାରତୀୟ ସାହିତ୍ୟରେ ଅନୁବାଦ ସମ୍ପୂର୍ଣ୍ଣ ରୂପେ ସଂସ୍କୃତ ପ୍ରଭାବିତ ଥିଲାବେଳେ ପୂର୍ବ ଭାରତରେ ଭାଷା ଓ ସାହିତ୍ୟ ସଂସ୍କୃତରୁ ମୁକ୍ତ ହୋଇ ପ୍ରାକୃତ ରୂପ ଧାରଣ କରିବାକୁ ସମର୍ଥ ହୋଇ-ପାରିଥିଲା । ଅର୍ଥାତ ସଂସ୍କୃତ-ସଂସ୍କୃତ-ପ୍ରଭାବିତ ପୂର୍ବଭାରତୀୟ ସାହିତ୍ୟରେ ସଂସ୍କୃତ ପ୍ରଭାବରୁ ମୁକ୍ତି ପାଇବା ନିମନ୍ତେ ଯେଉଁ ପରିମାଣରେ ବ୍ୟଗ୍ରତା ପ୍ରକାଶ ପାଇଥିଲା, ଦ୍ରାବିଡ଼-ସଂସ୍କୃତ-ପ୍ରଭାବିତ ଦକ୍ଷିଣ ଭାରତୀୟ ସାହିତ୍ୟରେ ସଂସ୍କୃତର ପ୍ରଭାବକୁ ଧରି ରଖିବା ନିମନ୍ତେ ସେହି ପରିମାଣରେ ଉଦ୍ୟମ ହୋଇଥିଲା । ପୁନଶ୍ଚ ଅନୁବାଦ ଦୃଷ୍ଟିରୁ ବିଚାର କଲେ, ଅଧିକାଂଶ ମହାଭାରତକାର ମୂଳ ଗ୍ରନ୍ଥର ଆକ୍ଷରିକ ଅନୁବାଦ କରି ନାହାନ୍ତି । ସମସାମୟିକ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଐତିହାସିକ ତଥ୍ୟମାନ ସେମାନେ ନିଜ ଗ୍ରନ୍ଥରେ ସନ୍ନିବେଶିତ କରି ସେଗୁଡ଼ିକୁ ଜାତୀୟ ମହା-କାବ୍ୟରେ ପରିଣତ କରିଅଛନ୍ତି ଏବଂ ପରବର୍ତ୍ତୀକାଳର କବିଗଣଙ୍କୁ ନୂତନ ସାହିତ୍ୟ ରଚନା କରିବା ନିମନ୍ତେ ଯଥେଷ୍ଟ ପ୍ରେରଣା ପ୍ରଦାନ କରିଅଛନ୍ତି; ଫଳରେ ପ୍ରାନ୍ତୀୟ ସାହିତ୍ୟର ସମୃଦ୍ଧି ସାଧିତ ହୋଇଅଛି ।

## ଓଡ଼ିଆ ସାହିତ୍ୟରେ କପିଳେନ୍ଦ୍ର ଯୁଗର ଭୂମିକା

ରାଜନୈତିକ ବିଚାରରେ ଓଡ଼ିଆ ସାହିତ୍ୟର ଆଦି କାଳକୁ 'କପିଳେନ୍ଦ୍ର ଯୁଗ' ନାମରେ ନାମିତ କରାଯାଇଥାଏ । ଏହି ଯୁଗ ପ୍ରାୟ ଏକଶତ ବର୍ଷ ପରିବ୍ୟାପ୍ତ (ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ) କପିଳେନ୍ଦ୍ର ଦେବଙ୍କ ପୂର୍ବବର୍ତ୍ତୀ ଶାସକଗଣ ଅର୍ଥାତ ଗଙ୍ଗବଂଶର ଶେଷ ନୃପତିଗଣ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ ଏବଂ ଦେଶରେ ରାଜନୈତିକ ଅସ୍ଥିରତା ଲାଗି ରହିଥିଲା । ଏହି ଅବସ୍ଥାର ସୁଯୋଗ ନେଇ ଉତ୍ତରରେ ଗୌଡ଼ର ସୁଲତାନ ଓ ଦକ୍ଷିଣରେ ବିଜୟ ନଗର, ବାହ୍ମନି ପ୍ରଭୃତି ରାଜ୍ୟର ଶାସକବର୍ଗ ବାରମ୍ବାର ଓଡ଼ିଶା ଆକ୍ରମଣ କରୁଥିଲେ । ଏହି ପରିସ୍ଥିତିରେ ପ୍ରବଳ ପ୍ରତାପୀ କପିଳେନ୍ଦ୍ର ଦେବ ଉତ୍କଳର ସିଂହାସନ ଅଧିକାର କରି ସୂର୍ଯ୍ୟବଂଶ ପ୍ରତିଷ୍ଠା କଲେ । ସେତେବେଳେ ଉତ୍କଳ ପ୍ରାନ୍ତ ବ୍ୟତୀତ ଭାରତ ବର୍ଷର ଚତୁର୍ଦ୍ଦିଗରେ ମୁସଲମାନ ଶାସନ ପ୍ରଚଳିତ ହୋଇ ସାରିଥିଲା । ଉତ୍କଳକୁ ବାହ୍ୟ ମୁସଲମାନ ଶତ୍ରୁଙ୍କ କବଳରୁ ରକ୍ଷା କରିବା ଏବଂ ଅନ୍ତର୍ବିପ୍ଳବ ଦମନ କରିବା ତାଙ୍କ ସମ୍ମୁଖରେ ପ୍ରଥମ ଓ ପ୍ରଧାନ ସମସ୍ୟା ଥିଲା । ଏଣୁ ସେ ରଣୋନ୍ମତ୍ତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିକୁ ସଙ୍ଗଠିତ କରି ଏହି ସମସ୍ୟାର ସମାଧାନ କରି ପାରିଥିଲେ ଏବଂ ଏକ ସୁଦୃଢ଼ ସାମ୍ରାଜ୍ୟ ଗଠନ କରିବା ନିମନ୍ତେ ସମର୍ଥ ହୋଇ ପାରିଥିଲେ । ଜୀବନର ସ୍ୱଳ୍ପକାଳ

ମଧ୍ୟରେ ସେ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରି ପାରିଥିଲେ । ଏଥିରୁ ସହଜରେ ଅନୁମିତ ହୁଏ ଯେ ସମଗ୍ର ଭାରତ ବର୍ଷରେ ଏକ ସୁଦୃଢ଼, ସମୃଦ୍ଧିଶାଳୀ ଓ ବିଶାଳ ହିନ୍ଦୁ ସାମ୍ରାଜ୍ୟ ଗଠନ କରିବା ତାଙ୍କ ପକ୍ଷରେ କିଛି ଅସମ୍ଭବ ନ ଥିଲା; ମାତ୍ର ଅକାଳ ବିୟୋଗ ତାଙ୍କୁ ଏ ସୁଯୋଗରୁ ବଞ୍ଚିତ କଲା ।

ଅଭିଲେଖ ଓ ଇତିହାସ ପ୍ରମାଣ ଦିଏ ଯେ କପିଳେନ୍ଦ୍ର ଦେବ ଜଣେ ପ୍ରଜାନୁରଞ୍ଜନ ଶାସକ ଥିଲେ । ସେ ବ୍ୟକ୍ତିଗତ ଭାବରେ ଥିଲେ ସାହିତ୍ୟ ଓ କଳାର ଜଣେ ପୃଷ୍ଠପୋଷକ । ସାହିତ୍ୟ ସ୍ରଷ୍ଟା ରୂପେ ତାଙ୍କର ପ୍ରତିଭା ଥିଲା ସର୍ବଜନ ବିଦିତ । ସଂସ୍କୃତରେ ସେ 'ପରଶୁରାମ ବିଜୟ' ନାମକ ଏକ ନାଟକ ରଚନା କରି ସ୍ୱପାଣ୍ଡିତ୍ୟ ଓ ସାହିତ୍ୟ ରସିକତାର ପରିଚୟ ଦେଇଥିଲେ । ଏହି ନାଟକର ମଙ୍ଗଳାଚରଣରେ ବିଷ୍ଣୁ, ଶିବ ଓ ଜଗନ୍ନାଥଙ୍କ ବନ୍ଦନାମାନ ସ୍ଥାନ ପାଇଅଛି ଏବଂ ଏଥିରେ ପରଶୁରାମଙ୍କର କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କୁ ବଧ କରିବା ଘଟଣା ବର୍ଣ୍ଣିତ ହୋଇଅଛି । ନିଜେ ଜଣେ ଓଡ଼ିଆ ହୋଇଥିବାରୁ ମାତୃଭାଷା ପ୍ରତି ତାଙ୍କର ପ୍ରଗାଢ଼ ସହାନୁଭୂତି ଥିଲା । ଏଣୁ ଉକ୍ତ ନାଟକରେ ସେ ସଂସ୍କୃତ ସଙ୍ଗୀତ ପରିବର୍ତ୍ତେ ଏକ ଓଡ଼ିଆ ସଙ୍ଗୀତର ସଂଯୋଜନା କରିଥିଲେ । ରାଣୀ ଚନ୍ଦ୍ରବଦନାଙ୍କ ମୁଖରେ ଦିଆଯାଇଥିବା ଓଡ଼ିଆ ସଙ୍ଗୀତଟି ହେଉଛି—

"କେବଣ ମୁନି କୁମାର ପରଶୁ ଦକ୍ଷିଣ କର
ବାମେଣ ଶୋହେ ଧନୁ ଶର ନା
କୋପେଣ ବୋଲଇ ବୀର ତା' ରୁ ସେ ଭେ ବଧିଲ୍ୟ ତାତ
ଆଜ ତୋରେ ଛେଦିବଇଁ ମାଥ ନା ।
ଶୁଣ ରାଜନ ହୋ କଏ ତୋର ରାଜ୍ୟେ ବ୍ରହ୍ମା ବିଧେନା
ଏ ତୋର ଚନ୍ଦ୍ରବଦନ, ମେଘେ କି ଛାଡ଼ିଲା ଜହ୍ନ
ତାହା ଦେଖି ବିକଳ ମୋ ମନ ନା ।
ଆବର ଦେଖଇ ଅରିଷ୍ଟି ରାଜ୍ୟେ ତୋ ରୁଧିର ବୃଷ୍ଟି
ପୁର ବେଢ଼ି ରୋଦନ୍ତି ଶୃଗାଳ ନା
ଶୁଣ ରାଜନ ହୋ କଏ ତୋର ରାଜ୍ୟେ ବ୍ରହ୍ମା ବିଧେନା ।" *

ମାତୃଭାଷା ପ୍ରତି ତାଙ୍କ ଗଭୀର ଅନୁରକ୍ତିର ଦ୍ୱିତୀୟ ପ୍ରମାଣ ହେଉଛି 'ଅମର ରାଗ'ରେ ସେ ଏକ ଓଡ଼ିଆ ସଙ୍ଗୀତ ରଚନା କରିଥିଲେ ଏବଂ ଏହା ନିକଟ ଅତୀତରେ ଲୋକଲୋଚନକୁ ଆସିଥିବାର ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି ସୂଚନା ଦିଅନ୍ତି । କେବଳ ସେ ନୁହନ୍ତି, ଅନ୍ୟ ସୂର୍ଯ୍ୟବଂଶୀ ସମ୍ରାଟମାନେ ମଧ୍ୟ ଓଡ଼ିଆ

* ଓଡ଼ିଆ ସାହିତ୍ୟର ଇତିହାସ-ଅଧ୍ୟାପକ ପଠାଣି ପଟ୍ଟନାୟକ—ପୃ ୧୮୯-୧୯୦ ।

ଭାଷାକୁ ଆଦର କରୁଥିଲେ ଏବଂ ଏହାକୁ ରାଜକୀୟ ସ୍ୱୀକୃତି ପ୍ରଦାନ କରିଥିଲେ । ଏହାର ପ୍ରମାଣ ହେଉଛି କପିଳେନ୍ଦ୍ର ଯୁଗରେ ବିଭିନ୍ନ ଗଜପତି ରାଜାମାନଙ୍କ ଦ୍ୱାରା ଖୋଦିତ ଓଡ଼ିଆ ଶିଳାଲେଖ । ଦକ୍ଷିଣ ଭାରତୀୟ ରାଜ୍ୟମାନ ଜୟ କରିବା ପରେ, ସେମାନଙ୍କ ସାମ୍ରାଜ୍ୟଭୁକ୍ତ ତେଲୁଗୁ ଓ ତାମିଲଭାଷୀ ପ୍ରଜାମାନଙ୍କ ମାତୃଭାଷା ପ୍ରତି ସେମାନେ ଅନାଦର ଭାବ ଦେଖାଇ ନାହାନ୍ତି । ତେଲୁଗୁ ଓ ତାମିଲ ଭାଷାରେ ମଧ୍ୟ କେତେକ ଶିଳାଲେଖ ସେମାନଙ୍କ ରାଜତ୍ୱ କାଳରେ ଖୋଦିତ ହୋଇଥିଲା ।

ସଂସ୍କୃତ ସାହିତ୍ୟରେ କପିଳେନ୍ଦ୍ର ଦେବ ସୁପଣ୍ଡିତ ଥିଲେ ଏବଂ ତାଙ୍କ ରାଜସଭା ବହୁ ପଣ୍ଡିତ ଓ ସଂସ୍କୃତ କବିଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଏବଂ ପୌତ୍ର ପ୍ରତାପରୁଦ୍ରଦେବ ମଧ୍ୟ ସଂସ୍କୃତ ଜ୍ଞାନର ଅଧିକାରୀ ଥିଲେ । ଆଲୋଚ୍ୟ ଯୁଗରେ ସଂସ୍କୃତ ଭାଷାରେ କପିଳେନ୍ଦ୍ର ଦେବ 'ପରଶୁରାମ ବିଜୟ' ନାଟକ, ପୁରୁଷୋତ୍ତମ ଦେବ 'ଅଭିନବ ବେଣୀ ସଂହାରମ୍', ପ୍ରତାପରୁଦ୍ର ଦେବ 'ସରସ୍ୱତୀ ବିଳାସ' ମତାନ୍ତରରେ ଏହାର ଲେଖକ ଲୋଲ୍ଲ ଲକ୍ଷ୍ମୀଧର), କବି ଡିଣ୍ଡିମ ଜୀବଦେବ ଆଚାର୍ଯ୍ୟ 'ଭକ୍ତି ଭାଗବତ', ରାୟ ରାମାନନ୍ଦ 'ଜଗନ୍ନାଥ ବଲ୍ଲଭ' ନାଟକ, ବାସୁଦେବ ସାର୍ବଭୌମ 'ଅଦ୍ୱୈତ ମାର୍କଣ୍ଡ', କବି କର୍ଣ୍ଣପୁର 'ଚୈତନ୍ୟ ଚନ୍ଦ୍ରୋଦୟ', ରାୟ ଚମ୍ପତି 'ପଦାମୃତ ସମୁଦ୍ର', ମାର୍କଣ୍ଡେୟ 'ଦଶଗ୍ରୀବ ବଧ' ଇତ୍ୟାଦି ଗ୍ରନ୍ଥମାନ ରଚନା କରିଥିଲେ ।

କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଓଡ଼ିଆ ଭାଷାର ପ୍ରଥମ ସାହିତ୍ୟ ସୃଷ୍ଟି ହେବାର ବହୁ କାରଣ ରହିଅଛି । ନବମ-ଦଶମ ଶତାବ୍ଦୀରେ ବୌଦ୍ଧ ସହଜୟାମାନଙ୍କର ଉଦାର ଧର୍ମନୀତି ସାମାଜିକ ଜୀବନକୁ ପ୍ରାୟ ଅନ୍ତଃସାରଶୂନ୍ୟ କରି ଦେଇଥିଲା । ଏକାଦଶ—ଦ୍ୱାଦଶ ଶତାବ୍ଦୀରେ ଗଙ୍ଗ ବଂଶର ଅଭ୍ୟୁତ୍ଥାନରେ ଏହି ଦୁରବସ୍ଥା କିଞ୍ଚିତ୍ ପରିମାଣରେ ଦୂର ହୋଇଥିଲେ ମଧ୍ୟ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଗଙ୍ଗବଂଶ ରାଜାମାନେ ଦୁର୍ବଳ ହୋଇ ପଡ଼ିଥିଲେ ଏବଂ ଦେଶର ରାଜନୈତିକ ଜୀବନ ପୁନର୍ବାର ଅସ୍ଥିରତାରେ ପୂର୍ଣ୍ଣ ହୋଇ ଉଠିଲା । ଏହି ସମୟରେ କପିଳେନ୍ଦ୍ର ଦେବ ଓଡ଼ିଶାର ସିଂହାସନ ଅଧିକାର କରି ଦେଶରେ ଶାନ୍ତିପୂର୍ଣ୍ଣ ବାତାବରଣ ଫେରାଇ ଆଣିବା ଚେଷ୍ଟାରେ ସଫଳ ହୋଇଥିଲେ । ଏହା ଫଳରେ ଦୀର୍ଘକାଳର ଅସ୍ଥିରତା ଦୂର ହେବା ପରେ ଓଡ଼ିଆମାନେ ସାହିତ୍ୟ, ଶିଳ୍ପ, ବାଣିଜ୍ୟ ଇତ୍ୟାଦିର ଉନ୍ନତି ନିମିତ୍ତ ଯତ୍ନବାନ ହୋଇପଡ଼ିଲେ ।

ସୌଭାଗ୍ୟବଶତଃ କପିଳେନ୍ଦ୍ର ଥିଲେ ଓଡ଼ିଆ ମାଟିର ସନ୍ତାନ । ତାଙ୍କ ପୂର୍ବରୁ ଶାସନ କରୁଥିବା ସୋମ ରାଜବଂଶ କୋଶଳରୁ ଏବଂ ଗଙ୍ଗ ରାଜବଂଶ ଆନ୍ଧ୍ର ଅଞ୍ଚଳରୁ ଆସିଥିଲେ । ପୂର୍ବବର୍ତ୍ତୀ ଶାସନ କାଳ ଅପେକ୍ଷା କପିଳେନ୍ଦ୍ର ଦେବଙ୍କ ସ୍ଥାପିତ ସୂର୍ଯ୍ୟବଂଶର ଶାସନ କାଳରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ଅଧିକ ଅନୁକୂଳ

ବାତାବରଣ ସୃଷ୍ଟି ହେବା ସ୍ୱାଭାବିକ । ପୁନଶ୍ଚ କପିଳେନ୍ଦ୍ର ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରି ଓଡ଼ିଆମାନଙ୍କ ମନରେ ନବ ଚେତନା, ଉଦ୍ଦୀପନା, ଆଶା ଓ ଆକାଙ୍‌କ୍ଷା ଜାଗ୍ରତ କରିଥିଲେ ଏବଂ ସେମାନଙ୍କ ଭୌଗଳିକ ଦୃଷ୍ଟିକୁ ସମ୍ପ୍ରସାରିତ କରିଥିଲେ । ଏଣୁ ତାଙ୍କ ରାଜତ୍ୱ କାଳ ହିଁ ଓଡ଼ିଆ ସାହିତ୍ୟର ପ୍ରଥମ ଅଭ୍ୟୁଦୟର ଅନୁକୂଳ ସମୟ ହୋଇଥିଲା ।

ପୁନଶ୍ଚ ସୂର୍ଯ୍ୟବଂଶୀ ଗଜପତି ସମ୍ରାଟ କପିଳେନ୍ଦ୍ରଙ୍କ ମାତୃଭାଷା ପ୍ରୀତି ସ୍ୱତଃ ଆମ ମନରେ ଧାରଣା ଜନ୍ମାଏ ଯେ ସମ୍ଭବତଃ ସାରଳା ଦାସ ନିଜ କବି ଜୀବନର ପ୍ରାକ୍‌କାଳରେ ସାହିତ୍ୟ ପ୍ରେମୀ କପିଳେନ୍ଦ୍ରଙ୍କ ଶୁଭ ଦୃଷ୍ଟିକୁ ଆସି ଅଛନ୍ତି ଏବଂ ରାଜ ପୃଷ୍ଠପୋଷକତା ଲାଭ କରିଥାନ୍ତୁ ବା ନଥାନ୍ତୁ, ନିଜର ତଥା ଗଜପତିଙ୍କ ମାତୃଭାଷାରେ ବିରାଟକାୟ ଗ୍ରନ୍ଥମାନ ରଚନା କରିବାରେ ମନୋନିବେଶ କରିଅଛନ୍ତି । ସାରଳା ଦାସ ଓ ଗଜପତି କପିଳେନ୍ଦ୍ର ଉଭୟେ ଉଭୟଙ୍କ ମଧ୍ୟରେ ହୁଏତ ଅଦ୍ଭୁତ ସାମଞ୍ଜସ୍ୟ ଲକ୍ଷ୍ୟ କରିଅଛନ୍ତି । ଉଭୟେ ଅଖ୍ୟାତ କୃଷକ ପରିବାରରେ ଜନ୍ମ ଗ୍ରହଣ କରିଥିଲେ, ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ ଏବଂ ଲୋକ କଥିତ ଭାଷା ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ତେଣୁ ଏମାନଙ୍କ ମଧ୍ୟରେ ସହୃଦୟତା ସ୍ଥାପିତ ହେବା ସ୍ୱଭାବସିଦ୍ଧ । ଏହି ସୁବିଧା ହୁଏତ ପ୍ରାନ୍ତୀୟ ଭାଷାରେ ଗ୍ରନ୍ଥ ରଚନା କରିବା ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି କରିଅଛି ଏବଂ ତା'ର ସୁଯୋଗ ନେଇ ସାରଳା ଦାସ ଆଜି ଶ୍ରେଷ୍ଠ କବିର ଗୌରବ ଅର୍ଜନ କରିଅଛନ୍ତି । ପରିଶେଷରେ କପିଳେନ୍ଦ୍ର ଦେବଙ୍କ ଓଡ଼ିଆ ପ୍ରୀତି ଓଡ଼ିଶାର ଅଗଣିତ ପାଠକଙ୍କୁ ସାରଳାଦାସଙ୍କ ଓଡ଼ିଆ ମହାଭାରତ ପ୍ରତି ଆକର୍ଷିତ କରିଅଛି ଏବଂ ପରବର୍ତ୍ତୀ କାଳରେ ସାରଳାଙ୍କ ପଦାଙ୍କ ଅନୁସରଣ କରି ଅନେକ ଓଡ଼ିଆ କବି ମାତୃଭାଷାରେ କାବ୍ୟ, ପୁରାଣାଦି ଗ୍ରନ୍ଥ ରଚନା କରିବାକୁ ଆଗେଇ ଆସିଅଛନ୍ତି ।

## ସାରଳାକାଳୀନ ରାଜନୈତିକ ଓଡ଼ିଶା

ସୂର୍ଯ୍ୟବଂଶରେ ପ୍ରଥମ ସମ୍ରାଟ ପ୍ରବଳ ପରାକ୍ରମୀ କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳ ( ୧୪୩୫–୧୪୬୭ ) ର ଶେଷ ଭାଗରେ ଏବଂ ଏହି ବଂଶର ଦ୍ୱିତୀୟ ସମ୍ରାଟ ଗଜପତି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱକାଳ ( ୧୪୬୭-୧୪୯୭ ) ର ପ୍ରଥମ ଭାଗରେ ସାରଳା ଦାସ ଜୀବିତ ଥିବାର ଜଣାଯାଏ । କପିଳେନ୍ଦ୍ର ଦେବଙ୍କ ପୂର୍ବରୁ ଓଡ଼ିଶାରେ ଗଙ୍ଗବଂଶର ରାଜାମାନେ ଶାସନ କରୁଥିଲେ । ଏହି ରାଜାମାନେ ସୁଶାସକ ଥିଲେ ଏବଂ ଦୀର୍ଘ ତିନିଶହ କୋଡ଼ିଏ ବର୍ଷକାଳ ଶାସନ କରିଥିଲେ । ଏହି ସମୟରେ ଓଡ଼ିଶା ରାଜନୈତିକ, ସାମରିକ, ଅର୍ଥନୈତିକ ଆଦି ଦୃଷ୍ଟିରୁ ଏକ ସମୃଦ୍ଧିଶାଳୀ ହିନ୍ଦୁରାଜ୍ୟ ଭାବେ ଭାରତ ତଥା ଭାରତ ବାହାରେ ଖ୍ୟାତି ଅର୍ଜନ କରିଥିଲା । ଏହି ବଂଶର ପ୍ରବଳ ପ୍ରତାପୀ ଚୋଡ଼ଗଙ୍ଗ ଦେବ ଖ୍ରୀ: ଅ: ୧୦୭୮ରୁ ଖ୍ରୀ.ଅ: ୧୧୪୭ ପର୍ଯ୍ୟନ୍ତ

ଦୀର୍ଘସମୟ ରାଜତ୍ୱ କରିଥିଲେ । ଦ୍ୱିତୀୟ ଭୀମଦେବଙ୍କ ରାଜତ୍ୱ ସମୟରୁ ଅର୍ଥାତ ୧୩ଶ ଶତାବ୍ଦୀରୁ ବଙ୍ଗର ସୁଲତାନ ଓଡ଼ିଶାକୁ ବାରମ୍ବାର ଆକ୍ରମଣ କରିଥିଲେ । ମାତ୍ର ସମର ନିପୁଣ ଦୁର୍ଦ୍ଧର୍ଷ ଓଡ଼ିଆ ଜାତି ସେମାନଙ୍କୁ ଓଡ଼ିଶାର ସୀମା ଅତିକ୍ରମ କରିବାକୁ ଦେଇ ନ ଥିଲେ । ଲାଙ୍ଗୁଳା ନରସିଂହ ଦେବ ବଙ୍ଗ ଅଭିଯାନ ( ଖ୍ରୀ: ୧୨୪୧-୪୩ ) କରି ବଙ୍ଗନବାବ ତୁଗ୍ରୀଲ୍ ତୁଘାନଖାଁଙ୍କୁ ପରାସ୍ତ କରିଥିଲେ । ଫଳରେ ବଙ୍ଗଳାର ମେଦିନୀପୁର, ଚବିଶ-ପ୍ରଗଣା, ହାଓଡ଼ା, ବାଙ୍କୁଡ଼ା ପ୍ରଭୃତି ଅଞ୍ଚଳ ଓଡ଼ିଶାର ଶାସନାଧୀନ ହେଲା । କାଳକ୍ରମେ ଓଡ଼ିଶାର ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିଲା ଏବଂ ଫଳତଃ ଖ୍ରୀ: ଅ: ୧୩୬୧ ରେ ଦିଲ୍ଲୀର ଶାସକ ଫିରୋଜସାହ ତୋଗଲକ ତୃତୀୟ ଭାନୁଦେବଙ୍କୁ ପରାସ୍ତ କରି ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିଥିଲେ । ଏହି ସମୟରେ ଦେଖାଦେଲା ଦେଶରେ ଅଭୂତପୂର୍ବ ଅନ୍ତର୍ବିପ୍ଳବ ଏବଂ ଏହାର ସୁଯୋଗ ନେଇ ସୁଚତୁର ଓ କୌଶଳୀ ସେନାପତି କପିଳ ରାଉତ କପିଳେନ୍ଦ୍ର ଦେବ ରୂପେ ଓଡ଼ିଶାର ସିଂହାସନ ଅଧିକାର କଲେ ।

କପିଳେନ୍ଦ୍ର ଦେବଙ୍କ ଅଧୀନରେ ଓଡ଼ିଶାର ସାମରିକ ଶକ୍ତି ପୁଣି ବିପୁଳ ଭାବରେ ଗଢ଼ି ଉଠିଲା । ସେ ସିଂହାସନ ଆରୋହଣ କରିବା ସଙ୍ଗେ ସଙ୍ଗେ ବିଦ୍ରୋହୀ ସାମନ୍ତ ରାଜାମାନଙ୍କୁ ଦମନ କରିଥିଲେ । ଦକ୍ଷିଣରେ ଖେମଣ୍ଡି ସମେତ ଅନ୍ୟ କେତେକ ସାମନ୍ତ ରାଜାମାନଙ୍କ ବିଦ୍ରୋହ ଦମନ କରିବା ନିମନ୍ତେ ସେ ସେମାନଙ୍କ ବିରୁଦ୍ଧରେ ଖ୍ରୀ ଅ: ୧୪୪୨ ରେ ଅଭିଯାନ କରିଥିଲେ । ଯୁଦ୍ଧରେ ଉକ୍ତ ରାଜାମାନେ ପରାଜିତ ହୋଇଥିଲେ ଏବଂ ସେଠାରେ ଶାନ୍ତି ସ୍ଥାପିତ ହୋଇଥିଲା । ସେହି ବର୍ଷ ମହେନ୍ଦ୍ରଗିରି ଅଭିଯାନ ମଧ୍ୟ ତାଙ୍କର ସଫଳ ହୋଇଥିଲା ଏବଂ ସେ ମହେନ୍ଦ୍ରଗିରିଠାରୁ ଆନ୍ଧ୍ରର କୋଣ୍ଡାପାଲି ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ଏହି ଅଭିଯାନ କାଳରେ ଆଳି, କନିକା, କୁଜଙ୍ଗ ଆଦି ଅଞ୍ଚଳ ସମେତ ଅନ୍ୟାନ୍ୟ କେତେକ ଅଞ୍ଚଳର ସାମନ୍ତ ରାଜାଗଣ ବିଦ୍ରୋହ ଘୋଷଣା କରିବାରୁ କପିଳେନ୍ଦ୍ର କୋଣ୍ଡାପାଲିଠାରୁ ଫେରିଆସି ଏହି ଅଞ୍ଚଳର ବିଦ୍ରୋହୀମାନଙ୍କୁ ଦମନ କରିଥିଲେ । ଖ୍ରୀ: ଅ: ୧୪୪୭ ରେ ସେ କୃଷ୍ଣା-ଗୋଦାବରୀ ନଦୀର ମଧ୍ୟବର୍ତ୍ତୀ ରାଜ୍ୟର କୁଣ୍ଡାବିଦୁ ଦୁର୍ଗ ଦଖଲ କରିଥିଲେ । ଏହି ସମୟରେ ବଙ୍ଗର ସୁଲତାନ ନାସିରୁଦ୍ଦିନ ମହମ୍ମଦ ଓଡ଼ିଶାର ଉତ୍ତରାଞ୍ଚଳ ଆକ୍ରମଣ କରିଥିଲେ; ମାତ୍ର କପିଳେନ୍ଦ୍ର ଦେବ ଖ୍ରୀ: ଅ: ୧୪୫୦ ରେ ତାଙ୍କୁ ଯୁଦ୍ଧରେ ପରାସ୍ତ କରି 'ଗୌଡ଼େଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ । ଖ୍ରୀ ଅ: ୧୪୫୮ ରେ ଦକ୍ଷିଣର ଅନ୍ୟ ଏକ ସୁଦୃଢ଼ ଦୁର୍ଗ ଦେବରକୋଣ୍ଡା ଓ ଓ୍ୱାରଙ୍ଗଲ ଦୁର୍ଗ ସେ ଅଧିକାର କରିଥିଲେ । ଖ୍ରୀ: ଅ: ୧୪୬୨ ରେ ବିଜୟ ନଗର ସାମ୍ରାଜ୍ୟାଧୀନ ଥିବା ତାମିଲ୍‌ଭାଷୀ ଅଞ୍ଚଳର ଉଦୟଗିରି ଓ ଚନ୍ଦ୍ରଗିରି ନାମକ ପ୍ରଦେଶ ଦ୍ୱୟ ଅଧିକାର କରି କାଞ୍ଚିନଗର ( ଆଧୁନିକ କାଞ୍ଚିଭେରମ୍ ) ମଧ୍ୟ ଦଖଲ କରିଥିଲେ ।

ଖ୍ରୀ: ଅ: ୧୪୫୮ ରେ ହୁମାୟୁନ ଦିଲ୍ଲୀର ସୁଲତାନ ହେଲେ । ତାଙ୍କ ସୈନ୍ୟମାନେ ସେନାପତି ଜଲାଲ ଖାଁଙ୍କ ନେତୃତ୍ୱରେ ବହୁଦିନ ପର୍ଯ୍ୟନ୍ତ ଦେବରକୋଣ୍ଡା ଦୁର୍ଗ ଅବରୋଧ କରିଥିଲେ । ଏହି ସମୟରେ ଦକ୍ଷିଣର ବେଲମ ବଂଶୀ ହିନ୍ଦୁରାଜାମାନଙ୍କ ନିମନ୍ତ୍ରଣ ରକ୍ଷା କରି କପିଳେନ୍ଦ୍ର ଦେବ ଜଲାଲ ଖାଁଙ୍କୁ ଆକ୍ରମଣ କଲେ ଏବଂ ପରାସ୍ତ କଲେ । ପୁନଶ୍ଚ ଖ୍ରୀ: ଅ: ୧୪୫୯ ରେ ସେ ବାହମନୀର ସୁଲତାନ ଦ୍ୱିତୀୟ ଆଲାଉଦ୍ଦୀନ୍ ଅହମ୍ମଦଙ୍କୁ ଦେବରକୋଣ୍ଡାଠାରେ ପରାସ୍ତ କରିଥିଲେ । ବାହମନୀ ସୁଲତାନ ପରାଜିତ ହେବା ପରେ ତାଙ୍କୁ କାଲବର୍ଗ ବା କାଲବର୍ଗା ଅଞ୍ଚଳ ପ୍ରଦାନ କରିଥିଲେ ଏବଂ ତାଙ୍କ ସହିତ ସନ୍ଧି ସ୍ଥାପନ କରିଥିଲେ । ସେହିଦିନଠାରୁ କପିଳେନ୍ଦ୍ର ଦେବଙ୍କ ପ୍ରଶସ୍ତିରେ 'କଲବର୍ଗେଶ୍ୱର' ଉପାଧି ସଂଯୋଜିତ ହୋଇଥିଲା । ଏହି ସମୟରେ ଉତ୍କଳୀୟ ସୈନ୍ୟମାନେ ଉତ୍ତରରେ ଗଙ୍ଗାଠାରୁ ଆରମ୍ଭ କରି ଦକ୍ଷିଣରେ ରାମେଶ୍ୱରମ୍ ପର୍ଯ୍ୟନ୍ତ ଜୟକରି ଉତ୍କଳ ସାମ୍ରାଜ୍ୟକୁ ସୁଦୃଢ଼ କରିପାରିଥିଲେ । ଆଇତିହାସିକ ପ୍ରାଣନାଥ ମହାନ୍ତି କପିଳେନ୍ଦ୍ର ଦେବଙ୍କୁ ସମଗ୍ର ଦକ୍ଷିଣ ଭାରତର ସମ୍ରାଟ ଭାବେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟୀୟ ୧୮ଶ ଓ ୧୯ଶ ଶତାବ୍ଦୀର ମହାବୀର ନେପୋଲିୟନଙ୍କ ସଙ୍ଗେ ସେ ତୁଳନୀୟ ବୋଲି ମତ ଦିଅନ୍ତି ; ମାତ୍ର ନେପୋଲିୟନ ଜୀବନ କାଳ ମଧ୍ୟରେ ପରାଜୟ ସ୍ୱୀକାର କରିଥିବା ସ୍ଥଳେ ମହାବୀର କପିଳେନ୍ଦ୍ର ଜୀବନରେ ପରାଜୟ କ'ଣ ଜାଣି ନ ଥିଲେ । ଯଦି ତାଙ୍କର ଅକାଳ ବିୟୋଗ ଘଟି ନ ଥାନ୍ତା, ସେ ସମଗ୍ର ଭାରତ ବର୍ଷରେ ଏକ ବିଶାଳ ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ନିମନ୍ତେ ସମର୍ଥ ହୋଇ ପାରିଥାନ୍ତେ ।

କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳ ଯୁଦ୍ଧ ଘନଘଟାରେ ପରିପୂର୍ଣ୍ଣ । ଏଣୁ ଦେଶରେ ଅଳ୍ପ ସମୟ ପାଇଁ ରାଜନୈତିକ ସ୍ଥିରତା ଥିଲେ ମଧ୍ୟ ପ୍ରଜାଗଣ ସୁଖ ଶାନ୍ତିରେ କାଳାତିପାତ କରୁଥିଲେ । ପ୍ରାୟ ସର୍ବଦା ଯୁଦ୍ଧରେ ବ୍ୟସ୍ତ ଥିଲେ ମଧ୍ୟ କପିଳେନ୍ଦ୍ର ଦେବ ଦେଶର ସାଧାରଣ ଉନ୍ନତି ମୂଳକ କାର୍ଯ୍ୟରେ ଅବହେଳା କରି ନ ଥିଲେ । ଦେଶର ପ୍ରଜାଗଣ ଯେପରି ସୁଶାସନରୁ ବଞ୍ଚିତ ନ ହୁଅନ୍ତି ସେଥି ନିମନ୍ତେ ଅଧିକ ଧ୍ୟାନ ଦେବାକୁ ସେ ସାମନ୍ତ ରାଜାମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କ ରାଜତ୍ୱ କାଳରେ ଦେଶର ରାଜନୈତିକ, ସାମାଜିକ, ଅର୍ଥନୈତିକ ଅବସ୍ଥାରେ ଉନ୍ନତି ଘଟିଥିଲା ଏବଂ ଜନସାଧାରଣ ଏପରି ଜଣେ ସର୍ବଗୁଣ ସମ୍ପନ୍ନ ସମ୍ରାଟ ପାଇ ଧନ୍ୟ ହୋଇଥିଲେ ।

## ସାରଳା ଦାସଙ୍କ ପୂର୍ବବର୍ତ୍ତୀ ଓଡ଼ିଆ ସାହିତ୍ୟ

ମହାକବି ସାରଳା ଦାସଙ୍କୁ 'ଆଦିକବି'ର ସମ୍ମାନ ଦିଆଯାଏ । ସେ ପଞ୍ଚଦଶ ଶତାବ୍ଦୀର ଗଜପତି ମହାରାଜା କପିଳେନ୍ଦ୍ର ଦେବ (୧୪୩୫ —୧୪୬୭)ଙ୍କ ସମସାମୟିକ ଥିଲେ ଏବଂ ତାଙ୍କ କାବ୍ୟାବଳୀ ହିଁ ଓଡ଼ିଆ ଭାଷାର ସର୍ବପ୍ରଥମ ସୁବୃହତ ସାହିତ୍ୟ ।

ସାରଳାଙ୍କ ପୂର୍ବରୁ ଓଡ଼ିଆ ଭାଷା ତ ନିଶ୍ଚୟ ଥିଲା; କିନ୍ତୁ ଓଡ଼ିଆ ସାହିତ୍ୟ ଥିଲା କି ନ ଥିଲା ଏବଂ ଯଦି ଥିଲା, ତା'ର ସ୍ୱରୂପ କିପରି ଥିଲା ଇତ୍ୟାଦି ଅନେକ କଥା ଜାଣିବା ନିମନ୍ତେ ମନରେ ସ୍ୱତଃ ଆଗ୍ରହ ଜାତ ହୁଏ । ତାଙ୍କ ପୂର୍ବରୁ ଓଡ଼ିଆ ଭାଷା ଯେ ଅବିକଶିତ ଅବସ୍ଥାରେ ଥିଲା, ଏହା ନିଃସନ୍ଦେହରେ କୁହାଯାଇପାରେ; ମାତ୍ର ଭାଷାର ଏହି ଅବିକଶିତ ଅବସ୍ଥାରେ ଓ ପୂର୍ବକାଳୀନ ସାହିତ୍ୟର କୌଣସି ପ୍ରଭାବ ନ ଥାଇ ସାରଳା ଦାସଙ୍କ ଅଷ୍ଟାଦଶ ପର୍ବରେ ବିରଚିତ ମହାକାବ୍ୟ ମହାଭାରତ ଏବଂ ଅନ୍ୟାନ୍ୟ ଗ୍ରନ୍ଥ ରଚନା କେମିତି ଜାହିଁକି ଅବିଶ୍ୱାସ୍ୟ ବୋଧହୁଏ । ତେଣୁ ସାରଳାଙ୍କ ପୂର୍ବକାଳୀନ ସାହିତ୍ୟର ସ୍ୱରୂପ ସମ୍ପର୍କରେ ଏକ ନାତିଦୀର୍ଘ ଆଲୋଚନା ପାଠକଙ୍କ ସୁବିଧା ନିମିତ୍ତ ନିମ୍ନରେ ପ୍ରଦତ୍ତ ହେଲା ।

ସାରଳା ସାହିତ୍ୟ ପୂର୍ବରୁ ଆମ ସାହିତ୍ୟରେ କୌଣସି ସାର୍ଥକ ସାହିତ୍ୟିକ ନିଦର୍ଶନ ପରିଦୃଷ୍ଟ ହୁଏ ନାହିଁ । 'ବୌଦ୍ଧଗାନ ଓ ଦୋହା' ତଥା ଚର୍ଯ୍ୟାପଦମାନଙ୍କୁ ଓଡ଼ିଆ ଭାଷାର ଆଦି ସାହିତ୍ୟ ଭାବରେ ଗ୍ରହଣ କରାଯାଉଛି; କିନ୍ତୁ ଏହା ସପକ୍ଷରେ ଅକାଟ୍ୟ ପ୍ରମାଣ ପ୍ରଦର୍ଶିତ ହୋଇ ପାରି ନାହିଁ । ପୁନଶ୍ଚ ପ୍ରାକ୍ ସାରଳା ସାହିତ୍ୟ ଭାବରେ ଗୃହୀତ ବତ୍ସା ଦାସଙ୍କ 'କଳସା ଚଉତିଶା', ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ଏବଂ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ 'ରୁଦ୍ରସୁଧାନିଧି' ରଚନାକାଳ ସମ୍ବନ୍ଧରେ ମଧ୍ୟ ମତଦ୍ୱୈଧ ରହିଛି ।

ଚର୍ଯ୍ୟାଗୀତ ଏବଂ ଦୋହା ଓଡ଼ିଆ ଭାଷା ଓ ସାହିତ୍ୟର ଆଦିରୂପ ବୋଲି ଗୃହୀତ ହେଉଥିଲେ ହେଁ ଏହାର ଭାଷାକୁ ବିକଶିତ ଓଡ଼ିଆ ଭାଷା ରୂପେ ଗ୍ରହଣ କରି ହେବ ନାହିଁ । ଏହାର ରଚନାକାଳ ଖ୍ରୀଷ୍ଟୀୟ ୭ମ-୮ମ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ୧୦ମ-୧୧ଶ ଶତାବ୍ଦୀ ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି । ଏହି ଚର୍ଯ୍ୟାପଦାବଳୀର ଆବିଷ୍କାରକ ହେଉଛନ୍ତି ଜନୈକ ବଙ୍ଗାଳୀ ପଣ୍ଡିତ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ । ସେ ଏହିଗୁଡ଼ିକୁ ଆଦି ବଙ୍ଗ ସାହିତ୍ୟ ବୋଲି ଦାବୀ କରିଥିଲେ । ପରେ ପରେ ଏଗୁଡ଼ିକ ଓଡ଼ିଆ, ଆସାମୀ, ମାଗଧୀ, ମୈଥିଳୀ ଓ ଭୋଜପୁରୀ ଭାଷାର ଆଦି ସାହିତ୍ୟ ରୂପେ ସମ୍ପୃକ୍ତ ଅଞ୍ଚଳର ପଣ୍ଡିତମାନଙ୍କ ଦ୍ୱାରା ଗୃହୀତ ହେଲା ଏବଂ ସେମାନଙ୍କ ଦ୍ୱାରା ଏହା ସେମାନଙ୍କ ଅଞ୍ଚଳର ଆଦି ସାହିତ୍ୟ ବୋଲି ଦାବୀ ମଧ୍ୟ ଉପସ୍ଥାପିତ ହେଲା । ଗୋଟିଏ ଅଞ୍ଚଳର ପଣ୍ଡିତମାନଙ୍କ ଦ୍ୱାରା ଯେଉଁ ଯେଉଁ ଶବ୍ଦ ଉଦାହରଣ ରୂପେ ଦିଆଯାଇ ତାହା ତାଙ୍କ ଭାଷାରେ ପ୍ରଚଳିତ ବୋଲି କୁହାଗଲା, ଅନ୍ୟ ଅଞ୍ଚଳର ପଣ୍ଡିତମାନେ ମଧ୍ୟ ସେହି ଶବ୍ଦାବଳୀ ସେମାନଙ୍କ ନିଜ ଅଞ୍ଚଳର ଭାଷାରେ ପ୍ରଚଳିତ ବୋଲି ଦାବୀ କଲେ । ଶେଷରେ ଏହା ଏକ ମସୀ ଯୁଦ୍ଧରେ ପରିଣତ ହେଲା ଏବଂ ଏହାର ଅବସାନ ଘଟିଲା, ଯେତେବେଳେ ଗମ୍ଭୀର ଅନୁଶୀଳନ ଫଳରେ ପଣ୍ଡିତମାନେ ମତ ଦେଲେ ଯେ ଏହା କୌଣସି ଗୋଟିଏ ଅଞ୍ଚଳର ଭାଷା ବା ସାହିତ୍ୟ ନୁହେଁ;

ଏହା ଗୋଟିଏ ଧର୍ମ ସମ୍ପ୍ରଦାୟର ଭାଷା ଓ ସାହିତ୍ୟ । ଏହା କୌଣସି ଅଞ୍ଚଳରେ କଥିତ ଭାଷା ରୂପେ ପ୍ରଚଳିତ ନ ଥିଲା । ଏହା ପୂର୍ବଖଣ୍ଡର ଅପଭ୍ରଂଶ ଭାଷା ଏବଂ ଏଥିରୁ ପରବର୍ତ୍ତୀ କାଳରେ ଆସାମୀ, ବଙ୍ଗଳା, ଓଡ଼ିଆ, ମୈଥିଳୀ, ହିନ୍ଦୀ ପ୍ରଭୃତି ଭାଷାର ସୃଷ୍ଟି ହୋଇଥିଲା ।

ଚର୍ଯ୍ୟାକାରଙ୍କ ରଚନା ପରେ ଓଡ଼ିଆ ସାହିତ୍ୟରେ ନାଥ ଧର୍ମ ପ୍ରଖ୍ୟାପକ ଶିଶୁବେଦ, ଅମରକୋଷ ଗୀତା, ସପ୍ତାଙ୍ଗ ଯୋଗସାର, ଗୋରଖ ଗୀତା ଇତ୍ୟାଦି କେତେକ ରଚନା ଦେଖିବାକୁ ମିଳେ । ଗୋରେଖନାଥଙ୍କ ସାହିତ୍ୟ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଭାରତର ବିଭିନ୍ନ ଅଞ୍ଚଳରେ ବିଶେଷ ଲୋକପ୍ରିୟ ଧର୍ମ ସାହିତ୍ୟ ଥିଲା । ସାରଳା ଦାସଙ୍କ ମହାଭାରତରେ ଏହି ଗୋରେଖନାଥଙ୍କ ନାମ ଅନେକବାର ଉଲ୍ଲିଖିତ ହୋଇଥିବାର ଦେଖାଯାଏ । ଏଣୁ ନାଥ ଧର୍ମ ସାହିତ୍ୟର ପ୍ରଚଳନ ସାରଳାଙ୍କ ପୂର୍ବରୁ ଓଡ଼ିଶାରେ ଯେ ଥିଲା, ଏଥିରେ ସନ୍ଦେହ ପ୍ରକାଶ କରାଯାଇ ନ ପାରେ । କେବଳ ଓଡ଼ିଆ କାହିଁକି ବଙ୍ଗଳା, ହିନ୍ଦୀ ଓ ଆସାମୀ ପ୍ରଭୃତି ପ୍ରାଚୀନ ସାହିତ୍ୟର ଭିତ୍ତି ମଧ୍ୟ ନାଥ ଧର୍ମ ଉପରେ ଅନେକ ପରିମାଣରେ ନିର୍ଭର କରେ । ନାଥ ସାହିତ୍ୟର ଭାଷା ଚର୍ଯ୍ୟାଗୀତିର ଭାଷାଠାରୁ ଭିନ୍ନତା ରକ୍ଷା କରି ପାରି ନ ଥିବାର ଲକ୍ଷ୍ୟ କରାଯାଏ ।

ଶୈବ ଧର୍ମକୁ କେନ୍ଦ୍ର କରି ଗଦ୍ୟ ପଦ୍ୟ ମିଶ୍ରିତ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ରଚନା 'ରୁଦ୍ରସୁଧାନିଧି'କୁ କେତେକ ଆଲୋଚକ ସାରଳା ସାହିତ୍ୟର ପୂର୍ବବର୍ତ୍ତୀ ବୋଲି ମତ ଦିଅନ୍ତି; ମାତ୍ର 'ରୁଦ୍ରସୁଧାନିଧି'ର ଭାଷା ସାରଳା ସାହିତ୍ୟର ଭାଷାର ତୁଳନାତ୍ମକ ବିଶ୍ଳେଷଣ କରି ସ୍ୱର୍ଗତ ଅଧ୍ୟାପକ ଡ. କରୁଣାକର କର ମତ ପ୍ରକାଶ କରନ୍ତି ଯେ 'ରୁଦ୍ରସୁଧାନିଧି' ସାରଳା ସାହିତ୍ୟର ପରବର୍ତ୍ତୀ ରଚନା । ଏହା ବ୍ୟତୀତ ଏଥିରେ ସାରଳା ମହାଭାରତର ଗ୍ରନ୍ଥ ପଡ଼ିଛି ଏବଂ ଏଥିରେ 'ମୋଗଲ' ଶବ୍ଦଟି ବ୍ୟବହୃତ ହୋଇଅଛି । ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ସାମାନ୍ୟ ଜ୍ଞାନ ଲାଭ କରିଥିବା ଯେ କୌଣସି ସାଧାରଣ ପାଠକ 'ରୁଦ୍ରସୁଧାନିଧି' ଅଧ୍ୟୟନ କଲେ ଏହାର ସଂସ୍କୃତ କାବ୍ୟ ପ୍ରଭାବିତ ଭାଷା ଏବଂ ଅନ୍ୟାନ୍ୟ ବିଭାଗ ସବୁ ବିଚାରକୁ ନେଇ ନିଶ୍ଚିତ ଭାବେ ମତ ଦେବ ଯେ ଏହା ଭଞ୍ଜ ଯୁଗରେ ରଚିତ ।

ବତ୍ସା ଦାସଙ୍କ 'କଳସା ଚଉତିଶା', ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ଓ ଦନାଇ ଦାସଙ୍କ 'ଗୋପୀଭାଷା'କୁ ସାରଳାଙ୍କ ପୂର୍ବବର୍ତ୍ତୀ ରଚନା ଭାବରେ କେତେକ ଆଲୋଚକ ଗ୍ରହଣ କରିଥାନ୍ତି । ଏ ରଚନାଗୁଡ଼ିକ ଅତି କ୍ଷୁଦ୍ର ଏବଂ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି । ଭାଷା ଦୃଷ୍ଟିରୁ ଏଗୁଡ଼ିକର ଭାଷା ସାରଳା ସାହିତ୍ୟର ଭାଷାଠାରୁ ପ୍ରାଚୀନତର ବୋଲି ମନେହୁଏ ନାହିଁ । ପୁନଶ୍ଚ ଏପରି ମତାମତ ପଛରେ ଦୃଢ଼-ଯୁକ୍ତିର ମଧ୍ୟ ଅଭାବ । ଏଣୁ ଏଗୁଡ଼ିକ ସାରଳା ପୂର୍ବବର୍ତ୍ତୀ ବୋଲି ଯାହା କୁହାଯାଉଛି

ତାହା କେବଳ ଅନୁମାନଭିତ୍ତିକ ଏବଂ ଏହା ପଛରେ ନିର୍ଭରଯୋଗ୍ୟ କୌଣସି ପ୍ରମାଣ ନାହିଁ । ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରି ଅନେକ ଆଲୋଚକ ଏହି ରଚନାଗୁଡ଼ିକୁ ସାରଳାଙ୍କ ପରବର୍ତ୍ତୀ କାଳରେ ଅବସ୍ଥାପିତ କରିଅଛନ୍ତି ।

ଉପରୋକ୍ତ ରଚନାଗୁଡ଼ିକୁ ସାରଳାଙ୍କ ପୂର୍ବବର୍ତ୍ତୀକାଳୀନ ବୋଲି ମତ ଦେଉଥିବା ଆଲୋଚକମାନଙ୍କର ଉଦ୍ଦେଶ୍ୟ ସମ୍ଭବତଃ ଓଡ଼ିଆ ସାହିତ୍ୟର ପ୍ରାରମ୍ଭକୁ ପ୍ରାଚୀନତର ପ୍ରମାଣ କରିବା । ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର କଲେ, ଲୋକମୁଖରେ ପ୍ରଚଳିତ ଲୋକଗୀତି ହିଁ ଓଡ଼ିଆ ଭାଷାର ସର୍ବପ୍ରାଚୀନ ସାହିତ୍ୟ ଏବଂ ସାରଳା ଦାସ ପଞ୍ଚଦଶ ଶତାବ୍ଦୀରେ ଏହି ଭାଷାରେ ଏକ ବିଧିବଦ୍ଧ ଲିଖିତ ସାହିତ୍ୟର ମୂଳଦୁଆ ପକାଇଥିଲେ ।

□□

# କବି ପରିଚୟ

ସାରଳା ଦାସଙ୍କ ଜନ୍ମସ୍ଥାନ ସମ୍ପର୍କରେ ବିଭିନ୍ନ ଆଲୋଚକ ଭିନ୍ନ ଭିନ୍ନ ମତ ବ୍ୟକ୍ତ କରନ୍ତି । ଖ୍ରୀ ୧୮୯ ରେ ରୟାଲ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ ପତ୍ରିକାରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରବନ୍ଧରେ ମନମୋହନ ଚକ୍ରବର୍ତ୍ତୀ ସାରଳା ଦାସଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରି ଲେଖିଅଛନ୍ତି ଯେ ସାରଳା ଦାସ ଝଙ୍କଡ଼ ପ୍ରଗଣା ଅନ୍ତର୍ଗତ କାଳନାଗ ଗ୍ରାମର ଅଧିବାସୀ ଥିଲେ । ପୁନଶ୍ଚ ସେ ଲେଖିଛନ୍ତି ଯେ ପୁରୀ ରାଜା ସାରଳା ଦାସଙ୍କ କବିତ୍ୱରେ ମୁଗ୍‌ଧ ହୋଇ ତାଙ୍କୁ ଝଙ୍କଡ଼ ଓ ତିନିଗୋଟି ପ୍ରଗଣା ଦେଇଥିଲେ । ସାରଳା ଦାସଙ୍କ ବଂଶଧରଗଣ କାଳନାଗ, ତେନ୍ତୁଳିପଦା ଓ ନିକଟବର୍ତ୍ତୀ ଅନ୍ୟାନ୍ୟ ଗ୍ରାମମାନଙ୍କରେ ଏବେ ମଧ୍ୟ ବିକ୍ଷିପ୍ତ ଭାବରେ ବାସ କରୁଅଛନ୍ତି । ସାରଳା ମହାଭାରତରୁ କାଳନାଗଠାରେ କବିଙ୍କ ଘରଥିବାର ଜଣାଯାଏ ନାହିଁ; କିନ୍ତୁ ଏ କାଳନାଗ ଗ୍ରାମ ଅତ୍ୟନ୍ତ କ୍ଷୁଦ୍ର ଏବଂ ଅଦ୍ୟାପି ବଡ଼ ସାରୋଳ ଗ୍ରାମର ଅନ୍ତର୍ଭୁକ୍ତ ହୋଇ ରହିଅଛି ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସାରଳା ପୀଠକୁ ଯାଇ ସାରଳା ଦାସଙ୍କ ଜନ୍ମସ୍ଥାନ ସମ୍ବନ୍ଧରେ ଅନୁସନ୍ଧାନ କରି ଲେଖିଛନ୍ତି, "ଚନ୍ଦ୍ରଭାଗା ନଦୀରେ (କନକପୁର ପାର୍ଶ୍ୱବାହିନୀ କ୍ଷୁଦ୍ର ନଦୀ ) ଘାଟିଆଳ ପରଶୁରାମ ତାଙ୍କର ଅଗ୍ରଜ ଥିଲେ । ଏହି ପରଶୁରାମ କନକାବତୀ ପାଟଣା ( ଆଧୁନିକ କନକପୁର ) ବସାଇ ଥିଲେ । ଏହି ଗ୍ରାମ କଟକରୁ ତାଳଦଣ୍ଡା ନାଳ ବାଟେ ପ୍ରାୟ ୧୫ କ୍ରୋଶ ପୂର୍ବରେ ଅବସ୍ଥିତ । ତାହାର ଉତ୍ତର ପଶ୍ଚିମବର୍ତ୍ତୀ ସାରଳ ନାମକ ଗ୍ରାମ ( ଆଧୁନିକ ନାମ ବଡ଼ ସାରୋଳ ) କବିଙ୍କର ଆଦିବାସସ୍ଥାନ ଥିଲା ।"

ଏ ସମ୍ବନ୍ଧରେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା "ଶ୍ରୀ ଭାରତ ଦର୍ପଣ'ରେ ଲେଖିଛନ୍ତି, "ଶ୍ରୀମାନ ସାରଳାଦାସଙ୍କ ନିବାସ ସ୍ଥାନ କଟକ ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ ପରଗଣାସ୍ଥ ଶ୍ରୀ ସାରଳା ଦେବୀଙ୍କ ପୀଠର ଅନତି ଦୂରବର୍ତ୍ତୀ କୌଣସି ଏକ ପ୍ରସିଦ୍ଧ ଗ୍ରାମ ହେବ । ଅନେକେ କହନ୍ତି, ଶ୍ରୀ ସାରଳା ପୀଠର ସମୀପ ତେନ୍ତୁଳିପଦା ନାମକ ଗ୍ରାମରେ ସାରଳା ଦାସ ଜନ୍ମ ଗ୍ରହଣ କରିଥିଲେ । କବି ନିଜେ ସ୍ଥାନେ ସ୍ଥାନେ କଂଖେରପୁର ( ଯକ୍ଷପୁର ) ବା କନକପୁର ପାଟଣା ତାହାଙ୍କର ଜନ୍ମସ୍ଥାନ ଓ ନିବାସ ଧାମ ଥିବାର ବ୍ୟକ୍ତ କରିଅଛନ୍ତି ।" ( ପୃ ୨୮୨-୮୩ ) ପୁନଶ୍ଚ ସେ ଉଲ୍ଲେଖ କରିଅଛନ୍ତି ଯେ ସମ୍ଭବତଃ ପରସ୍ପର ନିକଟବର୍ତ୍ତୀ ଝଙ୍କଡ଼, ଶାରଳ, ତେନ୍ତୁଳିପଦା, କନକପୁର ପାଟଣା ବା ଗ୍ରାମପାଟଣା ପ୍ରଭୃତି ସ୍ଥାନମାନଙ୍କରେ ସାରଳା ଦାସ କବିଙ୍କର ସାମୟିକ ନିବାସମାନ ଥିଲା ।

ଭାରତୀୟ ପରମ୍ପରାରେ ନିଜ ସମ୍ପର୍କରେ ବିବରଣୀ ପ୍ରଦାନ କରିବା ଏକ ଅପମାନଜନକ ଓ ଅହଂକାରର କାର୍ଯ୍ୟ ରୂପେ ବିବେଚିତ ହେଉଥିବାରୁ ପ୍ରାଚୀନ ଲେଖକ, କବି, ଐତିହାସିକ ପ୍ରମୁଖ ଆତ୍ମବିବରଣୀ ଲିପିବଦ୍ଧ କରିବାର ଦୁଃସାହସ ପୋଷଣ କରୁ ନ ଥିଲେ । ଅଶ୍ୱଘୋଷ, କାଳିଦାସ, ଭବଭୂତି ପ୍ରଭୃତି କବିମାନଙ୍କ ମଧ୍ୟରୁ କେହିହେଲେ ସ୍ୱପରିଚୟ ନିଜର କୌଣସି କୃତିରେ ପ୍ରଦାନ କରି ନାହାନ୍ତି । ଆମ୍ଭେ ବର୍ତ୍ତମାନ ସେମାନଙ୍କର ଯେଉଁ ଜୀବନ-ଚରିତମାନ ଦେଖିବାକୁ ପାଉ, ସେ ସମସ୍ତ ଅନୁମାନ ଓ ପରିପାର୍ଶ୍ୱିକ ପ୍ରମାଣ ଉପରେ ଆଧାରିତ । ଏହି ପରମ୍ପରାରେ ପ୍ରଭାବିତ ହୋଇ ସାରଳା ଦାସ ନିଜ ସମ୍ବନ୍ଧରେ କୌଣସି ଏକ ସ୍ଥାନରେ ମଧ୍ୟ ନିଜ ଜନ୍ମସ୍ଥାନ, ପିତାମାତାଙ୍କ ନାମ ଇତ୍ୟାଦି ସମ୍ବନ୍ଧରେ ଲେଖି ନାହାନ୍ତି । ତାଙ୍କ ରଚିତ ବିରାଟ ଗ୍ରନ୍ଥମାନଙ୍କରେ ବିକ୍ଷିପ୍ତ ହୋଇ ରହିଥିବା ତାଙ୍କ ଜୀବନୀ ସମ୍ବନ୍ଧୀୟ କେତେକ ସୂଚନା ଏଠାରେ ଉଦ୍ଧାର କରାଯାଇପାରେ ।

ସାରଳା ମହାଭାରତର ଆଦି ପର୍ବରେ ଅଛି—

"ସେ ନୀଳସୁନ୍ଦର ଗିରି ଉତ୍ତର କଚ୍ଛାଡ଼େ
ସାର ଭୂମି ଭୂଅଖଣ୍ଡେ ପୂର୍ବଦିଗ ଈଶାନ୍ୟର ଆଡ଼େ ।
ଚନ୍ଦ୍ରଭାଗା ନାମେଣ ସ୍ନେହକଇ ନଦୀ ଗୋଟି
ବୃଦ୍ଧମାତାଙ୍କ ପାରୁଶେ ମଉଦଧିରେ ଯାଇଂ ଫୁଟି ।
ସେ ନଦୀର ତୀରେ ପ୍ରଶୁରାମ ଘାଟଇ
କନକାବତୀ ନାମେ ପାଟଣା ପ୍ରକାଶଇ ।
ତହିଁର ସନ୍ନିଧେ ସାରୋଳ ନାମେ ଗ୍ରାମେ
ବିଜେ ମହେଶ୍ୱରୀ ସାରୋଳ ଚଣ୍ଡୀ ନାମେ ।

× × ×

ମୁହିଁ ଯେ ସାରଳା ଦାସ ସେହି ଗ୍ରାମରେ ଥାଇ
ନାନା କଷ୍ଟ ପଡ଼ଣ ଧନ ମୁଁ ବଞ୍ଚଇ ।
ଜାତିରେ ଶୁଦ୍ର ମୁଁ ଯେ ଅଟଇ ମୂରୁଖ
ପାଠ ଶାସ୍ତ୍ରମାନ ମୁଁ ନ ଜାଣଇ ଲୋକ ।
ସାରଳା ଗ୍ରାମରେ ମୁଁ ଅଟଇ ପ୍ରଧାନ
ପୂରୁଷ ଅନୁକ୍ରମେ ଅଟୁଁ ଯେ ଗ୍ରାମୀନ ।

× × ×

ଆମ୍ଭର ପିତାଂକର ଯେ ଅଟଇ ଗୃହପୂଜ
ପିତାମାତା ଆମ୍ଭର ଅଟନ୍ତି ବୃଦ୍ଧଗତ ।
ସବୁହୁଂ ସାନ ମୁଁ ଯେ ଜଡ଼ଭ୍ରବ ମତି
ଜ୍ୟେଷ୍ଠ ଭ୍ରାତ୍ରମାନେ ଯେ କାର୍ଯ୍ୟ କରୁଥାନ୍ତି ।"

ଦ୍ରୋଣ ପର୍ବରେ ଅଛି—

"ଆହେ ପ୍ରଭୁ ମୋତେ କର ଆପଣଙ୍କ ଭୃତ୍ୟ
ଯଶୋବନ୍ତ ନନ୍ଦନ ମୁଁ ମୂରୁଖ ଅତ୍ୟନ୍ତ ।"

ବିଲଙ୍କା ରାମାୟଣରେ ଅଛି—

"ଝଙ୍କଡ଼ ଗ୍ରାମରେ ମୋର ଅଟଇ ବସତି
ମୂର୍ଖଙ୍କ ଗୋଷ୍ଠୀରେ ସଦା ଗଲି ଦିନରାତି ।"

ବର୍ତ୍ତମାନ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଆଧୁନିକ କଟକ ଜିଲ୍ଲାର ଝଙ୍କଡ଼ ଗ୍ରାମରେ ସାରଳା ଦାସ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମ ଗ୍ରାମଠାରୁ ଏକ ମାଇଲ ଦୂରରେ କନକପୁର ଗ୍ରାମରେ ସାରଳା ଠାକୁରାଣୀଙ୍କ ମନ୍ଦିର ବିଦ୍ୟମାନ । କବି ଏହି ଦେବୀଙ୍କର ପରମ ଭକ୍ତ ଥିଲେ । ଜନଶ୍ରୁତି ମଧ୍ୟ ଏ ପ୍ରକାର ମତକୁ ସମର୍ଥନ କରେ ।

ପ୍ରସିଦ୍ଧ ଔପନ୍ୟାସିକ ଗୋପୀନାଥ ମହାନ୍ତି ବହୁବର୍ଷ ପୂର୍ବେ ଝଙ୍କାର ମାସିକ ପତ୍ରିକାରେ ଏକାଧିକ ପ୍ରବନ୍ଧ ଲେଖି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ ସାରଳାଙ୍କ ଜନ୍ମସ୍ଥାନ ହେଉଛି ପୁରୀ ଜିଲ୍ଲା କାକଟପୁର ଥାନା ଅନ୍ତର୍ଗତ କଣିଆ ଗ୍ରାମ, ଯାହାକି ପ୍ରାଚୀ ନଦୀ ମୁହାଣର ନିକଟରେ ସମୁଦ୍ର କୂଳରେ ଅବସ୍ଥିତ; କିନ୍ତୁ ଡଃ ବଂଶୀଧର ମହାନ୍ତି ଓ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସେହି ଝଙ୍କାର ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ଏ ପ୍ରକାର ମତର ପ୍ରବଳ ପ୍ରତିବାଦ କରି ପ୍ରମାଣ କଲେ ଯେ ସାରଳା ଦାସଙ୍କ ଘର ପୁରୀ ଜିଲ୍ଲାର କଣିଆ ଗ୍ରାମରେ ନୁହେଁ, କଟକ ଜିଲ୍ଲାର ଝଙ୍କଡ଼ ଗ୍ରାମରେ ।

ଏହି କବିଙ୍କର ପିତୃମାତୃ ପ୍ରଦତ୍ତ ନାମ ବା ଶୈଶବରୁ ଆହୂତ ନାମ ସାରଳା ଦାସ ନୁହେଁ । ତାହାଙ୍କ ନାମ ଥିଲା ସିଦ୍ଧେଶ୍ୱର ପରିଡ଼ା ଏବଂ ସେ ଏହି ନାମରେ ବିଲଙ୍କା ରାମାୟଣ ରଚନା ପର୍ଯ୍ୟନ୍ତ ପରିଚିତ ଥିଲେ । ସେ ସାରଳା ଦେବୀଙ୍କର ଐକାନ୍ତିକ ଭକ୍ତ ଥିବାରୁ ନିଜକୁ ସାରଳାଙ୍କର ଦାସାନୁଦାସ ବୋଲି ସ୍ୱୀକାର କରିଅଛନ୍ତି । ସାରଳା ଦେବୀଙ୍କ ଅନୁକମ୍ପାରୁ ଏପରି ଏକ ବିରାଟ ଗ୍ରନ୍ଥ ରଚନା କରିବା ତାଙ୍କ ପକ୍ଷେ ସମ୍ଭବ ହେଲା ବୋଲି ସେ ପ୍ରକାଶ କରିଛନ୍ତି । ସାରଳା ଚଣ୍ଡୀ ତାଙ୍କୁ ଯାହା କହନ୍ତି ସେ କେବଳ ତାହା ଲେଖନ୍ତି । ସେ ଦେବୀଙ୍କୁ ନିଜ ହୃଦୟ ମନ୍ଦିରରେ ଅଧିଷ୍ଠିତା ବୋଲି ମନେ କରିଅଛନ୍ତି । "ଅତଏବ ସେ ଦେବୀଙ୍କ ପ୍ରତି ଏକାନ୍ତ ଅନ୍ତର୍ମୁଖ ଥିବା ସମୟରେ ଅନୁଭବ କଲେ କି ଦେବୀ ତାଙ୍କୁ ସାରଳା ଦାସ ନାମ ପ୍ରଦାନ କରିଅଛନ୍ତି । ସେ ଏହି ପ୍ରଗାଢ଼ତମ ଭକ୍ତି ଭାବନାରେ ରତଥାଇ ଆତ୍ମାକୁ ଦେବୀ ଦତ୍ତ ନାମରେ ସାଦରେ ନାମିତ କରି ଦେବୀ କୃପା-କଟାକ୍ଷରୁ ସର୍ବଜ୍ଞ ପ୍ରଖ୍ୟାତ ହେଲେ ; ନିଜକୁ ଦେବୀଙ୍କ ପୁତ୍ର ବୋଲି ପ୍ରଚାରିତ କଲେ ।" ❋

ଏ ପ୍ରସଙ୍ଗରେ ଆଦି ପର୍ବରେ ରହିଛି—

"ଶ୍ରୀ ସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଁ ଯେ ସାରୋଳ ଦାସ କବି ।" (ପୃ-୫)

"ଶ୍ରୀଚଣ୍ଡୀ ସାରୋଳା ଚରଣକୁ ମୋର ଆଶ
ଜନ୍ମେ ଜନ୍ମେ ସାରୋଳା ତୁମ୍ଭର ମୁଁ ଦାସ ।" (ପୃ-୧୦୫୭)

ଚଣ୍ଡୀ ପୁରାଣରେ ରହିଛି—

"ଝଙ୍କଡ଼ପୁରବାସିନୀ ଯେ ଶାରଳା ଦେବୀ
ତାହାଙ୍କର କୁମର ମୁଁ ଶ୍ରୀ ଶାରଳା କବି ।" (ପୃ-୫)

କବିଙ୍କ ଅଗ୍ରଜ ପର୍ଶୁରାମ ଘାଟିଆ ଭାବରେ କାର୍ଯ୍ୟ କରୁଥିବାର ଶୁଣାଯାଏ । କିନ୍ତୁ ପ୍ରକୃତରେ ତାଙ୍କର କୌଳିକ ବ୍ୟବସାୟ ଥିଲା କୃଷିକର୍ମ । କାରଣ କବି ଗୋଟିଏ ସ୍ଥାନରେ ପ୍ରକାଶ କରିଛନ୍ତି—'ଗୃହ ଚଷିଣ ଆମ୍ଭେ ନାନା କୃଷି କରି ।" ଡ଼ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ—"ପରିଡ଼ା, ଏ ଉପାଧି ଆଜିକାଲି ଲୋକେ ହୀନ ଦୃଷ୍ଟିରେ ଦେଖନ୍ତି ଏବଂ କେତେକ ପରିଡ଼ା ନିଜକୁ ପରିଜା ଆଖ୍ୟା ଦେଇ ଆତ୍ମସମ୍ମାନ ପ୍ରଦର୍ଶନ କରୁଅଛନ୍ତି । କିନ୍ତୁ ପରିଡ଼ା 'ପରିରାୟ' ଶବ୍ଦର ଅପଭ୍ରଂଶ । ମାଦଳା ପାଞ୍ଜିରେ ପରିରାୟ କଥା ଉଲ୍ଲେଖ ଅଛି ଏବଂ ଏମାନେ କ୍ଷତ୍ରିୟ । କାଳକ୍ରମେ କେତେକ ବୃତ୍ତିଭ୍ରଷ୍ଟ ହୋଇ କୃଷି ବାଣିଜ୍ୟାଦି ଅବଲମ୍ବନ କରିବା ସମ୍ଭବପର ଏବଂ

---

❋ ଶ୍ରୀ ଭାରତ ଦର୍ପଣ—ପୃ : ୬୨

କେତେକ ଶୂଦ୍ର ଜାତିଙ୍କ ମଧ୍ୟ ପରିଡ଼ା ଉପାଧି ଧାରଣ କରିବାର ଦେଖାଯାଏ । ଖୁବ୍ ସମ୍ଭବତଃ ସାରଳା ଦାସ କ୍ଷତ୍ରିୟ ବଂଶ ସମ୍ଭୂତ କୃଷିବୃତ୍ତି ସମ୍ପନ୍ନ ବ୍ୟକ୍ତି ଥିଲେ ।” ( ସାରଳା ସ୍ମରଣିକା — ପୃ: ୨-୩ ) । ଏହି ମତ ମଧ୍ୟ କେତେକାଂଶରେ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହିଙ୍କ ଦ୍ୱାରା ସମର୍ଥିତ । ସେ କହନ୍ତି ଯେ 'ଦାସ' ଶବ୍ଦଟି ତାଙ୍କର କୌଳିକ ଉପାଧି ଥିଲା । ପରିଡ଼ା ବା ପରିଜା ଏକ ରାଜଦତ୍ତ ଉପାଧି । ପରିଜାମାନେ ବୋଧହୁଏ ସୈନ୍ୟ ବିଭାଗରେ 'ଷ୍ଟୋର କିପର' ରହୁଥିଲେ । ତେଣୁ ସିଦ୍ଧେଶ୍ୱର ଦାସଙ୍କ ପରିଡ଼ା ବା ପରିଜା ସଂଜ୍ଞା ଅଯଥାର୍ଥ ନୁହେଁ ।

ସାରଳା ଦାସ ମହାଭାରତ ରଚନା କରିବା ପୂର୍ବରୁ ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ଅବଲମ୍ବନ କରିଥିବା ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଅନୁମାନ କରନ୍ତି । ପୁନଶ୍ଚ ଗୃହସ୍ଥ ଥିଲାବେଳେ ସେ ବିବାହ କରିଥିଲେ କି କରି ନ ଥିଲେ ଏ ବିଷୟରେ ମଧ୍ୟ ସେ ସନ୍ଦିହାନ ହୋଇଛନ୍ତି । କିନ୍ତୁ ସାରଳା ଦାସ ବହୁପୁତ୍ର ପୌତ୍ରଙ୍କ ଗହଣରେ ବିଧିବଦ୍ଧ ଗୃହ-ଜୀବନ ଯାପନ କରୁଥିବାର ସୂଚନା ସେ ନିଜେ ଦ୍ରୋଣ ପର୍ବରେ ପ୍ରଦାନ କରିଛନ୍ତି—

“ବସ୍ତ୍ରାଭରଣ ଜହ୍ନିବାକୁ କିସ ମୋ ଶକତ
ଗୃହୀ ହୋଇ ଚଳୁଅଛୁ ଦେଖ ପୁତ୍ର ପୌତ୍ରୀ ।”

କବିଙ୍କ ଜୀବନୀ ସମ୍ବନ୍ଧୀୟ ଅଧିକ ତଥ୍ୟ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିନାହିଁ । ସେ କେବେ ଏବଂ କେତେ ବୟସରେ ଇହଧାମ ତ୍ୟାଗକଲେ ଇତ୍ୟାଦି ତଥ୍ୟ କିଛି ମିଳୁ ନାହିଁ । ଜନଶ୍ରୁତି ଅନୁଯାୟୀ ତେନ୍ତୁଳିପଦା ଗ୍ରାମ ନିକଟରେ ଥିବା 'ମୁନି ଗୋସାଇଁ ମଠ'ଟି ସାରଳା ଦାସଙ୍କ ଆଶ୍ରମ ଥିଲା ଏବଂ ସେଠାରେ ତାଙ୍କ ଜୀବନର ଶେଷ ଭାଗ ଅତିବାହିତ ହୋଇଥିଲା ।

## ଶୂଦ୍ରମୁନି ଉପାଧିର ତାତ୍ପର୍ଯ୍ୟ

ସିଦ୍ଧେଶ୍ୱର ପରିଡ଼ା ସାରଳା ଦେବୀଙ୍କର ପରମ ଭକ୍ତ ଥିଲେ । ସେ ନିଜକୁ ଦେବୀଙ୍କର ଦାସାନୁଦାସ ବୋଲି ଅନୁଭବ କରୁଥିଲେ । ସାରଳା ଦେବୀଙ୍କର ଦାସ ବା ଭୃତ୍ୟ ଥିବାରୁ ସେ ନିଜକୁ 'ସାରଳା ଦାସ' ନାମରେ ଅଭିହିତ କରିଥିଲେ । କେବଳ ସେତିକି ନୁହେଁ, ପ୍ରସଙ୍ଗକ୍ରମେ ସେ ନିଜକୁ 'ଶୂଦ୍ରମୁନି' ଭାବେ ମଧ୍ୟ ଆଖ୍ୟାତ କରିଅଛନ୍ତି । ଯଥା—

“ଶ୍ରୀସ୍ୱାମାତ ବଲ୍ଲଭ ଚରଣେ ମୋର ଆଶ
ବିଦନ୍ତି ଗ୍ରନ୍ଥିକ ଶୂଦ୍ରମୁନି ସାରୋଳ ଦାସ ।” (ଆଦିପର୍ବ)

“ତୋହର ଆଗ୍ୟାଂୟେ କହିଲି ମୁହିଂ ଶୂଦ୍ରମୁନି ମୋହର ନାମ
ଏ କଥାଜଂ ଅନ୍ତର ମୋତେ ନ କରିଅ ମତିଭ୍ରମ ।” (ଆଦିପର୍ବ)

"ମୃତ୍ୟୁ ମଣ୍ଡଳେ କଳିଯୁଗ ମଧ୍ୟରେ
ଶୂ ଦ୍ରମୁନି ନାମ ବହିବୁ ଶରୀରେ ।" (ଆଦିପର୍ବ)

ଶୂଦ୍ରମୁନି ନାମ ଦେବୀ ପ୍ରଦତ୍ତ ଏବଂ ଦେବୀଙ୍କ ଆଦେଶାନୁଯାୟୀ ସେ ଏ ନାମ ଧାରଣ କରିଥିବା କଥା ସାରଳା ଦାସ ଅନେକ ସ୍ଥାନରେ ପ୍ରକାଶ କରିଅଛନ୍ତି । ପୁନଶ୍ଚ ସାରଳା ଦାସ ଅନ୍ୟତ୍ର ପ୍ରକାଶ କରିଅଛନ୍ତି ଯେ ସେ ମୁନି ଅଂଶରେ ଜନ୍ମଗ୍ରହଣ କରିଥିବାରୁ ଏପରି ଏକ ବିରାଟ ଗ୍ରନ୍ଥ ଲେଖିବାକୁ ସମର୍ଥ ହେଲେ । ତାଙ୍କର ଧାରଣା ବୋଧହୁଏ ଥିଲା ଯେ ମୁନି ଅଂଶରେ ଜନ୍ମଲାଭ କଲେ ପାଣ୍ଡିତ୍ୟ ଏବଂ ଶାସ୍ତ୍ର ଅଧ୍ୟୟନ ଅଭାବରେ ମଧ୍ୟ କବିତ୍ୱର ସ୍ୱତଃ ସ୍ଫୁରଣ ଘଟେ, ଯାହା ତାଙ୍କ କ୍ଷେତ୍ରରେ ଘଟିଛି । ଏଣୁ ସେ ପ୍ରକାଶ କରିଛନ୍ତି—

"ମୁନି ଅଂଶେ ଜାତ ହୋଇଥିଲେ ବାକ୍ୟ ପାରଇ କହିଂ
ନ ପଢ଼ିଣ ବିଦ୍ୟା ଯେ ସାଧନ କଲି ମୁହିଂ ।" (ବନପର୍ବ)

"ଶ୍ରୀକୃଷ୍ଣ ପଦ୍ମପାଦେ ମୋହର ବିନୟେ ଦଇନ
ମୂକବତ ଗତ ଇଚ୍ଛାଇ ସାରୋଳ ଦାସ ମୁନି ।" (ଆଶ୍ରମିକ ପର୍ବ)

"ଶ୍ରୀ ଚଣ୍ଡୀ ଶାରଳା ପାଦେ କରଇ ଦଇନ
ମହାମାୟା ପ୍ରସନ୍ନେ ମୁଁ ହେଲି ଶୂ ଦ୍ରମୁନି ।" (ଚଣ୍ଡୀ ପୁରାଣ—ପୃ : ୨୦)

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ଅନୁରୂପ ମତ ପ୍ରକାଶ କରିବା ସଙ୍ଗେ ସଙ୍ଗେ କହନ୍ତି ଯେ ସାରଳା ଦାସଙ୍କ ଦ୍ୱାରା ବ୍ୟବହୃତ ମୁନି ଶବ୍ଦଟିର ଅର୍ଥ ହେଉଛି କବି ବା ଶାସ୍ତ୍ରକାର । ଏ ମତଟିର ସମୀଚୀନତା ନିଶ୍ଚୟ ରହିଛି । କାରଣ କବି ଗ୍ରନ୍ଥରେ ଅନେକ ସ୍ଥଳରେ "ବଦନ୍ତି ଗ୍ରନ୍ଥିକ ଶୂ ଦ୍ରମୁନି ସାରୋଳ ଦାସ" ବା "ବଦନ୍ତି ଗ୍ରନ୍ଥକାର ଶୂଦ୍ରମୁନି ସାରୋଳା ଦାସ" ବୋଲି ପ୍ରକାଶ କରିଅଛନ୍ତି ।

ଶୂଦ୍ରମୁନି ନାମ ଧାରଣ କରିବା ପଛରେ ଥିବା ସମ୍ଭାବ୍ୟ କାରଣମାନ ସମ୍ପର୍କରେ ବିଭିନ୍ନ ଆଲୋଚକ ଭିନ୍ନ ଭିନ୍ନ ମତ ଦିଅନ୍ତି; ମାତ୍ର ଏହି ନାମ ବା ଉପାଧି ଦେବୀ-ପ୍ରଦତ୍ତ ବୋଲି କବି ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଅତି ସ୍ପଷ୍ଟ ଭାବରେ ପ୍ରଦାନ କରିଥିବା ସ୍ଥଳେ ଏ ସମ୍ପର୍କରେ ଅଧିକ କାରଣ ଅନ୍ୱେଷଣ କରିବାକୁ ଇଚ୍ଛା ହୁଏ ନାହିଁ; କିନ୍ତୁ ଆଲୋଚନାର ଗାମ୍ଭୀର୍ଯ୍ୟ ଓ ପୂର୍ଣ୍ଣତା ଦୃଷ୍ଟିରୁ ଆଉ କେତେଜଣ ଆଲୋଚକଙ୍କ ଏହି ସମ୍ପର୍କୀୟ ମତାମତ ଏଠାରେ ପ୍ରଦାନ କରାଯାଇପାରେ ।

ପଣ୍ଡିତ ବିନାୟକ ମିଶ୍ର ମତ ଦିଅନ୍ତି ଯେ, ସାରଳା ଠାକୁରାଣୀଙ୍କ ସେବକମାନଙ୍କ ମଧ୍ୟରେ 'ମୁନି' ନାମଧେୟ ଏକ ଗୋଷ୍ଠୀ ଥିବାର ଶୁଣାଯାଏ । ତେଣୁ ସାରଳା ଦାସ ଏମାନଙ୍କର ପୂର୍ବ ପୁରୁଷ ହୋଇଥିବେ ବୋଲି ପଣ୍ଡିତ ମିଶ୍ର ଗ୍ରହଣ

କରି ନେଇଅଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଭିନ୍ନ ମତପୋଷଣ କରି କହନ୍ତି ଯେ ମୂଳ ମହାଭାରତ ଗ୍ରନ୍ଥର ରଚୟିତା ବ୍ୟାସଦେବ ବ୍ରାହ୍ମଣତ୍ୱରୁ 'ବ୍ରହ୍ମମୁନି' ଥିବାରୁ ତାହାଙ୍କୁ ଅନୁକରଣ କରି ସାରଳା ଦାସ ଦେବୀଙ୍କ ପ୍ରସାଦରୁ ଓଡ଼ିଆ ମହାଭାରତର ରଚୟିତା ହୋଇଥିବା ହେତୁ 'ଶୂଦ୍ରମୁନି' ନାମ ଉପାଧି ରୂପେ ପରିଗ୍ରହ କରିଥିଲେ । ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ମତରେ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଅଦ୍ୟାବଧି ଅବ୍ରାହ୍ମଣମାନଙ୍କ ଦ୍ୱାରା ଦେବୀ ପୂଜାର ଏକ ପରମ୍ପରା ରହିଆସିଛି । ଶୂଦ୍ର ସମାଜରେ ଏହି ଦେବୀ ପୂଜକ ଗୋଷ୍ଠୀକୁ 'ମୁନି' କୁହାଯାଉଥିଲା । ସାରଳା ଦାସ ସ୍ୱୟଂ ଶୂଦ୍ର ଥିଲେ ଏବଂ ଦେବୀଙ୍କର ପୂଜକ ହୋଇଥିବାରୁ 'ମୁନି' ବୋଲାଉଥିଲେ । ଏହି ଉଭୟର ସମିଶ୍ରଣରେ ହିଁ ତାଙ୍କର 'ଶୂଦ୍ରମୁନି' ଉପାଧି । ଏହି ମତ ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

'ଶୂଦ୍ରମୁନି' ଆଖ୍ୟା ଧାରଣ ସମ୍ପର୍କରେ ପ୍ରଚ୍ଛନ୍ନ ଥିବା ତାତ୍ପର୍ଯ୍ୟର ସମ୍ୟକ୍ ଆଲୋଚନା ସ୍ୱୟଂ କବି ନିଜ ଗ୍ରନ୍ଥରେ ପରିଷ୍କାର ଓ ପ୍ରାଞ୍ଜଳ ଭାବରେ କରିଅଛନ୍ତି । ପୁନଶ୍ଚ କେତେକ ବିଶିଷ୍ଟ ଆଲୋଚକଙ୍କ ଏ ସମ୍ପର୍କୀୟ ମତ ମଧ୍ୟ ଆଲୋଚିତ ହେଲା । ସୁତରାଂ ଅଧିକ ମତାମତର ବିଶ୍ଳେଷଣ ଫଳରେ ଆଲୋଚନାର କଳେବର ଅଯଥା ବୃଦ୍ଧିପ୍ରାପ୍ତ ହେବା ଆଶଙ୍କା ଥିବାରୁ ଏହି ଆଲୋଚନାକୁ ଏହିଠାରେ ସମାପ୍ତ କରାଯାଇପାରେ ।

## ଜାତିସ୍ମରତ୍ୱ

ଭାଗ୍ୟବାଦ ଭାରତୀୟ ଧର୍ମ ସଂସ୍କୃତିର ଏକ ପ୍ରଧାନ ବୈଶିଷ୍ଟ୍ୟ । କବି ସାରଳା ଦାସ ଧର୍ମପ୍ରାଣ ଥିବା ଏବଂ ଦେବୀକୃପା ବଳରୁ କବିତ୍ୱର ଅଧିକାରୀ ହୋଇଥିବା କଥା ତାଙ୍କ ଗ୍ରନ୍ଥମାନଙ୍କରେ ବିଭିନ୍ନ ସ୍ଥଳରେ ସୂଚିତ ହୋଇଅଛି । ମହାଭାରତରେ ବର୍ଣ୍ଣିତ ବିଭିନ୍ନ ଚରିତ ବର୍ଣ୍ଣନାବେଳେ ସେ ଭାଗ୍ୟବାଦର ବର୍ଣ୍ଣନା ଅନେକତ ଦେବାକୁ ଭୁଲି ନାହାନ୍ତି । ଯେପରି—

"ଗାନ୍ଧାରୀ ବୋଇଲେ ଯୁଗତ ସ୍ନେହ କଥା
କପାଳର ଲିଖିତ କି ହୋଇବ ଅନ୍ୟଥା ।" (ଆଦିପର୍ବ ପୃ - ୧୩୭)

"ଯାହା ଅର୍ଜି ମାତା ତାହା ସିନା ଭୁଞ୍ଜି
ସମ୍ପଦ ବିପଦ ମାଗୋ ସଂସାରର ମଝି ।" (ଆଦିପର୍ବ ପୃ ୮୯୫)

କର୍ମହେତୁକ ଜନ୍ମାନ୍ତରବାଦ ହିନ୍ଦୁ ଦର୍ଶନ ଦ୍ୱାରା ଅନୁମୋଦିତ । ପୂର୍ବ ଜନ୍ମର କର୍ମଫଳ ପରଜନ୍ମରେ ଭୋଗ କରିବା କଥା ଏ ଦେଶର ଧର୍ମଶାସ୍ତ୍ର, ଯୁଗେ ଯୁଗେ ସ୍ୱୀକାର କରିଆସିଛି । ସାରଳା ଦାସ ଏହି ପରମ୍ପରାର ବଶବର୍ତ୍ତୀ ହୋଇ ନିଜର ମନୁଷ୍ୟ ଜନ୍ମଗ୍ରହଣ କରି ଶାସ୍ତ୍ର ରଚନାରେ ବ୍ରତୀ ହେବା ବିଷୟରେ

କାଲ୍ପନିକ କାହାଣୀମାନ ନିଜ ଗ୍ରନ୍ଥମାନଙ୍କରେ ପ୍ରଦାନ କରିଅଛନ୍ତି । ଏହାଛଡ଼ା ଆଧ୍ୟାତ୍ମିକ ଦୃଷ୍ଟିରୁ ସାରଳାଙ୍କ ସମସ୍ତ ଥିଲା ଯଥାର୍ଥରେ ଏକ ସନ୍ଧିକ୍ଷଣ । ତତ୍କାଳୀନ ସମାଜରେ ଅବକ୍ଷୟୀ ବୌଦ୍ଧତନ୍ତ୍ରର ପ୍ରଭାବ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇ ନ ଥିଲା । ଏଣୁ ସାରଳାଙ୍କ ଧର୍ମଧାରଣା ଅନେକଟା ଯେ ଏହି ପ୍ରଭାବରେ ପ୍ରଭାବିତ ହୋଇଥିଲା, ଏହା ଅନୁମାନ କରିବା ଅମୂଳକ ହେବ ନାହିଁ । ମହାଯାନ ପରମ୍ପରାରେ ସ୍ୱୟଂ ବୁଦ୍ଧଦେବ ତ ଜଣେ ଜାତିସ୍ମର ଏବଂ ବୌଦ୍ଧ ଜାତକମାଳାଗୁଡ଼ିକରେ ବର୍ଣ୍ଣିତ ଗଳ୍ପଗୁଡ଼ିକ ଏହାର ପ୍ରମାଣ । ସାରଳା ଦାସ ଚଣ୍ଡୀପୁରାଣରେ ନିଜ ଜାତିସ୍ମରତାର ଏକ ସ୍ୱତନ୍ତ୍ର ବର୍ଣ୍ଣନା ଏହିପରି ଦେଇଛନ୍ତି—

"ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ
ସେ ଜନ୍ମରେ ବିଷ୍ଣୁଲୀଳା କଲି ପରକାଶ ।

× × ×

ଦ୍ୱିତୀୟ ଜନ୍ମରେ ମହାକାଳୀ ନାମେ କବି
ପଙ୍କଜବଦନୀ ସୁପ୍ରସନ୍ନା ବାକ୍ୟଦେବୀ
ତୃତୀୟ ଜନ୍ମରେ ହେଲି ଶ୍ରୀ ଶାରଳା ଦାସ
ଶ୍ରୀବିଷ୍ଣୁ-ଲୀଳାକୁ ମୁଖେ କରିଲି ଅଭ୍ୟାସ ।" (ଚଣ୍ଡୀପୁରାଣ-୩୫)

ଏଥିରୁ ଜଣାଯାଏ ଯେ କବି ସିଦ୍ଧ ଶରୀରରେ ବ୍ରହ୍ମାଙ୍କ ପୁତ୍ର ମନୁ ଋଷି ଥିଲେ । ବିଷ୍ଣୁଙ୍କ ଅଭିଶାପ ଫଳରେ ସେ ପ୍ରଥମ ଜନ୍ମରେ କାଳିଦାସ, ଦ୍ୱିତୀୟ ଜନ୍ମରେ ମହାକାଳୀ ଓ ତୃତୀୟ ଜନ୍ମରେ ସାରଳାଦାସ ଭାବରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରି ମୋକ୍ଷଲାଭ କଲେ। ବିଷ୍ଣୁଲୀଳା ଗାୟନ କଲେ ।

ମହାଭାରତର ସ୍ୱର୍ଗାରୋହଣ ପର୍ବରେ ମଧ୍ୟ କବି ନିଜର ଜାତିସ୍ମରତ୍ୱ ସମ୍ପର୍କୀୟ ସୂଚନା ଦେଇ ଲେଖିଛନ୍ତି—

"କପିଳାସ ଦ୍ୱାରପାଳ ନାମ ମୋ ନନ୍ଦିକେଶ୍ୱର
ପାର୍ବତୀ ଦୁର୍ଗା ରୂପେ ବଧିଲେ ମହିଷାସୁର ।
ଉଲଗ୍ନ ହୋଇଣ ସେ ବଧ କଲେ ତାକୁ
ସିଂହ ବାହନେ ବଜେ କରି ନେଇଥିଲେ ମୁକୁ ।

× × ×

କୋପକରି ଗଜାନନ ଦେଲେକ ମୋତେ ଶାପ
ସେ ଦୋଷରୁ ହୋଇଲି ମାନୁଷ ସ୍ୱରୂପ ।

ପ୍ରଥମ ଜନ୍ମରେ ମୁଁ ହୋଇଲି କାଳିଦାସ
ମହାକାଳିକା ଦ୍ୱିତୀୟ ନାମେ ଅଂଶ ।
ତୃତୀୟ ଜନ୍ମରେ ମୁଁ ସାରଳା ଦାସ କବି
ଆର ଜନ୍ମରେ ପୁଣି ମୃତ୍ୟୁ ମଣ୍ଡଳେ ଜନ୍ମିବି ।
ଅହୋ ଜନ୍ମେ ଜନ୍ମେ ପନ୍ଦର ଲକ୍ଷ ବିଷ୍ଣୁଲୀଳାରେ ଭକତ
ଚାରି ଜନ୍ମେ ହୋଇବ ଯେ ଷାଠିଏ ଲକ୍ଷ ଗ୍ରନ୍ଥ ।
ଷାଠିଏ ଲକ୍ଷ ଗ୍ରନ୍ଥ କହିବି ମର୍ତ୍ତ୍ୟର ଭୁବନେ
ତେବେ ସେ ବସିବି ଯାଇ ଶିବଦ୍ୱାର ସ୍ଥାନେ ।" (ପୃ ୨୧-୨୨)

ପୂର୍ବ ଜନ୍ମରେ ସେ ସିଦ୍ଧ ଦେହରେ ଶିବଙ୍କ ଦ୍ୱାରପାଳ ନନ୍ଦିକେଶ୍ୱର ଥିଲେ । ଦୈବବଶତଃ ମନୁଷ୍ୟ ଯୋନିରେ କ୍ରମଶଃ ଚାରିଗୋଟି ଜନ୍ମରେ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହେବା ପାଇଁ ଗଜାନନଙ୍କଠାରୁ ଶାପ ପାଇ ପ୍ରଥମ ଜନ୍ମରେ କାଳିଦାସ, ଦ୍ୱିତୀୟ ଜନ୍ମରେ ମହାକାଳିକା ବିଜୟ ଓ ତୃତୀୟ ଜନ୍ମରେ ସାରଳାଦାସ ନାମ ବହନ କରି କବି ଶକ୍ତିରେ ସମ୍ପନ୍ନ ହୋଇଥିଲେ । ପୁନଶ୍ଚ ଏ ଜନ୍ମ ପରେ ସେ ଆଉଥରେ ଜନ୍ମ ଗ୍ରହଣ କରିବେ । ପ୍ରତ୍ୟେକ ଜନ୍ମରେ ପନ୍ଦର ଲକ୍ଷ ପରିମାଣରେ ସମୁଦାୟ ଷାଠିଏ ଲକ୍ଷ ପଦ ଲେଖିସାରିବା ପରେ ପୁନଶ୍ଚ ମର୍ତ୍ତ୍ୟମଣ୍ଡଳ ତ୍ୟାଗ କରି କପିଳାସ ଗମନ କରିବେ ଓ ସେଠାରେ ଶିବଙ୍କ ଦ୍ୱାରପାଳ କାର୍ଯ୍ୟ ତୁଲାଇବେ ।

ବର୍ତ୍ତମାନ ସାରଳାଙ୍କ ବର୍ଣ୍ଣିତ ଜାତିସ୍ମରତ୍ୱର ସତ୍ୟାସତ୍ୟ ଉପରେ ଆଲୋଚନା କରାଯାଇପାରେ । ପ୍ରଥମ ଜନ୍ମରେ ସେ କାଳିଦାସ ରୂପେ ଜନ୍ମ ନେଇ 'ବିଷ୍ଣୁଲୀଳା କଲି ପରକାଶ' ବୋଲି ଲେଖିଅଛନ୍ତି । କାଳିଦାସ ଅବଶ୍ୟ 'ରଘୁବଂଶ'ରେ ବିଷ୍ଣୁଲୀଳା ବର୍ଣ୍ଣନ କରିଅଛନ୍ତି । ପୁନଶ୍ଚ ସେ ରଘୁବଂଶ ଭିନ୍ନ ଅନ୍ୟ କାବ୍ୟ ମଧ୍ୟ ରଚନା କରିଥିଲେ । ମହାକାଳୀ ବା ମହାକାଳିକା କବି ଭାବରେ ସେ ଦ୍ୱିତୀୟ ଥର ଜନ୍ମ ଗ୍ରହଣ କରିଥିଲେ । ଏହିପରି ନାମଧେୟ କେହି କବି ଓଡ଼ିଆ ବା ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ଥିବାର ଜଣାଯାଏ ନାହିଁ । ସଂସ୍କୃତ ସାହିତ୍ୟରେ ଜଣେ କବି ଅବଶ୍ୟ ଥିଲେ, ଯାହାଙ୍କର ନାମ ମହାକାଳ ; କିନ୍ତୁ ସେ କାଳିଦାସଙ୍କ ପୂର୍ବବର୍ତ୍ତୀ ଥିବାର ଜଣାଯାଏ । ଯଦି ତାହାଙ୍କୁ ସାରଳା ନିର୍ଦ୍ଦେଶ କରୁଥାନ୍ତି, ତେବେ ସମୟ କ୍ରମରେ ତ୍ରୁଟି ଆସିଯିବା ସ୍ୱାଭାବିକ । ଏଣୁ ସାରଳାଙ୍କ ପ୍ରଦତ୍ତ ବିବରଣୀର ସତ୍ୟତା ସମ୍ବନ୍ଧରେ ମଧ୍ୟ ସ୍ୱତଃ ସନ୍ଦେହଜାତ ହୁଏ । ପୁନଶ୍ଚ ମହାଭାରତ ଓ ଚଣ୍ଡୀପୁରାଣରେ ପ୍ରଦତ୍ତ ଏ ସମ୍ପର୍କୀୟ ବିବରଣୀରେ ପ୍ରଭେଦ ଦେଖାଯାଏ । ଚଣ୍ଡୀପୁରାଣରେ ମନୁ ମହର୍ଷି ରୂପରେ ଏବଂ ମହାଭାରତରେ ଶିବଙ୍କ ଦ୍ୱାରପାଳ ନନ୍ଦିକେଶ୍ୱର ରୂପରେ ସିଦ୍ଧ ଶରୀରରେ ଥିବାର ଉଲ୍ଲେଖ ରହିଥିବାରୁ ଏହାର ସତ୍ୟତା ସମ୍ବନ୍ଧରେ ମଧ୍ୟ ସନ୍ଦେହ ଜନ୍ମେ । ମନେହୁଏ ଏହି ସବୁ ବୃତ୍ତାନ୍ତ ସମ୍ପୂର୍ଣ୍ଣ ଭକ୍ତିକ ମିଥ୍ୟା ବ୍ୟଞ୍ଜିତ ଅନ୍ୟ କିଛି

ନୁହେଁ । କାରଣ ସତ୍ୟର ରୂପ ସର୍ବଦା ଏକ ଓ ଅଭିନ୍ନ; ମାତ୍ର ମିଥ୍ୟା ସମୟକ୍ରମେ ବିଭିନ୍ନ ରୂପ ଗ୍ରହଣ କରେ ।

ଏହିପରି ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରିବାରେ ସାରଳା ଦାସ ଏକମାତ୍ର ଦୃଷ୍ଟାନ୍ତ ନୁହନ୍ତି; ତାଙ୍କ ପରବର୍ତ୍ତୀ କବିମାନଙ୍କ ମଧ୍ୟରେ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ପୀତାମ୍ବର ଦାସ ପ୍ରମୁଖ କବିମାନେ ମଧ୍ୟ ଏହିପରି ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ସେ ଯାହାହେଉ, ଏ ପ୍ରକାର ବିବରଣୀକୁ ଏତେ ଗୁରୁତ୍ୱ ଦେବାର ଆବଶ୍ୟକତା ଥିଲା ଭଳି ମନେହୁଏ ନାହିଁ ।

## କବିତ୍ୱ ସ୍ଫୂର୍ତ୍ତି

ଭାରତ ହେଉଛି ଦେବଭୂମି । ଏଠାରେ ଯେ କୌଣସି କାର୍ଯ୍ୟ ପଛରେ ଦେବତା ବା ଦେବୀଙ୍କ ଅନୁକମ୍ପା ନିହିତ ଥିବାର ବିଶ୍ୱାସ କରାଯାଏ । ବହୁ ପୂର୍ବକାଳରୁ କବିତ୍ୱ ପଛରେ ମଧ୍ୟ ଆଧ୍ୟାତ୍ମିକ ଭିତ୍ତି ଥିବାର ଲକ୍ଷ୍ୟ କରାଯାଏ । ବିଭିନ୍ନ କବିଙ୍କ କବିତ୍ୱ ସ୍ଫୂର୍ତ୍ତି ସମ୍ବନ୍ଧରେ ଭିନ୍ନ ଭିନ୍ନ କାହାଣୀ ଶୁଣିବାକୁ ମିଳେ, ଯାହାର ଆଧ୍ୟାତ୍ମିକ ଦୃଷ୍ଟିରୁ ମୂଲ୍ୟ ରହିଅଛି । ମହାକବି କାଳିଦାସଙ୍କ ସମ୍ପର୍କରେ ଏହିପରି କାହାଣୀ ଏ ଦେଶରେ ପ୍ରଚଳିତ ଥିବାର ଦେଖାଯାଏ । ଆମର ଆଲୋଚ୍ୟ କବି ସାରଳା ଦାସଙ୍କ ସମ୍ବନ୍ଧରେ ମଧ୍ୟ ଏହିପରି କେତେକ କାହାଣୀ ଆମ ଦେଶରେ ପ୍ରଚଳିତ । ଏହାର ପ୍ରଚାରକ ହେଲେ କବି ନିଜେ ।

ନିଜର କବିତ୍ୱ ପ୍ରାପ୍ତି ବିଷୟରେ କବି ସଭାପର୍ବରେ କହିଅଛନ୍ତି, "ପ୍ରସନ୍ନେ ସ୍ୱରୂପେ ମୁହିଁ ପାଇଲି ସିଦ୍ଧ ପୋଥି ।" ଅର୍ଥାତ୍ ସେ ଦେବୀଙ୍କ କୃପାରୁ ଏକ ସିଦ୍ଧି ପୁସ୍ତକ ପ୍ରାପ୍ତ ହୋଇଥିଲେ । ଏ ସିଦ୍ଧ ପୋଥି କୌଣସି ଦେବୀମାହାତ୍ମ୍ୟ ବର୍ଣ୍ଣିତ ପ୍ରାକୃତ ବା ଅପଭ୍ରଂଶ ପୁରାଣ ବା କୌଣସି ଶାକ୍ତ ତନ୍ତ୍ର ଗ୍ରନ୍ଥ ହୋଇପାରେ, ଯାହା ଆଶ୍ରୟ କରି କବି ସିଦ୍ଧି ଲାଭ କରିଥିଲେ ଓ ମହାଭାରତ ଭଳି ବିରାଟ ପୁରାଣ ଏକାକୀ ରଚନା କରିପାରିଥିଲେ; ଅଥବା କବି କୌଣସି ସାଧନାର ଗ୍ରନ୍ଥ ପାଇଥିଲେ ଓ ତାକୁ ସାଧନ କରି ସିଦ୍ଧି ହୋଇପାରିଥିଲେ—ଏପରି ଭାବିବା ମଧ୍ୟ ଅସମ୍ଭବ ନୁହେଁ । ସେ ଯାହାହେଉ, ଖୁବ୍ ସମ୍ଭବ ଯେ ସେ ଜଣେ ସିଦ୍ଧ ସାଧକ ଥିଲେ ଏବଂ ସାଧନା ଫଳରେ ଅଦ୍ଭୁତ କବିତ୍ୱର ଅଧିକାରୀ ହୋଇ ପାରିଥିଲେ ।

ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ 'ଶ୍ରୀ ଭାରତ ଦର୍ପଣ'ରେ ସାରଳାଙ୍କ କବିତ୍ୱପ୍ରାପ୍ତି ସମ୍ବନ୍ଧୀୟ ଏକ କିମ୍ବଦନ୍ତୀ ସ୍ଥାନ ପାଇଅଛି । ଜଗଦମ୍ବା ଶ୍ରୀ ସାରଳା ଦେବୀଙ୍କ ପୀଠସ୍ଥାନରୁ ଅନତିଦୂର ଜନପଦରେ ବାସ କରୁଥିବା ଭାରତ ଚରିତ-ଗଳ୍ପ ନିପୁଣ' କୌଣସି ଜଣେ ଶୂଦ୍ର ସମସ୍ତ ସମୟରେ ନିଜ ସନ୍ତାନମାନଙ୍କ ସମ୍ମୁଖରେ ମହାଭାରତ ବିଷୟରେ ଗଳ୍ପ କରନ୍ତି । ପୁଣି ଅନ୍ୟ ସମୟରେ ପୁତ୍ରମାନଙ୍କୁ ପରୀକ୍ଷା କରିବା ନିମିତ୍ତ

ପ୍ରଶ୍ନ ପଚାରନ୍ତି । ସନ୍ତାନଗଣ ପୂର୍ବ କଥାମାନ ମୁଖସ୍ଥ କରିଥିବା ହେତୁ କିଛି କିଛି କହି ପାରନ୍ତି ; ମାତ୍ର ସିଦ୍ଧେଶ୍ୱର ନାମଧେୟ କନିଷ୍ଠ ପୁତ୍ର ସ୍ମରଣ ଶକ୍ତି ଅଭାବରୁ କିଛି କହି ପାରନ୍ତି ନାହିଁ । ତେଣୁ ପିତା ଅନ୍ୟ ସହୋଦରମାନଙ୍କ ସମକ୍ଷରେ ତାଙ୍କୁ କଠୋରତର ଭର୍ତ୍ସନା କରନ୍ତି । ଭର୍ତ୍ସିତ ସିଦ୍ଧେଶ୍ୱର ଲଜ୍ଜା ଓ ଅପମାନ ସହ୍ୟ କରି ନ ପାରି ଜଗଦମ୍ବା ସାରଳା ଦେବୀଙ୍କ ନିକଟରେ ଅଧା ପଡ଼ନ୍ତି ଏବଂ ଦେବୀ ପ୍ରସନ୍ନ ହେବାରୁ ସେ ତାଙ୍କୁ ମହାଭାରତ ରଚନା କରି ପାରିବା ଭଳି ଜ୍ଞାନର ଅଧିକାରୀ ହେବା ନିମିତ୍ତ ପ୍ରାର୍ଥନା କରନ୍ତି । ଦେବୀଙ୍କ ଆଜ୍ଞାନୁଯାୟୀ ସେ କଳ୍ପବଟ ମୂଳରେ ବସି ଯାହା ତାଙ୍କୁ ଶୁଭେ, ତାହା ଲେଖନ୍ତି । ଏହିପରି ମହାଭାରତ ଭଳି ବିରାଟ ଗ୍ରନ୍ଥର ସୃଷ୍ଟି ହୁଏ ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥ କବିଙ୍କ ସମ୍ପର୍କରେ ସ୍ୱରଚିତ 'ସାରଳା ଚରିତ'ରେ ଅନ୍ୟ ଏକ କିମ୍ବଦନ୍ତୀ ପ୍ରଦାନ କରିଅଛନ୍ତି । କିମ୍ବଦନ୍ତୀଟି ଏହିପରି - "ସାରଳା ଦାସ ପୂର୍ବପରି ଦିନେ ଗୋଟିଏ ବିଲରେ ହଳ କରୁଥିଲେ । ହଳ କର୍ମରେ ଶ୍ରାନ୍ତି ବୋଧ ହେଲବେଳେ ନିଜର ଏବଂ ଗୋରୁ ଦୁଇଟିର ଉତ୍ସାହ ନିମିତ୍ତ ପ୍ରିୟତମ ଚଉତିଶା ଗୀତ ଉଚ୍ଚସ୍ୱରରେ ଗାଇବାକୁ ଲାଗିଲେ । ସେଦିନ ଅତ୍ୟଧିକ ଶ୍ରାନ୍ତ ବଶତଃ ଗୀତ ବୋଲୁ ବୋଲୁ ମଧ୍ୟେ ମଧ୍ୟେ ପଦେ ପଦେ ମନେ ପଡ଼ିଲା ନାହିଁ । ସେତେବେଳେ ସେ ଅଗତ୍ୟା ଗୀତ ରସରୁ ବଞ୍ଚିତ ହୋଇ ଇଷ୍ଟଦେବୀଙ୍କଠାରେ ଧ୍ୟାନ ରଖିଲେ । କଥିତ ଅଛି, ଏହି ଗୀତ ବନ୍ଦ କରନ୍ତେ, ହଠାତ୍ ଏକ ନାରୀ ମୂର୍ତ୍ତି ସେଠାରେ ଆବିର୍ଭୂତା ହୋଇ ତାହାଙ୍କୁ ସମ୍ବୋଧନ କରି କହିଲେ—'ଗୀତ ବନ୍ଦ କଲୁ କାହିଁକି ? ବୋଲ ବୋଲ, ଆସିଯିବ ଯେ । ତୋ ଗୀତ ମୋତେ ବଡ଼ ଭଲ ଲାଗେ । ମୋର ଇଚ୍ଛା, ତୁ ଯେପରି ମହାଭାରତ ରଚନା କରିବୁ ।' ଏହା କହି ସେ ମୂର୍ତ୍ତି ଅନ୍ତର୍ହିତ ହେଲେ । ଦାସେ ବିସ୍ମିତ ହୋଇ ପୁନର୍ବାର ଗୀତ ଆରମ୍ଭ କରି ସଫଳକାମ ହେଲେ ।"

ପୁନଶ୍ଚ ଏ ସମ୍ପର୍କୀୟ ଏକ ମନୋରମ କିମ୍ବଦନ୍ତୀ ଗଞ୍ଜାମ ଅଞ୍ଚଳରୁ ମିଳିଥିବା ପାଣ୍ଡୁଲିପିରେ ଦେଖିବାକୁ ମିଳେ; ମାତ୍ର ଏହାଠାରୁ ପ୍ରାଚୀନତର ପୋଥିରେ ଏହି ବିଷୟ ନ ଥିବାରୁ ଏହା କୌଣସି ସାହିତ୍ୟ ଚୋରର ପ୍ରକ୍ଷେପ ବୋଲି ଅନୁମାନ କରାଯାଏ । କିମ୍ବଦନ୍ତୀଟି ହେଲା—ଏକଦା ସିଦ୍ଧେଶ୍ୱର ପରିଡ଼ା କୌଳିକ ବୃତ୍ତି କୃଷି କାର୍ଯ୍ୟରତ ଥିବା ସମୟରେ ଶ୍ରମାପନୋଦନ ନିମନ୍ତେ ଏଣୁ ତେଣୁ ଗୀତ ଗାଉଥିବା ସମୟରେ ନିଜେ ସାରଳା ଦେବୀ ଅତ୍ୟନ୍ତ ବୁଢ଼ୀ ବେଶରେ ଯାଇ ତାଙ୍କ ନିକଟରେ ଉପସ୍ଥିତ ହୋଇଅଛନ୍ତି । ଅତ୍ୟଧିକ ବାର୍ଦ୍ଧକ୍ୟ ହେତୁ ସେ ଭଲଭାବରେ ଚାଲି ନ ପାରି ଭୂମିରେ ପଡ଼ିଯାଇଅଛନ୍ତି । ଏହା ଦେଖି ସିଦ୍ଧେଶ୍ୱର ପରିଡ଼ା ଧାଇଁ ଆସି ବୁଢ଼ୀଙ୍କୁ ତଳୁ ଉଠାଇ ଦେଇଅଛନ୍ତି । କିଛି ସମୟ ବାର୍ତ୍ତାଳାପ ପରେ ବୁଢ଼ୀ କବିଙ୍କୁ ନଦୀ

ପାର କରାଇ ଦେବା ନିମନ୍ତେ କହୁଅଛନ୍ତି । କବି ଦୟାପରବଶ ହୋଇ ବୃଦ୍ଧାଙ୍କୁ କାନ୍ଧରେ ଧରି ଭରା ନଦୀରେ ପ୍ରବେଶ କରିଅଛନ୍ତି । ଜଳର ଗଭୀରତା କ୍ରମଶଃ ବୃଦ୍ଧିପ୍ରାପ୍ତ ହେବାରୁ ସେ ବୃଦ୍ଧାଙ୍କୁ ପରେ କାନ୍ଧରେ ଏବଂ ସର୍ବଶେଷରେ ମୁଣ୍ଡରେ ବସାଇ ନଦୀପାର କରାଇ ଦେଇଅଛନ୍ତି । କବିଙ୍କର ପରୋପକାରିତା ଓ ଦୟାଳୁତାରେ ବୃଦ୍ଧା (ଦେବୀ) ମୁଗ୍ଧା ହୋଇ ତାଙ୍କୁ ଗୀତ ପଦେ ଗାଇବାକୁ କହୁଅଛନ୍ତି । କବି ନିଜର ମୂର୍ଖତା ଦର୍ଶାଇବାରୁ ଦେବୀ ତାଙ୍କୁ ପଣ୍ଡିତ ଓ ବିଦ୍ୱାନ ହେବା ନିମନ୍ତେ ବର ଦେଇଅଛନ୍ତି ଏବଂ ମହାଭାରତ ଲେଖିବାକୁ ମଧ୍ୟ ଆଦେଶ ଦେଇଅଛନ୍ତି ।

ସାରଳା ମହାଭାରତର ଆଦି ପର୍ବର ପରିଶିଷ୍ଟରେ କବି ନିଜର କବିତ୍ୱ ସ୍ଫୂର୍ତ୍ତି ସମ୍ବନ୍ଧରେ କହୁଅଛନ୍ତି ଯେ, ଏକଦା ମଧ୍ୟାହ୍ନରେ ସେ ନିଜେ ଟେଣ୍ଡା ସାହାଯ୍ୟରେ ଆଖୁ କିଆରୀକୁ ପାଣି ଯୋଗାଉଥାନ୍ତି । ଶ୍ରମ ଅପୋନଦନ ନିମିତ୍ତ ସେ ମଝିରେ ମଝିରେ ଗୀତ ଗାଉଥାଆନ୍ତି । କବି ଲେଖିଛନ୍ତି—

"ମଧ୍ୟ ସ୍ଥାନରେ ପାଣି ଟେଣ୍ଡୁଥାଇଂ ମୁହିଂ
ଭଣ୍ଡ ବିଭଣ୍ଡ କରି ଗୀତ ମୁଂ ପୂକାରଇ ।" (ପୃ ୧୦୪୧)

ସାରଳା ଠାକୁରାଣୀ ସେହି ସମୟରେ ମଧ୍ୟାହ୍ନ ଭ୍ରମଣରେ ବାହାରିଥାଆନ୍ତି । ସାରଳା ଦାସଙ୍କ ଗୀତ ବନ୍ଦ ହୋଇଯିବାର ଜାଣିପାରି ସେ ବୃଦ୍ଧାବେଶ ଧାରଣ କରି ସେଠାରେ ପହଞ୍ଚିଛନ୍ତି ଓ ଗୀତ ବନ୍ଦ କରିବାର କାରଣ ପଚାରିଛନ୍ତି । ସାରଳା ଦାସ କହୁଛନ୍ତି, "ତମ ପରି ଜଣେ ବୃଦ୍ଧା ବାଟରେ ଯାଉଥିବା ସମୟରେ ମୁଁ କପରି ଭଣ୍ଡ ବିଭଣ୍ଡ ଗୀତ ଗାଇବି ? ଯଦି ତମେ ମୋ ମୁହଁରୁ ଗୀତ ଶୁଣିବାକୁ ଚାହଁ, ତେବେ କି ଗୀତ ମୁଁ ଗାଇବି ମୋତେ କୁହ ।" ଏହା ଶୁଣି ଠାକୁରାଣୀ ତାଙ୍କୁ ବିଷ୍ଣୁ ଚରିତ ବଖାଣିବା ନିମନ୍ତେ କହୁଅଛନ୍ତି । ସେ ଗୀତ ଆରମ୍ଭ କରିବା ମାତ୍ରେ ତାଙ୍କ ମୁଖରୁ ବିଷ୍ଣୁ ଚରିତର ସ୍ଫୁରଣ ଘଟିଛି । ଇତ୍ୟବସରରେ ଦେବୀ ସେଠାରୁ ଅନ୍ତର୍ହିତ ହୋଇ ଯାଇଅଛନ୍ତି । କେଉଁ ଦେବୀଙ୍କ କରୁଣାରୁ ଏପରି ସମ୍ଭବ ହେଲା, ସେ ତାହା ଜାଣିପାରି ନାହାନ୍ତି ।

ସେ ଘରକୁ ଫେରିଅଛନ୍ତି । ଏ ବିଷୟରେ କାହାକୁ କିଛି ନ କହି ସେ ଉପବାସରେ ରହିଛନ୍ତି । ରାତିରେ ଠାକୁରାଣୀ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇଅଛନ୍ତି । ସେ ନିଜେ ସାରଳା ଚଣ୍ଡୀ ବୋଲି ନିଜର ପରିଚୟ ଦେଇ ବିଷ୍ଣୁ-ଚରିତ ବଖାଣିବା ନିମନ୍ତେ ତାଙ୍କୁ ଉପଦେଶ ଦେଇଅଛନ୍ତି । ସେ ନିଜର ମୂର୍ଖତା ଦର୍ଶାଇବାରୁ ଦେବୀ କହିଛନ୍ତି—

"ବୋଇଲେ ମନେ ତୁ ନ ଭାଳ ହୋ କିଛି
ଲେଖନ ପଦ ମୁଂ ତୋତେ ଯାଚ ଦେଉଅଛି ।

ତୋହୋର କଣ୍ଠରେ ମୁଂ ନିରେଂ ବସିଥିବ
ଗଲ୍ପ ନ ଗଲ୍ପ ପଦ ହୃଦରେ କହିଦେବ ।"
( ଆଦି ପର୍ବ –ପୃ ୧୦୪୫)

କବିଙ୍କ ନିଦ୍ରାଭଙ୍ଗ ହୋଇଛି ଓ ସେ ଶଯ୍ୟା ତ୍ୟାଗ କରିଛନ୍ତି । ଏକ ପାର୍ଶ୍ୱରେ ଲେଖନ, ପତ୍ର ରହିଥିବାର ଦେଖି ସେ ଉଲ୍ଲସିତ ହୋଇ ଉଠିଛନ୍ତି । ତତ୍‌କ୍ଷଣାତ୍ ସେ ପ୍ରାଚୀ ନଦୀରେ ସ୍ନାନ ସାରିଛନ୍ତି ଏବଂ ସାରଳା ମନ୍ଦିରରେ ପହଞ୍ଚି ଦେବୀଙ୍କ ଆରାଧନା କରିଛନ୍ତି ।

କବିଙ୍କ କବିତ୍ୱପ୍ରାପ୍ତି ସମ୍ପର୍କୀୟ କିମ୍ବଦନ୍ତୀଗୁଡ଼ିକର ସ୍ରଷ୍ଟା ସ୍ୱୟଂ କବି ହୋଇଥିବାରୁ ଅନୁମାନ କରାଯାଏ ଯେ ସେ ପାଠକର ଆଧ୍ୟାତ୍ମିକ ଚେତନାକୁ ବିଚଳିତ କରାଇ ନିଜର ସହଜ ସଫଳତା ପ୍ରାପ୍ତିର ଉଦ୍ୟମ କରିଛନ୍ତି । ପୁନଶ୍ଚ ବିଭିନ୍ନ ପ୍ରକାର ବିବରଣୀ ମାଧ୍ୟମରେ କରାଯାଇଥିବା ଜାତି ସ୍ମରଣ ବର୍ଣ୍ଣନାର ଅନ୍ତରାଳରେ କବିଙ୍କର ନିଜ ଗୁରୁତ୍ୱ ବଢ଼ାଇବାର ଉଦ୍ଦେଶ୍ୟ ଯେ ନିହିତ ରହିଛି ଏଥିରେ ମଧ୍ୟ ସନ୍ଦେହ କରିବାର କିଛି ନାହିଁ ।

କବିତ୍ୱ ସ୍ଫୁର୍ତ୍ତି ଓ ଜାତିସ୍ମରତା ସମ୍ବନ୍ଧୀୟ କାହାଣୀଗୁଡ଼ିକର ନାଟକୀୟ ଅବତାରଣା ପଛରେ କବିଙ୍କର ଭିନ୍ନ ଉଦ୍ଦେଶ୍ୟ ମଧ୍ୟ ଥିବାର ଅନୁମାନ କରାଯାଏ । ତତ୍‌କାଳୀନ ସମାଜରେ ସଂସ୍କୃତ ଭାଷା ନିରଙ୍କୁଶ ରାଜତ୍ୱ ବିସ୍ତାର କରିଥିଲା । ଧର୍ମଶାସ୍ତ୍ର, ପୁରାଣ ଇତ୍ୟାଦି କେବଳ ସଂସ୍କୃତରେ ହିଁ ଲିଖିତ ହେଉଥିଲା ଏବଂ ସେଗୁଡ଼ିକୁ ପାଠ କରି ବୁଝିବା ନିମନ୍ତେ ନିରକ୍ଷର ଜନସାଧାରଣଙ୍କ ପକ୍ଷରେ ସମ୍ଭବ ନ ଥିଲା । ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ପୁରାଣ ଶାସ୍ତ୍ରମାନ ରଚିତ ହେବା ନିମନ୍ତେ କୌଣସି ପ୍ରକାର ଉତ୍ସାହ ମିଳୁ ନ ଥିଲା । ସଂସ୍କୃତ ଭାଷା ଭିନ୍ନ ଅନ୍ୟ ଭାଷା ଘୃଣିତ ହେଉଥିଲା । ଏପରି ଏକ ସନ୍ଧିକ୍ଷଣରେ ସାରଳା ଦାସ ଆଞ୍ଚଳିକ ଭାଷାରେ ମହାଭାରତ ରଚନା କରିବା ନିମନ୍ତେ ସାହସର ସହିତ ଆଗେଇ ଆସିଅଛନ୍ତି । କାଳେ ସଂସ୍କୃତ ପଣ୍ଡିତମାନେ କିଛି ପ୍ରତିକ୍ରିୟା ପ୍ରକାଶ କରିବେ, ସେଥିପାଇଁ ନିଜକୁ ମୂର୍ଖ, ଅଜ୍ଞାନ ଆଦି କହି ଏବଂ ଦେବୀଙ୍କ ଦୟା ଓ ଆଜ୍ଞାରେ ଗ୍ରନ୍ଥ ଲେଖିଥିବା ଭଳି ଅନେକ ଭାବୁକ ମିଥ୍ୟାର ଆଶ୍ରୟ ନେଇ ମହାଭାରତ ପରି ଏକ ବିପୁଳକାୟ ଗ୍ରନ୍ଥ ସେ ଆମ ସମକ୍ଷରେ କାଳ କାଳ ପାଇଁ ରଖି ଦେଇ ଯାଇଅଛନ୍ତି ।

## କବିଙ୍କ ସମୟ

ସାରଳା ଦାସ ନିଜ ସମ୍ପର୍କରେ ତାଙ୍କ ସାହିତ୍ୟକୃତି ମାଧ୍ୟମରେ ବିଶେଷ କିଛି ପ୍ରକାଶ କରି ନ ଥିବାରୁ ତାଙ୍କର କାଳ ନିର୍ଣ୍ଣୟ କରିବା ଆୟାସସାଧ୍ୟ । ପୁନଶ୍ଚ ଅନ୍ୟ ଦୃଷ୍ଟିରୁ ବିଚାର କଲେ, ସାରଳା ଦାସ ପୁରାଣ ରଚନା କରିଛନ୍ତି, ଇତିହାସ

ନୁହେଁ । ଏଣୁ ଏଥିରେ ଐତିହାସିକ ତଥ୍ୟ ଖୋଜିଲେ ନିଶ୍ଚିତ ଭାବେ ହତାଶ ହେବାକୁ ପଡ଼ିବ । ମହାଭାରତର ଆଦି ପର୍ବରେ କବି ଲେଖିଛନ୍ତି —

"କଳିକାଳ ଧ୍ୱଂସିଣ ଯେ ଗେଣ କୋଟି ପ୍ରଜା
ପ୍ରଣମ୍ୟିତେ ଝଟଇ ଶ୍ରୀ କପିଳେଶ୍ୱର ମହାରାଜା ।"

( ଆଦି ପର୍ବ—ପୃ: ୪ )

ଉକ୍ତ ଉଦ୍ଧୃତିରୁ ଅନୁମିତ ହୁଏ ଯେ କବି ସୂର୍ଯ୍ୟବଂଶର ମହାପ୍ରତାପୀ ରାଜା କପିଳେନ୍ଦ୍ର ଦେବଙ୍କ ସମସାମୟିକ । କିନ୍ତୁ ଡ଼ ଆର୍ତ୍ତବଲ୍ଲଭ ମହାନ୍ତି ଭାଷା ଦୃଷ୍ଟିରୁ ଯୁକ୍ତି ଦର୍ଶାଇ କବି 'କପିଳେନ୍ଦ୍ର' ବା 'କପିଳେଶ୍ୱର' ଶବ୍ଦ ଗଙ୍ଗବଂଶର କପିଳ ନରସିଂହ ଦେବଙ୍କୁ ଲକ୍ଷ୍ୟ କରି ଲେଖିଛନ୍ତି ବୋଲି ମତପ୍ରକାଶ କରନ୍ତି; ମାତ୍ର ଏ ମତଟି ଯେ ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ, ଏହା ପ୍ରମାଣ କରାଯାଇପାରେ ।

ପ୍ରଥମତଃ କପିଳ ନରସିଂହ ଦେବ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମରେ ଏବଂ ଗଙ୍ଗବଂଶର ବିଳୟ କାଳରେ ରାଜତ୍ୱ କରୁଥିଲେ । ମାତ୍ର କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଘଟଣା ବହୁଳତା ଗଙ୍ଗବଂଶର ଏହି ଦୁର୍ବଳ ରାଜାଙ୍କ ରାଜତ୍ୱ କାଳରେ ନ ଥିଲି । ସାରଳା ଦାସ ନିଜ ଗ୍ରନ୍ଥରେ ଯୁଦ୍ଧ ବିଗ୍ରହର ଯେଉଁ ବିସ୍ତୃତ ଏବଂ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପ୍ରଦାନ କରିଛନ୍ତି ତାହା ଏହି ଦୁର୍ବଳ ରାଜାଙ୍କ ସମୟରେ କଦାପି ସମ୍ଭବ ନ ଥିଲି । ଦ୍ୱିତୀୟତଃ କାବ୍ୟ, ସାହିତ୍ୟ ଆଦି ରଚନା କରିବା ନିମିତ୍ତ ଆବଶ୍ୟକ ହେଉଥିବା ସାମାଜିକ ସ୍ଥିରତା ଗଙ୍ଗବଂଶର ଶେଷ କେତେଜଣ ରାଜାଙ୍କ ରାଜତ୍ୱରେ ନ ଥିଲି । ଏମାନେ ସର୍ବଦା ଜ୍ଞାତି ବିବାଦରେ ଲିପ୍ତ ରହିବା ଫଳରେ ବହିଃଆକ୍ରମଣର ଦୃଢ଼ ମୁକାବିଲା କରିପାରି ନ ଥିଲେ; ଫଳରେ ରାଜ୍ୟରେ ଅଶାନ୍ତି, ଅସ୍ଥିରତା, ଶଙ୍କା ଭୟ ଇତ୍ୟାଦି ସର୍ବଦା ଲାଗି ରହିଥିଲି । ଦୀର୍ଘକାଳ ପରେ କପିଳେନ୍ଦ୍ର ଦେବ ଦେଶରେ ସୁଦୃଢ଼ ଶାସନର ପ୍ରତିଷ୍ଠା କରି ଦେଶକୁ ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ଦୁର୍ଗତିରୁ ରକ୍ଷା କରିଥିଲେ । ଏଣୁ ଏପରି ଏକ ଘନଘଟାମୟ ସମୟ ଜଣେ କବି ପକ୍ଷରେ ସାହିତ୍ୟ ରଚନା କରିବା ନିମନ୍ତେ ଆଦୌ ଅନୁକୂଳ ନୁହେଁ । ତୃତୀୟତଃ ତ୍ରୟୋଦଶ ଚତୁର୍ଦ୍ଦଶ ଶତକର ଗଙ୍ଗଯୁଗୀୟ ଶିଳାଲେଖମାନଙ୍କରେ ବ୍ୟବହୃତ ହୋଇଥିବା ଭାଷା ଅପେକ୍ଷା ସାରଳା ଦାସଙ୍କ ଭାଷା ଅଧିକ ଉନ୍ନତ ଓ ମାର୍ଜିତ । ଏଣୁ ସାରଳା ଦାସଙ୍କ ମହାଭାରତ ନିଃସନ୍ଦେହ ଭାବେ ପରବର୍ତ୍ତୀ କାଳରେ ଲିଖିତ । ଚତୁର୍ଥତଃ 'କପିଳ' ଶବ୍ଦ ସହ 'ଇନ୍ଦ୍ର' ଶବ୍ଦ ଯୁକ୍ତ ହେବା ଫଳରେ କପିଳେନ୍ଦ୍ର ଶବ୍ଦ ସୃଷ୍ଟି ହୋଇଛି । ଆଲୋଚିତ ଗଙ୍ଗବଂଶର ରାଜା କେବଳ କପିଳ ନାମରେ ଜ୍ଞାତ । ଅବଶ୍ୟ ତାଙ୍କ ନାମ ସହିତ 'ଇନ୍ଦ୍ର' ଶବ୍ଦଟି ଯୋଗ କରିବା କିଛି ଅପ୍ରାସଙ୍ଗିକ ନୁହେଁ; ମାତ୍ର କପିଳେନ୍ଦ୍ର ନାମକ ଜଣେ ରାଜା ପରବର୍ତ୍ତୀ କାଳରେ ଥିବା କଥା ଐତିହାସିକ ପ୍ରମାଣରୁ ମିଳୁଥିବା ବେଳେ, ସାରଳାଙ୍କୁ ଗଙ୍ଗବଂଶର

କପିଳ ନରସିଂହ ଦେବଙ୍କ ସମୟକୁ ଟାଣିନେବା ଠିକ୍ ହେବ ନାହିଁ । ଅତଏବ କବି ଯେ ସୂର୍ଯ୍ୟବଂଶୀ ରାଜା ପୁଣ୍ୟଶ୍ଳୋକ କପିଳେନ୍ଦ୍ର ଦେବଙ୍କ ସମୟରେ ଜୀବିତ ଥିଲେ, ଏହା ନିଃସନ୍ଦେହ ଭାବେ କୁହାଯାଇପାରେ ।

ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ବହୁ ବର୍ଷ ତଳେ 'ଝଙ୍କାର' ମାସିକ ପତ୍ରିକାରେ କେତୋଟି ପ୍ରବନ୍ଧ ଜରିଆରେ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ ସାରଳା ଦାସ ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀର କବି ଥିଲେ ଏବଂ ତାଙ୍କ ଘର କଟକର ଝଙ୍କଡ଼ରେ ନୁହେଁ, ପୁରୀ ଜିଲାର କାକଟପୁର ଥାନା ଅନ୍ତର୍ଗତ କଣିଆ ଗ୍ରାମ । ଡଃ ବଂଶୀଧର ମହାନ୍ତି ଓ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ତଥ୍ୟର ପ୍ରବଳ ପ୍ରତିବାଦ କରି ଏହା ସମ୍ପୂର୍ଣ୍ଣ ଭୁଲ ବୋଲି ପ୍ରମାଣ କରିଥିଲେ ସେହି 'ଝଙ୍କାର' ପତ୍ରିକାର ପରବର୍ତ୍ତୀ ସଂଖ୍ୟାମାନଙ୍କରେ । ଭାଷା ଦୃଷ୍ଟିରୁ ଦେଖିବାକୁ ଗଲେ ସାରଳାଙ୍କ ପରବର୍ତ୍ତୀ ଯୁଗର ପଞ୍ଚସଖା ସାହିତ୍ୟର ଭାଷା ଓ ସାରଳା ସାହିତ୍ୟର ଭାଷା ମଧ୍ୟରେ ବିଶେଷ ତଫାତ୍ ପରିଲକ୍ଷିତ ହୁଏ ନାହିଁ । ପଞ୍ଚସଖା ସାହିତ୍ୟର ସମୟ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ହୋଇଥିବାରୁ ସାରଳାଙ୍କୁ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର କବି ବୋଲି ଧରି ନେବାରେ କିଛି ଭ୍ରମ ଥିଲି ଭଳି ମନେହୁଏ ନାହିଁ ।

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ନାମକ ଏକ ପ୍ରାମାଣିକ ପୁସ୍ତକରେ ସାରଳା ଦାସଙ୍କୁ ପଞ୍ଚଦଶ ଶତାବ୍ଦୀର କବି ଭାବେ ପ୍ରମାଣ କରିଛନ୍ତି । ସେ ଦର୍ଶାଇଛନ୍ତି—"ସାରଳା ମହାଭାରତରେ କପିଳେଶ୍ୱର ଦେବ ଗଜପତିଙ୍କ (୧୪୩୫-୧୪୬୭) ଓ ଗଜପତି ପୁରୁଷୋତ୍ତମ ଦେବଙ୍କ (୧୪୬୭-୧୪୯୭) ରାଜତ୍ୱ ସମୟର ଐତିହାସିକ ଚିତ୍ର ରହିଛି ଏବଂ ସେମାନଙ୍କ ସମୟର ଭାରତର ଐତିହାସିକ ଚିତ୍ର ମଧ୍ୟ ରହିଛି । ସାରଳା ଦାସ ଗ୍ରନ୍ଥ ଆରମ୍ଭରେ କପିଳେଶ୍ୱର ଗଜପତିଙ୍କ ନାମ ଉଲ୍ଲେଖ କରିଛନ୍ତି ଏବଂ ଉଦ୍ଯୋଗ ପର୍ବରେ ପୁରୁଷୋତ୍ତମ ଦେବଙ୍କ ନାମ ଅର୍ଥାନ୍ତରରେ ନରବଳୀ ନରଶ୍ରେଷ୍ଠ ପୁରୁଷୋତ୍ତମ ରୂପେ ପ୍ରକାଶ କରିଛନ୍ତି । ଏଣୁ ଏ ଉଭୟ ଗଜପତିଙ୍କ ଅମଳରେ ଯେ ସାରଳା ମହାଭାରତ ରଚିତ ହୋଇଥିଲି, ଏଥିରେ ସନ୍ଦେହର ଅବକାଶ ରହେ ନାହିଁ । X X X ସାରଳା ମହାଭାରତର ଲେଖା ପ୍ରାୟ ୧୪୬୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲି ବୋଲି ଧରାଗଲେ କବିଙ୍କ ଜନ୍ମକାଳକୁ ୧୪୨୫ ବା ୧୪୨୦ ଖ୍ରୀଷ୍ଟାବ୍ଦ ବୋଲି ଧରିବାକୁ ହେବ ।"

ପୁନଶ୍ଚ ଡଃ ପାଣିଗ୍ରାହୀ ଭାଷା ଦୃଷ୍ଟିରୁ ଆଲୋଚନା କରି ସାରଳାଙ୍କ ସମୟ ସମ୍ପର୍କରେ କହନ୍ତି—" X X X ସାରଳା ଦାସ ନବମ ବା ଏକାଦଶ ଶତାବ୍ଦୀର କବି ହୋଇ ନ ପାରନ୍ତି । ସେ ଯେ କପିଳେଶ୍ୱର ଗଜପତି (୧୪୩୫-୬୭) ଙ୍କ ସମସାମୟିକ ଥିଲେ, ଏହା ତାଙ୍କ ସାହିତ୍ୟର ବହୁ ପ୍ରମାଣରୁ ପ୍ରତିପାଦିତ ହେଉଅଛି । ଏହି ଗଜପତିଙ୍କ ନାମ ସାରଳା ମହାଭାରତର ଆଦ୍ୟ ପର୍ବରେ ଉଲ୍ଲେଖ ରହିଛି;

ତା'ଛଡ଼ା ଏହାଙ୍କ ସମସାମୟିକ ବହୁରାଜାଙ୍କ ନାମ, ବହୁ ଭୌଗଳିକ ନାମ ଓ ବହୁ ଘଟନା ଏହି ମହାଭାରତରେ ସ୍ଥାନ ପାଇଛି । ଭାଷା ଦୃଷ୍ଟିରୁ ବିଚାର କଲେ ମଧ୍ୟ ନିଃସନ୍ଦେହରେ ପ୍ରମାଣିତ ହୁଏ ଯେ ସାରଳାସାହିତ୍ୟ ମୁସଲମାନ ଆଧିପତ୍ୟ କାଳରେ ସୃଷ୍ଟି ହୋଇଥିଲା । ଏଥିରେ ବହୁ ମୁସଲମାନୀ ଶବ୍ଦ ( ଆରବୀ ଓ ଫାରଶୀ ଶବ୍ଦ ) ବ୍ୟବହୃତ ହୋଇଛି । ପ୍ରଥମ ପ୍ରବନ୍ଧରେ ପ୍ରଦର୍ଶିତ ହୋଇଅଛି ଯେ ସାରଳା ଦାସ କମାଣ, ହୁକୁମ, ମଇଦାନ, ସାସ୍ତି, ଗ୍ରେପ, ଆଲମାର, ନଜର ପ୍ରଭୃତି ବୈଦେଶିକ ଶବ୍ଦମାନ ବ୍ୟବହାର କରିଛନ୍ତି । ପରବର୍ତ୍ତୀ ଅନୁସନ୍ଧାନ ଫଳରେ ଜଣାଯାଏ ଯେ ଏହି ସାହିତ୍ୟରେ ଆହୁରି ଆରବୀ ଓ ଫାରଶୀ ଶବ୍ଦ ବ୍ୟବହୃତ ହୋଇଅଛି । ଦରକାର ( ଆରବୀ ଦର୍‌କାର୍ ), ଅତର ( ଆରବୀ ଇତ୍ର ), ବଜାର ( ଫାରଶୀ ବାଜାର୍ ), ଫଉଜାର ( ଆରବୀ ଫଉଜ୍ = ସୈନ୍ୟ ), ଜାଗିର ( ଫାରଶୀ ଜାଗିର୍ ), ହଜାର ( ଫାରଶୀ ହଜାର୍ ), ଘୋଷ ( ଫାରଶୀ ଗୁସା ) ପ୍ରଭୃତି ଶବ୍ଦ ମଧ୍ୟ ଏଥିରେ ବାରମ୍ବାର ବ୍ୟବହୃତ ହୋଇଛି । ସାରଳା ଦାସ ତାଙ୍କ ସାହିତ୍ୟ ସୃଷ୍ଟି କଲାବେଳକୁ ମୁସଲମାନମାନେ ଅଢ଼େଇଶ ବର୍ଷ ପର୍ଯ୍ୟନ୍ତ ଭାରତରେ ରାଜତ୍ୱ କରି ସେମାନଙ୍କ ସାର୍ବଭୌମ କ୍ଷମତା ପ୍ରସାର କରି ସାରିଥିଲେ । ଏଣୁ ଓଡ଼ିଶା ସ୍ୱାଧୀନ ଥିଲେ ହେଁ ଏତେଗୁଡ଼ିଏ ମୁସଲମାନ ଶବ୍ଦ ଆମ ଭାଷା ଭିତରେ ପ୍ରବେଶ କରିଥିଲା ।"*

ଐତିହାସିକ ଦୃଷ୍ଟିକୋଣରୁ ସାରଳାଙ୍କ ସମୟ ମଧ୍ୟ ନିର୍ଣ୍ଣୟ କରାଯାଇପାରେ । ସାରଳା ମହାଭାରତରେ ଯେଉଁ ଐତିହାସିକ ଉପାଦାନ ମିଳେ ତା'ର ସମ୍ୟକ୍ ଆଲୋଚନା କଲେ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ସମୟରେ ସାରଳା ଦାସ ଜୀବିତ ଥିଲେ । କାରଣ ଏହି ଐତିହାସିକ ଉପାଦାନମାନଙ୍କ ମଧ୍ୟରୁ ଅନେକ ସେ ସମୟର ଇତିହାସ, ଅଭିଲେଖ ଏବଂ ମାଦଳା ପାଞ୍ଜିର ବିବରଣୀ ସହ ସମତା ରକ୍ଷା କରନ୍ତି ।

ଡଃ କୃଷ୍ଣ ଚରଣ ସାହୁ ଏ ସମ୍ପର୍କରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରି କେତେକ ଯୁକ୍ତି ପ୍ରଦାନ କରିଛନ୍ତି । ସାରଳାକାଳୀନ ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ପରିସ୍ଥିତିକୁ ବିଚାରକୁ ନେଇ ସେ ତାଙ୍କର ଯୁକ୍ତି ଉପସ୍ଥାପନ କରିଅଛନ୍ତି । ପରି ଶେଷରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଲେଖିଛନ୍ତି—"As both the kings – Kapilendra and Purusottam were mentioned in the begining of the Mahabharata, it seems certain that Sarala Dasa began the Mahabharata sometime between 1467 and 1470 A D".

* ସାରଳା ସାହିତ୍ୟର ରଚନା କାଳ ଓ ଐତିହାସିକ ତଥ୍ୟ ଝଙ୍କାର— ୨୦ଶ ବର୍ଷ-୩ୟ ସଂଖ୍ୟା-ଜୁନ୍ ୧୯୬୮ ।

ପଣ୍ଡିତ ଗୋପୀନାଥ ଶର୍ମା ମଧ୍ୟ ଅନୁରୂପ ମତ ପ୍ରଦାନ କରି ଲେଖିଛନ୍ତି— "ତାହାହେଲେ ବିଶ୍ୱାସ କରାଯାଇପାରେ କି, ଶ୍ରୀମାନ୍ ସାରଳା ଦାସ ମହୋଦୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଷଷ୍ଠ ବା ସପ୍ତମ ଦଶକରେ ଗ୍ରନ୍ଥ ରଚନା ଆରମ୍ଭ କରିଥିବେ।"

କବିଙ୍କ କାଳ ବା ଗ୍ରନ୍ଥ ରଚନାର କାଳ ଭଳି ଅନ୍ୟ ଏକ ବିବାଦୀୟ ପ୍ରଶ୍ନ ହେଉଛି—ଜୀବନର କେଉଁ ଭାଗରେ କବି ମହାଭାରତ ରଚନା କରିଥିଲେ ବା ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହେବାବେଳକୁ କବିଙ୍କୁ କେତେ ବୟସ ହୋଇଥିଲା ? ମଧ୍ୟପର୍ବରେ ସାରଳା ଏକ ସ୍ଥାନରେ "ଶିଶୁ ବୁଦ୍ଧି ମୋହର ବୟସ ଅଳପ ଟି" ବୋଲି ଲେଖିଛନ୍ତି । ଏଥିରୁ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଅନୁମାନ କରନ୍ତି ଯେ କବି ଅଳ୍ପ ବୟସରେ ବା ସଦ୍ୟପ୍ରାପ୍ତ ତାରୁଣ୍ୟରେ ମହାଭାରତ ରଚନା କାର୍ଯ୍ୟ ହାତକୁ ନେଇଥିଲେ । କାରଣ କବି ଅପ୍ରାପ୍ତ ବୟସରେ ଥିବା ସମୟରେ ପିତାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ପୌରାଣିକ ଜ୍ଞାନ ଓ ଗ୍ରନ୍ଥ ସମ୍ପାଦନା ଶକ୍ତି ନିମନ୍ତେ ଦେବୀଙ୍କ ଶ୍ରୀମୁଖରେ ଅଧିଆ ପଡ଼ିଲେ । ସମ୍ଭବତଃ ପାଞ୍ଚ ସାତ ବର୍ଷ ମାତ୍ର ଦେବୀଙ୍କ ସେବାରେ ଅତୀତ ହୋଇଥିବ ଏବଂ ତାପରେ ସେ ଦେବୀଙ୍କ ପ୍ରସାଦ ପ୍ରାପ୍ତ ହୋଇ ମହାଭାରତ ରଚନାରେ ଲାଗି ପଡ଼ିଥିବେ । ଏପ୍ରକାର ଯୁକ୍ତି କେତେଦୂର ଗ୍ରହଣୀୟ, ବିଚାର କରାଯାଇପାରେ । ପିତାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ସାରଳାଙ୍କ ନିକଟରେ ଅଧିଆ ପଡ଼ିବା ବିଷୟ ଏକ କିମ୍ବଦନ୍ତୀ ବ୍ୟତୀତ ଆଉ କିଛି ନୁହେଁ । ପୁନଶ୍ଚ ଏହାର ସତ୍ୟତା ଥାଉ ବା ନ ଥାଉ, କବି ସାରଳାଙ୍କ କୃପା ଲାଭ କରିବା ପରେ ପରେ ମହାଭାରତ ରଚନା କରି ନାହାନ୍ତି । ସେ ପ୍ରଥମେ ବିଲଙ୍କା ରାମାୟଣ, ଦ୍ୱିତୀୟରେ ମହାଭାରତ ଏବଂ ତୃତୀୟରେ ଚଣ୍ଡୀପୁରାଣ ରଚନା କରିଥିବା କଥା ଚଣ୍ଡୀପୁରାଣରେ ଲେଖିଛନ୍ତି । ଏଣୁ 'ଶିଶୁ ବୁଦ୍ଧି ମୋହର ବୟସ ଅଳପ ଟି' କବିଙ୍କ ବିନୟ ଭାବର ପରିଚାୟକ ମାତ୍ର । କାରଣ ପିତାମାତାଙ୍କ ଆଗରେ ସନ୍ତାନ ସର୍ବଦା ଅଳ୍ପ ବୟସ୍କ ଏବଂ ଅଳ୍ପ ବୁଦ୍ଧି ସମ୍ପନ୍ନ ଶିଶୁ । ଏଣୁ ପଣ୍ଡିତ ମହାଶୟଙ୍କ ଏହି ଯୁକ୍ତିକୁ ଗ୍ରହଣ କରାଯାଇ ନ ପାରେ ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥ "ସାରଳାଦାସଙ୍କୁ ଗତ ମୁକତ ଦେବା" (ମଧ୍ୟପର୍ବ) ପଙ୍କ୍ତିଟିକୁ ଉଦ୍ଧାର କରି କହନ୍ତି ଯେ କବିଙ୍କୁ ସେତେବେଳକୁ ଜରା ବା ବାର୍ଦ୍ଧକ୍ୟ ଗ୍ରାସ କରିସାରିଥିଲା । ଫଳରେ କବି ନିଜ ଗ୍ରନ୍ଥରେ ବୃଦ୍ଧାବସ୍ଥା ଜୀବନରୁ ମୁକ୍ତିଲାଭ କରିବା ନିମନ୍ତେ କାତର ପ୍ରାର୍ଥନା ଜଣାଇଛନ୍ତି । କିନ୍ତୁ ଏପରି ବିଚାର କରିବା ଯଥାର୍ଥ ନୁହେଁ । କାରଣ ତରୁଣ ହେଉ ବା ବୃଦ୍ଧ ହେଉ ଭକ୍ତ ସର୍ବଦା ମୁକ୍ତିଲାଭ ନିମନ୍ତେ ପ୍ରାର୍ଥନା କରିଥାଏ ।

ଏ ସମସ୍ତ ବିବାଦୀୟ ଯୁକ୍ତିର ସମାଧାନ କରିଛନ୍ତି ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନିଜର ବଳିଷ୍ଠ ଯୁକ୍ତିଯୁକ୍ତ ମତ ପ୍ରଦାନ କରି । ତାଙ୍କ ମତରେ ଓଡ଼ିଆ ସାହିତ୍ୟର

ସୁଦ୍ୱିଶାଳ ଗ୍ରନ୍ଥ ମହାଭାରତ ରଚନା କଲାବେଳକୁ ସେ ନିଶ୍ଚୟ ବୃଦ୍ଧ ହୋଇଯାଇଥିଲେ । କାରଣ ଭୀଷ୍ମ ପର୍ବରେ କବି ଝଙ୍କଡ଼ବାସିନୀ ଶ୍ରୀସାରଳା ଦେବୀଙ୍କୁ ନିଜର ଦୁର୍ଗତି ନାଶନ ନିମନ୍ତେ ବିନୀତ ପ୍ରାର୍ଥନା କରିଛନ୍ତି —

"ବୃଦ୍ଧକାଳରେ କହଇ ଶ୍ରୀସାରଳା ଦାସ
ଜନ୍ମେ ଜନ୍ମେ ତୋର ପାଦେ ରହୁ ମୋର ଆଶ ।"

ଉପର୍ଯ୍ୟୁକ୍ତ ଆଲୋଚନା ବଳରେ ପ୍ରତିପାଦିତ ହେଲା ଯେ ସାରଳା ଦାସ ସୂର୍ଯ୍ୟବଂଶୀୟ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଶେଷ ଭାଗରେ ଏବଂ ପରବର୍ତ୍ତୀ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ଅର୍ଥାତ୍ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଷଷ୍ଠ ବା ସପ୍ତମ ଦଶକରେ ଜୀବିତ ଥିଲେ ଏବଂ ନିଜର ବିଶାଳକାୟ ତଥା ଅବିସ୍ମରଣୀୟ ସାହିତ୍ୟିକ କୃତିମାନ ପ୍ରଣୟନ କରିଥିଲେ ; କିନ୍ତୁ ଏହାଙ୍କର ପ୍ରକୃତ ଜନ୍ମକାଳ ସମ୍ବନ୍ଧରେ ବିଶେଷ ତଥ୍ୟ ମିଳେ ନାହିଁ ଏବଂ ଯାହା ମିଳେ ସେ ସବୁ ଅନୁମାନ-ଭିତ୍ତିକ । ସୁତରାଂ ସ୍ଥୂଳ ଭାବରେ ଏକ ବିସ୍ତୃତ କାଳର ପୃଷ୍ଠଭୂମିକାରେ ସାରଳା ଦାସଙ୍କୁ ପଞ୍ଚଦଶ ଶତାବ୍ଦୀର କବି ହିସାବରେ ଗ୍ରହଣ କରିବା ଅଧିକ ଯୁକ୍ତି ସମ୍ମତ ମନେହୁଏ ।

## କବିଙ୍କ ଶିକ୍ଷା

ମଧ୍ୟଯୁଗର ଓଡ଼ିଆ କବିମାନେ ଯେପରି ନିଜର ପରିଚୟ, ବଂଶାବଳୀ, ଜନ୍ମସ୍ଥାନ ପ୍ରଭୃତିର ବହୁଳ ବିବରଣୀ ନିଜ ନିଜ ରଚନାରେ ଲିପିବଦ୍ଧ କରିଯାଇଛନ୍ତି, ସାରଳା ଦାସ ତାଙ୍କର ବିପୁଳ ସାହିତ୍ୟରେ କୁତ୍ରାପି ସେପରି କରି ନାହାନ୍ତି । ତଥାପି ମହାଭାରତରେ ସ୍ଥଳ ବିଶେଷରେ ସେ ନିଜ ସମ୍ବନ୍ଧରେ ଯେଉଁ ସାମାନ୍ୟ ଉଲ୍ଲେଖମାନ କରିଅଛନ୍ତି, ସେଥିରେ ତାଙ୍କ ଜୀବନ ସମ୍ବନ୍ଧୀୟ ଏକ ସମ୍ପୂର୍ଣ୍ଣ ଓ ସଠିକ୍ ଇତିବୃତ୍ତ ରଚନା କରିବା ସହଜ ନୁହେଁ । ଯାହାହେଉ, ଏହି ସାମାନ୍ୟ ସୂଚନାସବୁର ସାହାଯ୍ୟରେ ତାଙ୍କ ଜୀବନୀ, ଏକ କ୍ଷୁଦ୍ର ଆଲୋଚନାରେ ପୂର୍ବରୁ ପ୍ରଦତ୍ତ ହୋଇଅଛି । ବର୍ତ୍ତମାନ ତାଙ୍କ ରଚନାର ବିଭିନ୍ନ ଅଂଶ ଅବଲମ୍ବନରେ ଏବଂ ବିଭିନ୍ନ ସମାଲୋଚକଙ୍କ ଏ ସମ୍ପର୍କୀୟ ତଥ୍ୟ ଅବଲମ୍ବନରେ ତାଙ୍କ ଶିକ୍ଷା ସମ୍ବନ୍ଧରେ ଆଲୋଚନା କରାଯାଇପାରେ ।

ନିଜ ଗ୍ରନ୍ଥମାନଙ୍କରେ ଅନେକ ସ୍ଥାନରେ କବି ନିଜକୁ ମୂର୍ଖ, ଅପଣ୍ଡିତ, ବାଳୁତ ବୁଦ୍ଧି, ଅରକ୍ଷିତ ଇତ୍ୟାଦି ଭାବରେ ପରିଚିତ କରାଇଛନ୍ତି । ଯଥା—

"ଶୁଣି ବୁଧଜନେ ନ ଧର ଆନ ଚିତ୍ତ
ଜନ୍ମେଣ ମୁରୁଖ ମୁହିଂ ନୋହଇ ପଣ୍ଡିତ ।"

( ଆଦିପର୍ବ-ପୃ: ୫ )

"ମୁହିଂ ଯେ ଅରକ୍ଷିତ ଅଟଇ ଅପଣ୍ଡିତ
ବିଦ୍ୟା ଶାସ୍ତ୍ରେ ନୋହିଲି ଭଗତ ।

× × ×

ମେ ଦେବୀ ସହୁଂ ମୋର କଣ୍ଠରେ ବିଜେ କଲେ
ତେଣୁ କରି ପଦମୋର ହୃଦରୁ ସ୍ଫୁରିଲେ ।"

( ମଧ୍ୟପର୍ବ-ପୃ. ୯୪୯-୫୦ )

ମୁହିଂ ଶୂଦ୍ର ମୂର୍ଖ ଅଗ୍ୟାନ ଅପଣ୍ଡିତ
ମୁଂ କାହିଂ କହିବି ପୁରାଣ ଅକଳିତ ଶ୍ରୀ ମହାଭାରଥ ।
ନ ପଢ଼ିଲି ନ ଶୁଣିଲି ନ ଭାବିଲି ଗତ ପୁଣ୍ୟ
ଅଷ୍ଟାଦଶ ପର୍ବ କଲି ମୁଂ ଶ୍ରୀ ସାରଳା ପ୍ରସନ୍ନେ ।"

( ଉଦ୍‌ଯୋଗ ପର୍ବ-ପୃ : ୨୭ )

"ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ନ ଜାଣଇ ଅକ୍ଷର ଯେ କିସ ଅବା ବୁଦ୍ଧି ।"

( ଚଣ୍ଡୀ ପୁରାଣ-ପୃ : ୪ )

ଶାରଳା ଦାସ ଶରଣ ପଶେ ସେ ଚରଣେ
ମୂର୍ଖ ମୁହିଁ ଅପଣ୍ଡିତ ଶାସ୍ତ୍ର ହିଁ ନ ଜାଣେ ।
ବୁଦ୍ଧି ଧ୍ୟାନ ଜ୍ଞାନ ଯୋଗ ଲୟ କିଛି ନାହିଁ
ଗ୍ରନ୍ଥ ଭେଦିବାକୁ ଶକ୍ତି ମୋର ଅବା କାହିଁ ।

( ବିଲଙ୍କା ରାମାୟଣ-ପୃ: ୧ )

ଉକ୍ତ ପଙ୍‌କ୍ତିଗୁଡ଼ିକରେ ସାରଳା ଦାସ ନିଜକୁ ଯେତେ ମୂର୍ଖ, ଅପଣ୍ଡିତ, ଅକର୍ମା, ଶାସ୍ତ୍ରଜ୍ଞାନରହିତ ବୋଲି ଘୋଷଣା କରନ୍ତୁ ନା କାହିଁକି, ଏହାର ଅନ୍ତରାଳରେ ତାଙ୍କ ମହାନୁଭବତା ଓ ସୌଜନ୍ୟ ବିଦ୍ୟମାନ । ଏପରି ବ୍ୟକ୍ତି କରିବାରେ ସାରଳାଦାସ ପ୍ରଥମ ନୁହନ୍ତି । ମହାକବି କାଳିଦାସ ମଧ୍ୟ ଏପରି ଦୈନ୍ୟଭାବ ନିଜ ଗ୍ରନ୍ଥମାନଙ୍କରେ ପ୍ରଦର୍ଶନ କରିଛନ୍ତି । ନିଜର ହୀନମନ୍ୟତା ପ୍ରଦର୍ଶନ କରିବା ନିମନ୍ତେ ଏସବୁ କେବଳ ଭକ୍ତିକ ମିଥ୍ୟା ବ୍ୟତୀତ ଅନ୍ୟ କିଛି ନୁହେଁ । କାରଣ କବିକୃତ ମହାଭାରତ ତଥା ଅନ୍ୟାନ୍ୟ ଗ୍ରନ୍ଥର ଛନ୍ଦେ ଛନ୍ଦେ କବିଙ୍କ ଅସାଧାରଣ ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ଏବଂ ବିଦ୍ୟାବତ୍ତା ପ୍ରତିଫଳିତ ।

ସାରଳା ଦାସଙ୍କ ଶିକ୍ଷା ଦୀକ୍ଷା ସମ୍ବନ୍ଧରେ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ବିଭିନ୍ନ ମତ ଦେଖାଯାଏ । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ସାରଳା ଦାସଙ୍କର ନିଷ୍ଟସ୍ଥ ସଂସ୍କୃତରେ ଗଭୀର ବ୍ୟୁତ୍ପତ୍ତି ଥିଲି ବୋଲି ମତ ଦିଅନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ;

ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରମୁଖ ଆଲୋଚକମାନେ ମଧ୍ୟ ଅନୁରୂପ ମତର ପରିପୋଷକ । ପଣ୍ଡିତ ବିନାୟକ ମିଶ୍ର ମତ ବ୍ୟକ୍ତ କରନ୍ତି—"ତାହାଙ୍କର ସଂସ୍କୃତ ଶିକ୍ଷା ନ ଥିବାରୁ ସେ ସଂସ୍କୃତ ମହାଭାରତ ଓଡ଼ିଆରେ ଅବିକଳ ଅନୁବାଦ କରିବାକୁ ମନ ବଳାଇ ନ ଥିଲେ ।" ପୁନଶ୍ଚ ଡଃ ମାୟାଧର ମାନସିଂହ କହନ୍ତି—"ମନେ ହେଉଛି ଯେ ସେ ସଂସ୍କୃତ ଜାଣି ନ ଥିଲେ ବା ମୋଟ ଉପରେ କୌଣସି ପ୍ରକାରେ ଉଚ୍ଚ ବିଦ୍ୟାବାନ ବ୍ୟକ୍ତି ନ ଥିଲେ ।"

ସେ ଯାହାହେଉ, ବିଭିନ୍ନ ବ୍ୟକ୍ତିଙ୍କ ମତାମତରେ ପାର୍ଥକ୍ୟ ରହିବ ହିଁ ରହିବ । ତଥାପି ସାରଳା ଦାସ ସଂସ୍କୃତ ଜ୍ଞାନ ରହିତ ଥିବାର ଯେତେସବୁ ମତାମତ ରହିଛି ସେଗୁଡ଼ିକ ନିଃସନ୍ଦେହ ଭାବେ ଭ୍ରାନ୍ତିପୂର୍ଣ୍ଣ । କେହି କେହି କହି ପାରନ୍ତି ଯେ ସାରଳା ଶୂଦ୍ରକୁଳରେ ଜନ୍ମଲାଭ କରିଥିବାରୁ ସେ ସଂସ୍କୃତ ଜ୍ଞାନ ଲଭିରୁ ବଞ୍ଚିତ ଥିବେ ; କିନ୍ତୁ ଏ ପ୍ରକାର ସମ୍ଭାବନା ପଛରେ କୌଣସି ପ୍ରକାର ଯୁକ୍ତି ନ ଥାଇପାରେ । କାରଣ ଶୂଦ୍ରଙ୍କୁ ବେଦ ନିଷିଦ୍ଧ ଥିଲା ; କିନ୍ତୁ ସଂସ୍କୃତ ଭାଷା ନୁହେଁ । ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତ ମଧ୍ୟ ଏଠାରେ ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି "ସାରଳା ଦାସ ବିଭିନ୍ନ ସଂସ୍କୃତ ଧର୍ମଶାସ୍ତ୍ରମାନ ଶୁଣିବାର ସୁବିଧା ଏହିପରି ଭାବରେ ପାଇଥିଲେ । ତା'ଛଡ଼ା ସେ ନିଜେ ମଧ୍ୟ କେତେଗୁଡ଼ିଏ ସଂସ୍କୃତ ଗ୍ରନ୍ଥ ନିଶ୍ଚୟ ପଢ଼ିଥିଲେ । ତାହା ନ ହେଲେ ତାଙ୍କ ସଂସ୍କୃତ ଜ୍ଞାନ ଏତେ ବେଶୀ ବ୍ୟାପକ ହୋଇ ନ ଥାନ୍ତା ।" ( ସାରଳା ସାହିତ୍ୟର ଐତିହାସିକ ଚିନ୍ତା ) ସାରଳା ମହାଭାରତରେ ସଂସ୍କୃତ ମହାଭାରତ, ରଘୁବଂଶ, ଶ୍ରୀମଦ୍‌ଭଗବତ ଗୀତା, ଶ୍ରୀମଦ୍‌ଭାଗବତ ପୁରାଣ, ଏକାମ୍ର ପୁରାଣ, ବାଣଙ୍କ କାବ୍ୟାବଳୀ, ଭରତ ସାବିତ୍ରୀ, ଗୀତଗୋବିନ୍ଦ ପ୍ରଭୃତି ବହୁବିଧ ସଂସ୍କୃତ କାବ୍ୟର ପ୍ରତିଫଳନ ଦେଖାଯାଉଥିବାରୁ କବିଙ୍କର ଅସାଧାରଣ ସଂସ୍କୃତ ଜ୍ଞାନ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରାଯାଇ ନ ପାରେ ।

[ ଏ ସମ୍ବନ୍ଧୀୟ ଅଧିକ ତଥ୍ୟ ନିମନ୍ତେ 'କବିଙ୍କ ପାଣ୍ଡିତ୍ୟ' ପରିଚ୍ଛେଦ ଦ୍ରଷ୍ଟବ୍ୟ । ]

## କବିଙ୍କ ଧର୍ମମତ

ସାରଳା ସାହିତ୍ୟ ଆଲୋଚନାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସାରଳାଙ୍କ ଧର୍ମମତ । ସାରଳାକାଳୀନ ସମାଜରେ ପ୍ରଚଳିତ ଥିବା ବିଭିନ୍ନ ଧର୍ମଧାରାର ସମ୍ୟକ୍ ପ୍ରତିଫଳନ ହୋଇଅଛି ସାରଳା ସାହିତ୍ୟରେ । ସୁତରାଂ ସାରଳା ସାହିତ୍ୟ ହେଉଛି ସେ ଯୁଗରେ ଓଡ଼ିଆ ଜାତିର ଉଭୟ ଆଧ୍ୟାତ୍ମିକ ଚେତନା ଓ ସାଂସ୍କୃତିକ ଚେତନାର ମୁକୁର ସ୍ୱରୂପ । ସାରଳା ଦାସଙ୍କ ସମୟର ପ୍ରାୟ ୭୦୦ ବର୍ଷ ପୂର୍ବରୁ ଓଡ଼ିଶାରେ ଯେଉଁ କେତୋଟି ଧର୍ମମତ ଜନଜୀବନକୁ ପ୍ରଭାବିତ କରିଥିଲେ, ସେମାନଙ୍କ ମଧ୍ୟରେ ମୁଖ୍ୟସ୍ଥାନ ଅଧିକାର କରିଥିଲେ ଜୈନ ଧର୍ମ, ବୌଦ୍ଧଧର୍ମ, ନାଥଧର୍ମ ଓ ଶାକ୍ତଧର୍ମ । ବୌଦ୍ଧଧର୍ମ ଓ

ଜୈନଧର୍ମ ସ୍ୱତନ୍ତ୍ର ଧର୍ମ ନୁହନ୍ତି । ସେଗୁଡ଼ିକ ବ୍ରାହ୍ମଣ୍ୟ ଧର୍ମର ଏକ ଏକ ମାର୍ଜିତ ରୂପ । ପୁନଶ୍ଚ ନାଥ ଧର୍ମ ଶାକ୍ତ ଧର୍ମର ଏକ ଶାଖା କହିଲେ ଚଳେ । ସେ ଯାହାହେଉ, ସାରଳା ମହାଭାରତ ରଚିତ ହେଲାବେଳକୁ ଓଡ଼ିଶାର ଜନସାଧାରଣ ବହୁ ଧର୍ମ ସଙ୍ଗେ ପରିଚିତ ହୋଇସାରିଥିଲେ । ସାରଳା ଦାସ ବିଭିନ୍ନ ଧର୍ମଧାରା ଦ୍ୱାରା କିପରି ଭାବେ ପ୍ରଭାବିତ ହୋଇଥିଲେ, ସେ ବିଷୟରେ ବର୍ତ୍ତମାନ ଆଲୋଚନା କରାଯାଇପାରେ ।

ସାରଳା ଦାସ ନିଜକୁ 'ସାରଳାପୁତ୍ର', 'ଚଣ୍ଡୀପୁତ୍ର' ଆଦି ଉପାଧିରେ ଭୂଷିତ କରିଛନ୍ତି ଏବଂ ସାରଳା ଦେବୀଙ୍କ କୃପାରୁ ଗ୍ରନ୍ଥଗୁଡ଼ିକ ରଚନା କରିଥିବାର ବାରମ୍ବାର ସ୍ୱୀକାର କରିଥିବାରୁ ସେ ଜଣେ ପରମ ଶାକ୍ତ ଏବଂ ତନ୍ତ୍ରସାଧନା ବଳରେ ଦେବୀଙ୍କୁ ସନ୍ତୁଷ୍ଟ କରିଥିବା ଅନୁମିତ ହୁଏ । କିମ୍ବଦନ୍ତୀରୁ ଏବଂ କବିଙ୍କ ସ୍ୱୀକାରୋକ୍ତିରୁ ଜଣାଯାଏ ଯେ ଦେବୀଙ୍କ ପ୍ରସାଦରୁ କବି ପଦ ପରେ ପଦ ଲେଖି ଯାଉଥିଲେ । ଆଠ ହଜାର ପୃଷ୍ଠା ବ୍ୟାପୀ ଏହି ପ୍ରକାଣ୍ଡକାୟ ଗ୍ରନ୍ଥ ପ୍ରଣୟନ ମୂଳରେ ଦୈବୀଶକ୍ତିର ପରୋକ୍ଷ ସାହାଯ୍ୟ ଆଦୌ ଅସ୍ୱାଭାବିକ ମନେହୁଏ ନାହିଁ ! ସାରଳାଦାସଙ୍କ ପିତୃଦତ୍ତ ନାମ ଥିଲା ସିଦ୍ଧେଶ୍ୱର ପରିଡ଼ା । ସାରଳା ଦେବୀଙ୍କ ମନ୍ଦିରରେ ଅଧ୍ୟାତ୍ମ ସିଦ୍ଧିପ୍ରାପ୍ତ ହେବା ପରେ ସେ ନିଜ ନାମ ରଖିଛନ୍ତି ସାରଳା ଦାସ ଏବଂ ସାରଳାଙ୍କ ଦାସାନୁଦାସ ଭାବେ ନିଜକୁ ପରିଚିତ କରାଇଅଛନ୍ତି । ଭକ୍ତ କବିମାନେ ନିଜକୁ ଉପାସ୍ୟ ଦେବତାର ଦାସ ବୋଲି ମନେ କରିବା ହେଉଛି ପରମ୍ପରା । ତେଣୁ ଏ କ୍ଷେତ୍ରରେ କବି ପରମ୍ପରାକୁ ସମ୍ମାନ ଦେଖାଇଥିବା ମନେହୁଏ ।

ମହାଭାରତର ମଙ୍ଗଳାଚରଣରେ କବି ଦେବୀଙ୍କ କୃପା ପ୍ରାର୍ଥନା କରିଛନ୍ତି । ଗ୍ରନ୍ଥର ଅନେକ ସ୍ଥଳରେ ସାରଳାଙ୍କୁ ଦୁର୍ଗା, ଶ୍ରୀଚଣ୍ଡୀ, ସର୍ବମଙ୍ଗଳା ଅଭୟ ମଙ୍ଗଳା, ବିମଳା, ବଗଳା, ଅମ୍ବିକା, ଭବାନୀ, ସିଂହବାହିନୀ, ବରୁଣାଇ, ଜାଗୁଳେଇ, ଭଦ୍ରକାଳୀ, ଅଭୟା, ହରଧ୍ୱଜା, ସିଦ୍ଧ ସାରଳା, ମାହେଶ୍ୱରୀ, କୌଶିକୀ, ଚଣ୍ଡମୁଣ୍ଡ ବିନାଶିନୀ, ବିଷ୍ଣୁବଲ୍ଲଭୀ, ପରମ ବୈଷ୍ଣବୀ ଆଦି ବହୁ ନାମରେ ସ୍ତୁତ କରିଅଛନ୍ତି । ହିନ୍ଦୁ ତନ୍ତ୍ରରେ ଶକ୍ତି ଉପାସନା ସମ୍ବନ୍ଧରେ ଆଲୋଚନା କଲାବେଳେ ବିଭିନ୍ନ ଶକ୍ତିପୀଠ ବିଷୟରେ ମଧ୍ୟ କୁହାଯାଇଥାଏ । ସାରଳା ଦାସ ମଧ୍ୟ ନିଜ ଗ୍ରନ୍ଥମାନଙ୍କରେ ବିଭିନ୍ନ ଶକ୍ତିପୀଠମାନଙ୍କର ବର୍ଣ୍ଣନା ଦେଇଅଛନ୍ତି । ପୁରାଣରୁ ଜଣାଯାଏ ପିତା ଦକ୍ଷ ପ୍ରଜାପତିଙ୍କ ଆଚରଣରେ ନିଜ ସ୍ୱାମୀ ଦେବ ଦେବ ମହାଦେବ ଅପମାନିତ ହେବାରୁ ସତୀ ଅଗ୍ନିରେ ଝାସ ଦେଇଥିଲେ । ଶିବ ସତୀଙ୍କ ମୃତଦେହ ବହନକରି ପ୍ରବଳ ତାଣ୍ଡବ ଆରମ୍ଭ କରିଦେଲେ । ପରେ ବିଷ୍ଣୁ ସତୀଙ୍କ ମୃତ ଦେହକୁ କର୍ତ୍ତନ କରିବା ଫଳରେ କର୍ତ୍ତିତ ଅଂଶମାନ ଭାରତର ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ ଭାବରେ ପଡ଼ିଲା ଏବଂ କ୍ରମେ ସେଗୁଡ଼ିକ ଶକ୍ତିପୀଠମାନଙ୍କରେ ପରିଣତ ହେଲେ । ଏହି ପୌରାଣିକ ବିବରଣୀକୁ ନେଇ ସାରଳା ଦାସ ବିଭିନ୍ନ ପର୍ବରେ ତଥ୍ୟପୂର୍ଣ୍ଣ ସୂଚନାମାନ ଦେଇଅଛନ୍ତି ।

'ଚଣ୍ଡୀ ପୁରାଣ'ରେ ଗ୍ରାମ ଗ୍ରାମ ଦେବୀଙ୍କ ନାମ କବି ପ୍ରଦାନ କରିଛନ୍ତି । ବିଶେଷ ଭାବେ ଲକ୍ଷ୍ୟ କରିବାର କଥା, ଓଡ଼ିଶାର ବିଭିନ୍ନ ଗ୍ରାମରେ ଥିବା କେତେକ ଗ୍ରାମଦେବତାଙ୍କ ନାମ ମଧ୍ୟ ସେ ଉଲ୍ଲେଖ କରିଛନ୍ତି । 'ଚଣ୍ଡୀପୁରାଣ' ଓ 'ବିଲଙ୍କା ରାମାୟଣ' ଲେଖି କବି ନିଜର ଶକ୍ତି ଉପାସକତା ପ୍ରମାଣିତ କରିଛନ୍ତି । ଆଦିପର୍ବରେ ସାରଳାଙ୍କୁ ସେ ସ୍ତୁତି କରି ଲେଖିଛନ୍ତି—

"ଜୟ ଜୟ ସାରଳା ଗୋ ବିଷ୍ଣୁର ବଲ୍ଲଭୀ
ଜୟ ଜୟ ସାରଳା ଗୋ ପରମ ବୈଷ୍ଣବୀ ।"

ଶକ୍ତି ଉପାସକ ଥିବାରୁ କବି ନିଜେ କେବଳ ସାରଳା ଦେବୀଙ୍କୁ ସ୍ତୁତି କରି ନାହାନ୍ତି; ଗ୍ରନ୍ଥର ବିଭିନ୍ନ ସ୍ଥାନରେ ଆବଶ୍ୟକାନୁଯାୟୀ ବିଭିନ୍ନ ପାତ୍ର-ପାତ୍ରୀମାନଙ୍କ ମୁଖରେ ସାରଳା ଦେବୀଙ୍କର ବନ୍ଦନା କରି ଆପଣାର ଐକାନ୍ତିକ ଭକ୍ତି ଭାବନା ପ୍ରକଟିତ କରାଇଛନ୍ତି । ଆଦିପର୍ବରେ ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦାର ବିବାହ ପ୍ରସଙ୍ଗରେ କବି ଭୀଷ୍ମଙ୍କ ମୁଖରେ ଦେବୀଙ୍କ ସ୍ତୁତିଗାନ କରିଛନ୍ତି । ଏହି ସ୍ତୁତିଗାନ ମଧ୍ୟରେ ଦେବୀଙ୍କ ବିଭିନ୍ନ ରୂପ ଓ ଅବତାର ଆଦିର ବର୍ଣ୍ଣନା ସେ ପ୍ରଦାନ କରିଛନ୍ତି । ଦ୍ରୌପଦୀଙ୍କ ସ୍ୱୟମ୍ବର ପ୍ରସଙ୍ଗରେ ମଧ୍ୟ କବି ଆଦ୍ୟାଶକ୍ତି ମହାମାୟାଙ୍କ ବନ୍ଦନା ଦ୍ରୌପଦୀଙ୍କ ମୁଖରେ କରିଛନ୍ତି ।

ମହାଭାରତ ଦେବୀ ବର୍ଣ୍ଣନାରେ ପୂର୍ଣ୍ଣ । ବାରମ୍ବାର ଦେବୀଙ୍କର ସ୍ତୁତିଗାନରୁ ସ୍ୱତଃ ଜଣାଯାଏ ଯେ ସେ ଦେବୀ ଉପାସକ ଥିଲେ । କବି ଝଙ୍କଡ଼ବାସିନୀ ସାରଳାଙ୍କୁ କାକଟପୁର ମଙ୍ଗଳା, କୋଣାର୍କର ରାମଚଣ୍ଡୀ, ପୁରୀର ବିମଳା, ବାଙ୍କିର ଚର୍ଚ୍ଚିକା, ସମ୍ବଲପୁରର ସମଲାଇ, ଯାଜପୁର ବିରଜା ଓ ବାଣପୁରର ଭଗବତୀ ରୂପରେ କଳ୍ପନା କରିଅଛନ୍ତି ।

ସାରଳା ସାହିତ୍ୟରେ ଜଗନ୍ନାଥ ବୁଦ୍ଧ, କଚ୍ଛପ, ମତ୍ସ୍ୟ, ନୃସିଂହ ପ୍ରଭୃତି ଅବତାର ସଦୃଶ 'ଶକ୍ତି' ଅବତାର ମଧ୍ୟ ଗ୍ରହଣ କରିଥିବାର ସୂଚନା ମିଳେ । ଜଗନ୍ନାଥ ଅବତାରୀ ହେଲେ ହେଁ ମୋହିନୀ ରୂପ ଧାରଣ କରି ସାଗର ମନ୍ଥନ କାଳରେ ସୁଧା ବଣ୍ଟନ କରିବା ଏବଂ ମାଳତୀ କନ୍ୟା ରୂପେ ଜନ୍ମ ହୋଇ ବୈଲୋଚନ ଦୈତ୍ୟଙ୍କୁ ବିନାଶ କରିବାର ବର୍ଣ୍ଣନା ଚଣ୍ଡୀପୁରାଣରେ ଦେଖିବାକୁ ମିଳେ ।

କବି କେତେକ ସ୍ଥଳରେ ବିଷ୍ଣୁ (ମାଧବ) ଓ ଦେବୀ ଦୁର୍ଗାଙ୍କର ଏକତ୍ର ନାମୋଲ୍ଲେଖ କରି ସମନ୍ୱୟର ସଙ୍କେତ ପ୍ରଦାନ କରିଛନ୍ତି ।

"ସୁମରଣା କଲେ ମନେ ଶ୍ରୀ ଦୁର୍ଗାମାଧବ
ଅଚ୍ଛେ ଚକ୍ରଧର ତୁମେ ସୁଗତି ବାନ୍ଧବ ।" (ବିରାଟ ପର୍ବ)

"ଦଧିବାମନ ଆବର ଲକ୍ଷ୍ମୀନାରାୟଣ
ଦୁର୍ଗାମାଧବ ନାମକୁ କରିଲେ ସ୍ମରଣ ।" (ବିରାଟ ପର୍ବ)

ସାରଳା ଦାସ ଶକ୍ତି ଉପାସକ ଥିବାର ପ୍ରମାଣିତ ହେଲେହେଁ ଅନ୍ୟ ଧର୍ମକୁ ମଧ୍ୟ ସେ ସମ୍ମାନ ପ୍ରଦର୍ଶନ କରିଅଛନ୍ତି । ତାଙ୍କ ବର୍ଣ୍ଣନାରେ ଜଗନ୍ନାଥ କୃଷ୍ଣ ରୂପେ ପରିକଳ୍ପିତ ହୋଇଅଛନ୍ତି । ତାଙ୍କ ବର୍ଣ୍ଣନାନୁସାରେ କୃଷ୍ଣଙ୍କର ଦେହାବସାନ ପରେ ତାଙ୍କର ଅର୍ଦ୍ଧଦଗ୍ଧ ପିଣ୍ଡ ପୁରୁଷୋତ୍ତମରେ ଜଗନ୍ନାଥ ରୂପରେ ପୂଜା ପାଉଅଛନ୍ତି । ନାଥ ଧର୍ମ ତଥା ବୈଷ୍ଣବ ଧର୍ମରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ହିଁ ଶ୍ରେଷ୍ଠ ତତ୍ତ୍ୱ । ଏହି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ବର୍ଣ୍ଣନା ସ୍ଥାନ ପାଇଥିବା ହେତୁ ଗତାନୁଗତିକ ଉତ୍କଳୀୟ ବୈଷ୍ଣବ ଧର୍ମର ମହତ୍ତ୍ୱ ସାରଳାଙ୍କ ଗ୍ରନ୍ଥରେ ପ୍ରକାଶିତ ହୋଇଅଛି । ଏହାର ଅନୁସରଣରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ସମ୍ବନ୍ଧରେ ବହୁ ପରବର୍ତ୍ତୀ ଓଡ଼ିଆ କବି ଓ ସାଧକ ଆଲୋଚନା କରିଅଛନ୍ତି । ଜଗନ୍ନାଥଙ୍କ ବିଭିନ୍ନ ରୂପ ବର୍ଣ୍ଣନାରେ ତାଙ୍କର ବୁଦ୍ଧ ରୂପର କଳ୍ପନା ମଧ୍ୟ ସାରଳା ମହାଭାରତର କେତେକ ସ୍ଥଳରେ ଦେଖାଯାଏ ।

"କଳିଯୁଗ ଚାରିଲକ୍ଷ ବତିଶ ବରଷ ପରିଯନ୍ତେ
ବଉଦ୍ଧ ରୂପେ ପୂଜା ପାଇବେ ନୀଳ ସୁନ୍ଦର ପର୍ବତେ ।"

( ବନ ପର୍ବ )

"ସଂସାର ଜନକୁ ତାରିବା ନିମନ୍ତେ
ବଉଦ୍ଧ ରୂପରେ ବିଜେ ଜଗନ୍ନାଥେ ।" ( ମଧ୍ୟପର୍ବ )

କବି ଜଗନ୍ନାଥଙ୍କ ପରମ ବିଷ୍ଣୁ, ବଡ଼ଠାକୁରଙ୍କୁ ହର ଏବଂ ସୁଭଦ୍ରା ଦେବୀଙ୍କୁ ବ୍ରହ୍ମାଙ୍କର ଅବତାର ଭାବରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପୂଜା ପାଉଥିବାର ପରିକଳ୍ପନା କରିଅଛନ୍ତି ।

"ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମ ବିଜେ ହରି ହର ବ୍ରହ୍ମା ।" ( ମୂଷଳୀ ପର୍ବ )

ଜଗନ୍ନାଥଙ୍କର ବନ୍ଦନା ମଧ୍ୟ କବିଙ୍କ ଗ୍ରନ୍ଥରେ ବହୁସ୍ଥଳରେ ଦେଖିବାକୁ ମିଳେ । ସେଥି ମଧ୍ୟରୁ ଅଳ୍ପ କେତୋଟିର ଉଦାହରଣ ହେଉଛି—

"ଜୟତୁ ଜୟ ଜଗନ୍ନାଥ ଜୟ ବ୍ରଜସେହ୍ନା ।" (ମଧ୍ୟପର୍ବ)

"ଜୟତୁ ଜଗନ୍ନାଥ ଦୁଃଖୀ ଜନଙ୍କ ସୋଦର ।" (ମଧ୍ୟପର୍ବ)

"ଶ୍ରୀ ଜଗନ୍ନାଥଙ୍କର ପଦ୍ମପାଦେ ଲୟେ
ଶ୍ରୀ ଜଗନ୍ନାଥଙ୍କର ନାମଗୋଟି ମୂଳ ମନ୍ତ୍ର ହୋୟେ ।" (ମଧ୍ୟପର୍ବ)

"ସାରଳା ଦାସ କବି ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ ।" (ମଧ୍ୟପର୍ବ)

ବଳଭଦ୍ରଙ୍କୁ ମଧ୍ୟ କେତେକ ସ୍ଥଳରେ ସ୍ତୁତି କରିଥିବାର ଦେଖାଯାଏ । ବଳଭଦ୍ରଙ୍କୁ ହରି ରୂପେ ପରିକଳ୍ପନା କରିଥିବାରୁ ତାଙ୍କୁ ସ୍ତୁତି ନ କରିବା ଏକ ଅପରାଧ ବୋଲି ବୋଧହୁଏ ଭକ୍ତକବି ମନେ କରିଅଛନ୍ତି । ଏଣୁ ସେ ଗାଇଛନ୍ତି—

"ନମୋ ନମସ୍ତେ ରେବତୀ ରମଣ କାମପାଳ
ନମସ୍ତେ ଶକଟାଳ ଭୁଜଙ୍ଗ ମଣ୍ଡଳ ଧବଳ ।
ନମସ୍ତେ ରୁଚିର ଧବଳ ଶରୀର ନୀଳାମ୍ବର
ନମସ୍ତେ ଅନନ୍ତ ରୂପ ଦେବ ହଳଧର ।

× × ×

ନମସ୍ତେ ରୋହିଣୀ ନନ୍ଦନ ପ୍ରଲମ୍ବା ଦର୍ପଗଞ୍ଜା
ନମସ୍ତେ ବଜ୍ର ଲଙ୍ଗଳୀ ଦାରୁଣ ଦୁଃଖଭଞ୍ଜା ।"

( ମଧ୍ୟପର୍ବ-ପୃ ୩୧୭)

ମଧ୍ୟପର୍ବରେ କବି ଶ୍ରୀରାମଚନ୍ଦ୍ରଙ୍କ ମହିମା କୀର୍ତ୍ତନ କରି ଲେଖିଛନ୍ତି –

"ନମସ୍ତେ କଉଶଲ୍ୟା ନନ୍ଦନ ରଘୁବୀର
ଜାନକୀ ଛଳେଣ ଯେ ଛେଦିଲେ ଦଶଶିର ।

× × ×

ଦଶରଥଙ୍କ ନନ୍ଦନ ସେ ଅନନ୍ତ ରାମଚନ୍ଦ୍ର
କବି ସାରୋଳା ଦାସକୁ ରଖ ଆଦିକନ୍ଦ । (ପୃ ୧୦୨୫)

ଅଗ୍ନି ଉପାସନା କରିବାକୁ ମଧ୍ୟ କବି ଭୁଲି ନାହାନ୍ତି । ତାଙ୍କ ଗ୍ରନ୍ଥରେ ଅଗ୍ନିଙ୍କ ବନ୍ଦନା ଏହି ଉଠିଛି ଏହିପରି—

"ଜୟତୁ ଜୟତୁ ଦେବ ଯୋଗ ଯେ ଅନଳ
ଜୟତୁ ଜୟତୁ ଦେବ ବଡ଼ବା ଅନଳ ।

× × ×

ଜୟତୁ ଜୟତୁ ଦେବ ମହାବ୍ରହ୍ମ ଅଗ୍ନି
ଜୟତୁ ଜୟତୁ ସୁର ତରଙ୍ଗ ମହାମୁନି ।" (ଆଦିପର୍ବ-ପୃ ୨୧୯)

ସାରଳା ଦାସ ନିଜ ଗ୍ରନ୍ଥର ପ୍ରାରମ୍ଭରେ ସର୍ବ ବିଘ୍ନ ବିନାଶନ ଗଜାନନଙ୍କୁ ସ୍ତୁତି କରିଅଛନ୍ତି । ଗଣପତି ସିଦ୍ଧିଦାତା ହିସାବରେ ହିନ୍ଦୁ ସମାଜରେ ପୂଜିତ । କବି ଗାଇଛନ୍ତି—

ଜୟତୁ ବିଧି-ମଙ୍ଗଳ ବିଘ୍ନରାଜ
ଯାହାର ପ୍ରସନ୍ନେ ସିଦ୍ଧ ହୁଅଇ ସର୍ବକାର୍ଯ୍ୟ ।

ସକଳ ବିଘ୍ନବିନାଶନ ଜୟତୁ ଗଜାନନ
ମଙ୍ଗଳ ଯୋଗେଶ୍ୱର ପରମାନନ୍ଦ ପାର୍ବତୀନନ୍ଦନ ।

× × ×

ଶ୍ରୀ ବିଘ୍ନନାଥ ଚରଣେ ମୋର ସେବା
ଯେ ଶ୍ରୀ ମହାଭାରଥ କହିବି ମୋତେ ପ୍ରସନ୍ନ ହୋଇବା ।"

( ଆଦିପର୍ବ-ପୃ: ୧-୩ )

ସୂର୍ଯ୍ୟ ଦେବତାଙ୍କ ବନ୍ଦନା ମଧ୍ୟ ସାରଳା ମହାଭାରତରେ ଦେଖିବାକୁ ମିଳେ । ଶାନ୍ତି ପର୍ବରେ ସାରଳା ନିମ୍ନ ପ୍ରକାରେ ସୂର୍ଯ୍ୟ ଆରାଧନା କରିଛନ୍ତି ।

"ଜୟତୁ ଜୟ ଭାସ୍କର ଉଦୟେ ମାରତଣ୍ଡ
ଅର୍କ ବିଦାରିଣ ଜ୍ୟୋତି ଅନନ୍ତ କୋଟି ବ୍ରହ୍ମାଣ୍ଡ ।

× × ×

ଶ୍ରୀ ବରିଷ୍ଠ ନାରାୟଣଙ୍କ ଚରଣେ ଶରଣ
ବନ୍ଦୟନ୍ତି ସରଳା ଦାସ ମୋତେ କରସି ଉଦ୍ଧାରଣ ।"

(ପୃ: ୩୩-୩୪)

ଦେବଦେବ ମହାଦେବଙ୍କ ସ୍ତୁତି ମଧ୍ୟ ସାରଳା ଦାସଙ୍କ ଗ୍ରନ୍ଥରେ ସ୍ଥାନ ପାଇଅଛି । ଆଦିପର୍ବରେ ସତ୍ୟବତୀଙ୍କ ମୁଖରେ କବି ଶିବସ୍ତୁତି କରିଅଛନ୍ତି ।

"ପ୍ରଣପତ୍ୟେ ଉମାପତି ପାଦେ ମୋର ଶିର
ଅଞ୍ଚିତ କପୋଳେ ଦେଇଣ ବାମ କର ।

× × ×

ହରପାଦ ବନ୍ଦଇ ଯେବଣ ମହାଭୋଗୀ
ଅନନ୍ତ ହାରଡନ୍ତୁ ପରମ ଜ୍ଞାନ ଯୋଗୀ ।

× × ×

ତ୍ରିପୁରାଙ୍କ ପାଦ ପଙ୍କଜେ ଅଂକିତ ମୋର ଶିରେ
ଶୂଦ୍ରମୁନି ସାରୋଳ ଦାସ ପ୍ରଣମିତ ବିଶ୍ୱେଶ୍ୱରେ ।" (ପୃ: ୧୪-୧୫)

ଡଃ ଆର୍ତ୍ତିବଲ୍ଲଭ ମହାନ୍ତି କହନ୍ତି—"ସାରଳାଦାସ ଦେବୀଙ୍କର ଭକ୍ତ ହେଲେହେଁ ସୂର୍ଯ୍ୟ, ଶିବ, ବିଷ୍ଣୁ, ଜଗନ୍ନାଥ, ରାମ, ଅଗ୍ନି, ପ୍ରଭୃତିଙ୍କୁ ଏକ ଭାବରେ ସ୍ତୁତି କରିଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ଉତ୍କଳର ଧାର୍ମିକମାନେ ଏକ-ଦେଶଦର୍ଶୀ ନ ଥିଲେ । ବୈଦିକ ସୂକ୍ତର ଅର୍ଥ "ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି ।" ସେହି ପରମାତ୍ମା ପରମେଶ୍ୱର ଏକ । ତାଙ୍କୁ ପଣ୍ଡିତମାନେ ନାନା ନାମରେ କହୁଥାନ୍ତି । ପ୍ରକୃତ ଧାର୍ମିକ ଯେ ସେ ସର୍ବତ୍ର ଭଗବନ୍ତ ସତ୍ତା ଅନୁଭବ କରେ, ଯେଉଁଠାରେ ମହାଶକ୍ତି ଦେଖେ, ତାଙ୍କୁ ଭଗବାନର ପ୍ରତୀକ ରୂପେ ଗ୍ରହଣ କରେ ଏବଂ ଆତ୍ମପ୍ରସାଦ ଅନୁଭବ କରେ । ଆମ ଉତ୍କଳରେ ଧର୍ମଭାବର ସଂକୀର୍ଣ୍ଣତା ନାହିଁ । କାରଣ ଅନ୍ୟ ଦେଶରେ ଶୈବ, ଶାକ୍ତ, ବୈଷ୍ଣବମାନଙ୍କ ମଧ୍ୟରେ ଘୋର ବିବାଦ ପରିଦୃଷ୍ଟ ହୁଏ । କିନ୍ତୁ ଉତ୍କଳରେ ସେ ଭାବ ସମ୍ଭବେ ନାହିଁ, କାରଣ ଶିବ, ବିଷ୍ଣୁ, ଶକ୍ତି, ଗଣେଶ, ସୂର୍ଯ୍ୟ ଏହି ପଞ୍ଚଦେବତାଙ୍କୁ ଉତ୍କଳୀ ଜଗନ୍ନାଥଙ୍କ ରୂପରେ ଦେଖେ ଏବଂ ସେପରି ଦେଖି ସେ ପୂଜା ପ୍ରବର୍ତ୍ତନ କରିଛି ଏବଂ ସେହି ପୂଜା ପ୍ରବର୍ତ୍ତନ କରାଇ ଭାରତ ଜଗତରେ ସମ୍ମାନାସ୍ପଦ ସ୍ଥାନ ପାଇପାରିଛି । ତେଣୁ ଭାରତର ଅନ୍ୟାନ୍ୟ ପଞ୍ଚଦେବତା ଉପାସକମାନେ ଜଗନ୍ନାଥ ଦେବଙ୍କ ଶରୀରରେ ନିଜ ନିଜର ଦେବତାର ପ୍ରକାଶ ଦେଖି ପାରିଛନ୍ତି ।" ( ସାରଳା ସ୍ମରଣିକା—ପୃ: ୪ )

ଏହି ପ୍ରକାର ଉତ୍କଳୀୟ ପରମ୍ପରା ଓ ସଂସ୍କୃତିରେ ଉଦ୍‌ବୁଦ୍ଧ ହୋଇ ସାରଳା ଦାସ ତାଙ୍କ ମହାଭାରତରେ କୌଣସି ଦେବଦେବୀଙ୍କୁ ବନ୍ଦନା ନ କରି ଛାଡ଼ି ନାହାନ୍ତି । ଆଧ୍ୟାତ୍ମିକ କ୍ଷେତ୍ରରେ ସେ ହେଉଛନ୍ତି ଏହି ଉଦାର ଧର୍ମଧାରାର ଜଣେ ପ୍ରଧାନ ପରିପୋଷକ । ତାଙ୍କର ରଚନାରେ ସାଂପ୍ରଦାୟିକ ସଂକୀର୍ଣ୍ଣତା ନ ଥିବାର ଏହା ହେଉଛି ଏକ ଜ୍ୱଳନ୍ତ ଉଦାହରଣ । ମୋଟ ଉପରେ ସାରଳା ମହାଭାରତରୁ କବିଙ୍କର ଉଦାର ଧର୍ମମତର ସ୍ପଷ୍ଟ ପରିଚୟ ହିଁ ମିଳିଥାଏ । ତାଙ୍କର ସଂସ୍କାରବାଦୀତା ଏବଂ ସର୍ବଧର୍ମ ସମନ୍ୱୟବାଦିତା ତାଙ୍କୁ ଚିରସ୍ମରଣୀୟ କରି ରଖିଥିବ ।

## କବିଙ୍କ ପୁରାଣ ରଚନାର କ୍ରମ

ଶୂଦ୍ରମୁନି ସାରଳା ଦାସ ସାଧାରଣତଃ ମହାଭାରତକାର ଭାବରେ ପରିଚିତ । ମହାଭାରତ ଭଳି ଆକାରରେ ବୃହତ୍ ନ ହେଲେ ମଧ୍ୟ ତାଙ୍କର ଆଉ କେତେଗୋଟି ପୁରାଣ ଅଛିଅଛି । ସେ ଶାକ୍ତ ଥିବାରୁ ଶକ୍ତି-ପ୍ରଧାନ ବିଷୟବସ୍ତୁ ଗ୍ରହଣ କରି, ବିଲଙ୍କା ରାମାୟଣ ଓ ଚଣ୍ଡୀ ପୁରାଣ ନାମକ ଦୁଇଟି ଗ୍ରନ୍ଥ ରଚନା କରିଅଛନ୍ତି; କିନ୍ତୁ ଏହି ପୁରାଣଗୁଡ଼ିକର କ୍ରମ ସମ୍ବନ୍ଧରେ ବିଭିନ୍ନ ସମାଲୋଚକ ଭିନ୍ନ ଭିନ୍ନ ମତ ଦେଉଥିଲେ

ମଧ୍ୟ କବି ପ୍ରଥମେ ରାମାୟଣ, ଦ୍ୱିତୀୟରେ ମହାଭାରତ ଓ ତୃତୀୟରେ ଶ୍ରୀଭାଗବତ ରଚନା କରିଥିବାର ଜଣାଯାଏ । କବି ଏ ସମ୍ପର୍କରେ ଚଣ୍ଡୀପୁରାଣରେ ଲେଖିଛନ୍ତି —

ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲକ୍ଷନ କଲି ଶିଶୁ ଭାଗବତ । *( ପୃ:-୩୫ )

ଏଠାରେ ରାମାୟଣ ଅର୍ଥ 'ବିଲଙ୍କା ରାମାୟଣ', ଭାରତ ଅର୍ଥ 'ମହାଭାରତ' ଏବଂ ଶିଶୁଭାଗବତ ଅର୍ଥ 'ଦେବୀ ଭାଗବତ' ବା 'ଚଣ୍ଡୀ ପୁରାଣ' । ଏହା ବ୍ୟତୀତ ଏହି କବିଙ୍କର 'ଲକ୍ଷ୍ମୀ ନାରାୟଣୀ ବଚନିକା' ନାମକ ଏକ କ୍ଷୁଦ୍ର ଗ୍ରନ୍ଥର ସନ୍ଧାନ ଏବେ ମିଳିଅଛି, ଯାହାର କଳେବର ମାତ୍ର ନଅ ପୃଷ୍ଠା ବିଶିଷ୍ଟ । ଗ୍ରନ୍ଥ ରଚନାର କାଳ ସମ୍ବନ୍ଧରେ କିଛି ସୂଚନା ଏଥିରୁ ମିଳେ ନାହିଁ । କେବଳ ଗ୍ରନ୍ଥର ଶେଷ ଭାଗର ଭଣିତା ଶୂଦ୍ରମୁନି "ସାରୋଳ ଦାସକୁ ଗତି ମୁକତି ଦେବା"ରୁ ଏହା ସାରଳା ଦାସଙ୍କ ରଚନା ବୋଲି ଧରାଯାଏ ।

ପ୍ରଥମେ ରାମାୟଣ ରଚନା କରି ପରେ ମହାଭାରତ ରଚନା କରିବାରେ ସାରଳା ଦାସ କେବଳ ମାତ୍ର ଦୃଷ୍ଟାନ୍ତ ନୁହନ୍ତି । ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟରେ ମଧ୍ୟ ଏହି ରୀତି ଅନୁସୃତ ହୋଇଥିବାର ଦେଖାଯାଏ । ତେଲୁଗୁ ସାହିତ୍ୟର ଜନୈକ ପ୍ରାଚୀନ କବି ତିକ୍‌କଣ ମହାଭାରତ ରଚନାରେ ପ୍ରବୃତ୍ତ ହେବା ପୂର୍ବରୁ ରାମାୟଣ ରଚନା କାର୍ଯ୍ୟ ସମାପ୍ତ କରିଥିବାର ଜଣାଯାଏ । ଏଣୁ ଅନୁମିତ ହୁଏ, ସେ କାଳରେ ମହାଭାରତ ରଚନା କରିବା ପୂର୍ବରୁ ରାମାୟଣ ରଚନା କରିବାର ଏକ ବିଧି ବା ପରମ୍ପରା ଥିଲି । ଆହୁରି ମଧ୍ୟ ଭାରତର ଅନ୍ୟ ପ୍ରାଚୀନ ପ୍ରାଦେଶିକ ସାହିତ୍ୟର ଇତିହାସ ଆଲୋଚନାରୁ ଜଣାଯାଏ, ସର୍ବତ୍ର ପ୍ରଥମେ ରାମାୟଣ ରଚିତ ହୋଇଅଛି । ଆସାମୀର ମାଧବ କନ୍ଦଳୀ, ବଙ୍ଗଳାର କୃତ୍ତିବାସ, ହିନ୍ଦୀର ତୁଳସୀ ଦାସ, ମୈଥିଳୀର ବିଦ୍ୟାପତି, ଗୁଜୁରାଟୀର ନରସିଂହ ମେହେନ୍ତା ପ୍ରଭୃତି କବି ରାମାୟଣ ରଚନା କରି ଆଦିକବିର ଗୌରବ ଲାଭ କରି ଅଛନ୍ତି । ପରିପେକ୍ଷୀରେ ବିଗୃର କଲେ ଜଣାଯାଏ, ସମ୍ଭବତଃ ସାରଳା ଦାସ ପ୍ରଚଳିତ ବିଧିକୁ ଉପେକ୍ଷା ନ କରି ପ୍ରଥମେ ରାମାୟଣ ରଚନା ସମାପ୍ତ କରିବା ପରେ ମହାଭାରତ ଓ ଭାଗବତ ରଚନା କରିଥିଲେ ।

ଏସବୁ ଗ୍ରନ୍ଥ ବ୍ୟତୀତ ସାରଳା ଦାସଙ୍କର ଅନ୍ୟ ଏକ ପୁରାଣ ଗ୍ରନ୍ଥ ଥିବାର ଜଣାଯାଇଛି । ଏହାର ନାମ 'ବଚନ ରାମାୟଣ' ଏବଂ ଏହା ହେଉଛି ସଦ୍ୟ ଆବିଷ୍କୃତ ଏକ ଗ୍ରନ୍ଥ । ଏହାକୁ ସାରଳାଙ୍କ ପ୍ରଥମ ରଚନା ବୋଲି ଆଲୋଚକ ଅଧ୍ୟାପକ ଶ୍ରୀ ରଘୁନାଥ ପାଢ଼ୀ ଶର୍ମା ଯୁକ୍ତି ପ୍ରଦର୍ଶନ କରନ୍ତି । ସେ କହନ୍ତି ଯେ କବିଙ୍କ ବିଲଙ୍କା

* ଓଡ଼ିଶା ଜଗନ୍ନାଥ କମ୍ପାନୀ କର୍ତ୍ତୃକ ପ୍ରକାଶିତ ଚଣ୍ଡୀ ପୁରାଣ (୧୯୭୨)

ରାମାୟଣ, ମହାଭାରତ ଓ ଚଣ୍ଡୀ ପୁରାଣରେ ସାରଳା ଚଣ୍ଡୀ ବା ସାରଳା ଦେବୀଙ୍କର ବନ୍ଦନା ସହିତ ଶୂଦ୍ରମୁନି ଉପାଧିର ବ୍ୟବହାର ଦେଖିବାକୁ ମିଳେ; ମାତ୍ର ଏ ଗ୍ରନ୍ଥରେ ସାରଳାଙ୍କ ବନ୍ଦନା ଆଦୌ ଦେଖାଯାଏ ନାହିଁ ବା ଶୂଦ୍ରମୁନି ସାରଳା ଆଦିର ପରିଚୟ ମିଳେ ନାହିଁ । ଗ୍ରନ୍ଥର ଆରମ୍ଭରେ କବି ପ୍ରଥମେ ଗଣେଶ ତାପରେ ବାସୁଦେବଙ୍କ ଗୁଣ କୀର୍ତ୍ତିନ କରିଅଛନ୍ତି । ଗ୍ରନ୍ଥ ମଧ୍ୟସ୍ଥ ବିଭିନ୍ନ ଅଧ୍ୟାୟର ଶେଷ ଭାଗରେ ସାରଳା ଦାସ, ଶ୍ରୀଧର, ମଧୁସୂଦନ, ମାଧବ, ନାରାୟଣ, ଉମାପତି, କୃଷ୍ଣ ଓ ଗୋପାଳଙ୍କର ବନ୍ଦନା କରିଅଛନ୍ତି । ସାରଳାଙ୍କ ବନ୍ଦନା ନ ଥିବା ସମ୍ପର୍କରେ ସେ ମତ ଦିଅନ୍ତି ଯେ କବି ପ୍ରଥମେ ସାରଳାଙ୍କ ଭକ୍ତ ନ ଥିବା ସମୟରେ ଏହି ଗ୍ରନ୍ଥ ରଚନା କରିଥିଲେ; ମାତ୍ର ପରବର୍ତ୍ତୀ ସମୟରେ ସେ ଶକ୍ତି ଉପାସନାର ପରିଚୟ ଦେଇଅଛନ୍ତି । ପୁନଶ୍ଚ ଏହି ଗ୍ରନ୍ଥରେ ଥିବା ଏକବିଂଶ ଅଧ୍ୟାୟ ମଧ୍ୟରୁ ଏଗାରଟି ଅଧ୍ୟାୟର ଭଣିତାରେ କବି ନିଜକୁ ସିଦ୍ଧେଶ୍ୱର ଦାସ ଭାବେ ପରିଚିତ କରାଇଛନ୍ତି । *

ଅଧ୍ୟାପକ ପାଢ଼ୀ ପୁନଶ୍ଚ କହନ୍ତି ଯେ ଚଣ୍ଡୀ ପୁରାଣର ପୂର୍ବୋକ୍ତ ଉଦ୍ଧୃତିରେ ଥିବା 'ଶ୍ରୀରାମାୟଣ'କୁ ଏଠାରେ ଉଭୟ ବିଚିତ୍ର ରାମାୟଣ ଓ ବିଲଙ୍କା ରାମାୟଣ ଭାବେ ବୁଝିବାକୁ ପଡ଼ିବ । ସେ ଅନୁମାନ କରନ୍ତି ଯେ ସମ୍ଭବତଃ ଦାଣ୍ଡି ବୃତ୍ତରେ ଲିଖିତ ସାରଳାଙ୍କ ମୂଳ ଚଣ୍ଡୀ ପୁରାଣରେ ଏହି ପଦଟି ଏହିପରି ଥିଲା—

"ପ୍ରଥମେ ବିଚିତ୍ର ବିଲଙ୍କା ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିଶୁ ଭାଗବତ ।"

ମାତ୍ର ମୂଳ ବୃତ୍ତକୁ ଭାଙ୍ଗି ଚଉଦ ଅକ୍ଷରୀ ବୃତ୍ତରେ ପରିଣତ କରି ପୁସ୍ତକାକାରରେ ପ୍ରକାଶ କରିବା ସମୟରେ ପ୍ରଥମ ଧାଡ଼ିଟି ଚଉଦ ଅକ୍ଷରରୁ ବେଶୀ ହେଉଥିବାରୁ ସମ୍ପାଦକମାନେ 'ବିଲଙ୍କା' ଶବ୍ଦଟିକୁ କାଟି ଦେଇଅଛନ୍ତି । କିନ୍ତୁ ଏ ସମ୍ବନ୍ଧରେ ଅଧିକ ଆଲୋଚନାର ଅଭାବରୁ, ଅଧ୍ୟାପକ ପାଢ଼ୀଙ୍କ ଯୁକ୍ତି ଅନୁମାନ ଭିତ୍ତିକ ହୋଇଥିବାରୁ ଏବଂ ସ୍ୱୟଂ ସାରଳା ଦାସ ଏ ସମ୍ବନ୍ଧୀୟ କୌଣସି ନିର୍ଦ୍ଦିଷ୍ଟ ସୂଚନା ନିଜ ଗ୍ରନ୍ଥ ସମୂହରେ ଦେଇ ନ ଥିବାରୁ, ଏହି ଗ୍ରନ୍ଥଟି ସାରଳା ଦାସଙ୍କ ଦ୍ୱାରା ରଚିତ ବୋଲି ଗ୍ରହଣ କରିନେବା ଠିକ୍ ହେବ ନାହିଁ । ପୁନଶ୍ଚ ସିଦ୍ଧେଶ୍ୱର ଦାସଙ୍କ ନାମରେ ହୋଇଥିବା ଭଣିତା କୌଣସି ପ୍ରକ୍ଷେପକଙ୍କ ଶଠତା ମଧ୍ୟ ହୋଇପାରେ କିମ୍ବା ଏହି ନାମଧାରୀ ଅନ୍ୟ କୌଣସି ପରବର୍ତ୍ତୀ କାଳୀନ କବିଙ୍କର ମଧ୍ୟ ହୋଇ-ପାରେ । ସୁତରାଂ ବର୍ତ୍ତମାନ କେବଳ 'ବିଲଙ୍କା ରାମାୟଣ', 'ମହାଭାରତ', 'ଚଣ୍ଡୀପୁରାଣ' ଏବଂ 'ଲକ୍ଷ୍ମୀ ନାରାୟଣ ବଚନିକା'—ଏହି ଚାରିଖଣ୍ଡ ଗ୍ରନ୍ଥକୁ ସାରଳା ଦାସଙ୍କ ରଚନା ଭାବେ ଗ୍ରହଣ କରି ଏଗୁଡ଼ିକ ଉପରେ ଆଲୋଚନା କରାଯାଇପାରେ ।

* ନବରବି—ପ୍ରଥମବର୍ଷ – ପଞ୍ଚମ ସଂଖ୍ୟା—ନଭେମ୍ବର, ୧୯୬୦

## ବିଲଙ୍କା ରାମାୟଣ

ସାରଳାଙ୍କ ଗ୍ରନ୍ଥ ରଚନାର କ୍ରମ ପୂର୍ବରୁ ଆଲୋଚିତ ହୋଇଅଛି । ଏହି ଆଲୋଚନା ଅନୁଯାୟୀ ସେ ପ୍ରଥମେ 'ବିଲଙ୍କା ରାମାୟଣ' ରଚନା କରିଥିଲେ । ଏହି ଗ୍ରନ୍ଥଟି ଆକାରରେ କ୍ଷୁଦ୍ର । କବିଙ୍କର ଏହା ପ୍ରଥମ ରଚନା ହୋଇଥିବାରୁ ଏହାର କଲେବର ବୋଧହୁଏ ତାଙ୍କ ପରବର୍ତ୍ତୀ ରଚନା ମହାଭାରତ ଭଳି ବିଶାଳ ନ ହୋଇ କ୍ଷୁଦ୍ର ହୋଇଅଛି ।

'ବିଲଙ୍କା ରାମାୟଣ' ଆଲୋଚନା ପ୍ରାରମ୍ଭରେ ପ୍ରଶ୍ନ ଉଠେ, ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିବା ସଂସ୍କୃତ ବାଲ୍ମୀକି ରାମାୟଣର ଅନୁସରଣରେ ଓଡ଼ିଆ ରାମାୟଣ ରଚନା ନ କରି, ସାରଳା କାହିଁକି ଅପେକ୍ଷାକୃତ କମ୍ ଜନପ୍ରିୟ ବାଲ୍ମୀକିକୃତ ଅଦ୍ଭୁତ ରାମାୟଣର ପ୍ରଭାବରେ ପ୍ରଭାବିତ ହୋଇ ବିଲଙ୍କା ରାମାୟଣ ରଚନା କଲେ ? ସମ୍ଭବତଃ ଏହାର କାରଣ ହୋଇପାରେ ଯେ ସାରଳା ଦାସ ଥିଲେ ଶକ୍ତି ଉପାସକ । ସେ ଉଭୟ ରାମାୟଣର କଥାବସ୍ତୁ ଶ୍ରବଣ କରିଥିବେ ବା ଅଧ୍ୟୟନ କରିଥିବେ । ଜଣେ ଶାକ୍ତ ହିସାବରେ ତାଙ୍କର ମନ ବିଲଙ୍କା ରାମାୟଣ ପ୍ରତି ବିଶେଷ ଆକୃଷ୍ଟ ହୋଇଥିବ । ଦ୍ୱିତୀୟତଃ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ପ୍ରଥମେ ରାମାୟଣ ରଚିତ ହେବା ପରେ ମହାଭାରତ ରଚିତ ହେବାର ଦେଖାଯାଏ । ଏଥିରୁ ଅନୁମିତ ହୁଏ ଯେ ରାମାୟଣ ରଚନା କରିବା ମହାଭାରତ ରଚନା କରିବା ପ୍ରାଚୀନ କାଳର ଏକ ବିଧି ବା ପରମ୍ପରା ଥିଲା ଏବଂ କବି ଏହି ବିଧି ବା ପରମ୍ପରା ପ୍ରତି ସମ୍ମାନ ଦେଖାଇ ପ୍ରଥମେ ରାମାୟଣର ରଚନା କାର୍ଯ୍ୟ ହାତକୁ ନେଇଥିଲେ ।

## ଅଦ୍ଭୁତ ରାମାୟଣ ଓ ବିଲଙ୍କା ରାମାୟଣ :

ସଂସ୍କୃତ ଅଦ୍ଭୁତ ରାମାୟଣ ଓଡ଼ିଆରେ ଅନୂଦିତ ହୋଇ ପ୍ରକାଶ ପାଇଥିଲା ୧୯୦୧ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା । ଏହାର ଅନୁବାଦକ ଥିଲେ କପିଳେଶ୍ୱର ବିଦ୍ୟାଭୂଷଣ । ବିଲଙ୍କା ରାମାୟଣ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ଏହି ଗ୍ରନ୍ଥର ସପ୍ତଦଶ ସର୍ଗରୁ ଚତୁର୍ବିଂଶ ସର୍ଗ ମଧ୍ୟରେ । ଏହାର ବିଷୟବସ୍ତୁ ଏହିପରି—

ଲଙ୍କା ଜୟ କରି ରାମଚନ୍ଦ୍ର, ସୀତା ଓ ଲକ୍ଷ୍ମଣ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରିଅଛନ୍ତି । ସିଂହାସନାରୋହଣ କାଳରେ ଆଶୀର୍ବାଦ କରିବା ଉଦ୍ଦେଶ୍ୟରେ ଉପସ୍ଥିତ ଥିବା ମୁନିଋଷିଗଣ ବାହୁ ବଳରେ ପ୍ରବଳ ପରାକ୍ରମୀ ଲଙ୍କାଧୀଶ୍ୱର ରାବଣକୁ ନିହତ କରିଥିବାରୁ ରାମଚନ୍ଦ୍ରଙ୍କ ଜୟଗାନ କରିଅଛନ୍ତି । ମାତ୍ର ସତୀ ସୀତା ଏପରି ପ୍ରଶଂସାରେ ସନ୍ତୁଷ୍ଟା ନ ଥିବାର ଜାଣିପାରି ମୁନିଗଣ ବିସ୍ମୟ ପ୍ରକାଶ କରିଅଛନ୍ତି । ଦଶମସ୍ତକ ବିଶିଷ୍ଟ ଏକ ରାବଣକୁ ନିହତ କରିବା ଏକ ଗୌରବାବହ କାର୍ଯ୍ୟ ନୁହେଁ ବୋଲି ସୀତା ମତ ପ୍ରକାଶ କରିଅଛନ୍ତି । ତାପରେ ଅବିବାହିତା ଥିବା ଅବସ୍ଥାରେ ସେ

ଶ୍ରବଣ କରିଥିବା ଏକ କାହାଣୀ ବର୍ଣ୍ଣନା କରି କହିଅଛନ୍ତି ଯେ ପୁଷ୍କର ଦ୍ୱୀପରେ ବିଶ୍ରବାଙ୍କ ପତ୍ନୀ ନଇକେଶୀ ଦଶବଦନ ରାବଣ ଓ ସହସ୍ର ବଦନ ରାବଣଙ୍କୁ ଯମଜ ସନ୍ତାନ ଭାବେ ପ୍ରସବ କଲେ । ପୁନି ଦୁହିଁଙ୍କି ଅତି ଉଚ୍ଚ ସ୍ୱରରେ ରାବ କରିବାରୁ ସେମାନଙ୍କ ନାମକରଣ କରାଗଲା ରାବଣ । କନିଷ୍ଠ ରାବଣ ବା ଦଶଶିର ରାବଣ କୁବେର ନିର୍ମିତ ସ୍ୱର୍ଣ୍ଣ ଲଙ୍କାରେ ରାଜୁତି କଲା ଏବଂ ଜ୍ୟେଷ୍ଠ ରାବଣ ବା ସହସ୍ରଶିର ରାବଣ ବାହୁବଳରେ ପୁଷ୍କର ଦ୍ୱୀପ ଅଧିକାର କରି ସେଠାରେ ରାଜା ହେଲା । ସେ ବର୍ତ୍ତମାନ ଜୀବିତ ଅଛି ଏବଂ ତା'ର ପରାକ୍ରମରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିପୁର ଥରହର ହେଉଅଛି । ଏହି ରାବଣକୁ ଯଦି ଶ୍ରୀରାମ ସ୍ୱବାହୁ ବଳରେ ନିହତ କରି ପାରିବେ, ତେବେ ତାଙ୍କୁ ପ୍ରକୃତ ବୀରର ସମ୍ମାନ ପ୍ରଦର୍ଶନ କରିବା ବିଧେୟ ହେବ ।

ଏପରି ଏକ ସହସ୍ରଶିରା ରାବଣ ବିଷୟରେ ଶ୍ରୀରାମ ପ୍ରଥମ ଥର ଶୁଣିଛନ୍ତି । ସେ ତାକୁ ନିପାତ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ଯୁଦ୍ଧକୁ ବାହାରିବା ପୂର୍ବରୁ ସେ ବିଭୀଷଣ ଓ ସୁଗ୍ରୀବଙ୍କୁ ନିମନ୍ତ୍ରଣ କରିଛନ୍ତି । ଅତି ଆଶ୍ଚର୍ଯ୍ୟର କଥା, ସହସ୍ରଶିରା ରାବଣ ସମ୍ପର୍କରେ ବିଭୀଷଣ ମଧ୍ୟ କିଛି ଜାଣି ନ ଥିଲେ । ପୁଷ୍ପକ ବିମାନକୁ ସେ ସ୍ମରଣ କରି ଯୁଦ୍ଧର ଆୟୋଜନ କରିଛନ୍ତି । ରାମ, ସୀତା ଓ ଅନ୍ୟାନ୍ୟମାନେ ପୁଷ୍ପକ ବିମାନ ଆରୋହଣ କରି ପୁଷ୍କର ଦ୍ୱୀପରେ ପହଞ୍ଚିବା ମାତ୍ରେ ଉଭୟ ସେନାଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଛି ଏକପକ୍ଷରେ ରାମଚନ୍ଦ୍ରଙ୍କ ସହିତ କପିସେନା ଏବଂ ଅନ୍ୟ ପକ୍ଷରେ ସହସ୍ରଶିରା ସହିତ ରାକ୍ଷସ ସୈନ୍ୟଗଣ ।

ଯୁଦ୍ଧରେ ସହସ୍ରଶିରା ରାବଣ କେବଳ ପୁଷ୍ପକ ରଥରେ ରାମ ଓ ସୀତାଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ପବନାସ୍ତ୍ରରେ ଉଡ଼ାଇ ନେଇ ଅଯୋଧ୍ୟାରେ ନିକ୍ଷେପ କରିଛି । ତାପରେ ତା'ର କ୍ରୋଧ ବହୁଗୁଣିତ ହୋଇଛି । ସେ ସହସ୍ରାୟୁର ବାଣ ପ୍ରୟୋଗ କରି ରାମଚନ୍ଦ୍ରଙ୍କୁ ପୁଷ୍ପକ ରଥରେ ମୃତବତ୍ ପତିତ କରିଅଛି । କ୍ଷୁରବାଣର ଜ୍ୟୋତି ପାତାଳ-ପୁରୀରେ ମଧ୍ୟ ପ୍ରକାଶିତ ହୋଇଅଛି । ରାମଚନ୍ଦ୍ରଙ୍କର ଏତାଦୃଶ ଅବସ୍ଥା ଅବଲୋକନରେ ମୁନିଗଣ ତାଙ୍କୁ ରକ୍ଷା କରିବା ନିମନ୍ତେ ସୀତାଙ୍କୁ ପ୍ରାର୍ଥନା କରିଅଛନ୍ତି । ସୀତା ଭୟଙ୍କର ମୂର୍ତ୍ତି ଧାରଣ କରି ସହସ୍ର ସହସ୍ର ସଂଖ୍ୟାରେ ମାତୃଗଣ ସୃଷ୍ଟି କରିଅଛନ୍ତି ଏବଂ ଖଡ୍ଗ ସାହାଯ୍ୟରେ ସହସ୍ରଶିରାର ସହସ୍ର ମସ୍ତକ ଛେଦନ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ରାକ୍ଷସଙ୍କୁ ନିଧନ କରି ତା'ର ବଂଶ ଲୋପ କରିଛନ୍ତି ।

ଯୁଦ୍ଧଭୂମିରେ ସୀତାଙ୍କର ଉଗ୍ରମୂର୍ତ୍ତି ଦେଖି ତ୍ରିପୁର ଧ୍ୱଂସ ହୋଇଯିବା ଭୟରେ ଦେବତାଗଣ ଶିବଙ୍କୁ ପ୍ରାର୍ଥନା କରିଛନ୍ତି । ଶିବ ଶବ ରୂପେ ଶକ୍ତିଙ୍କ ପାଦତଳେ ଆଶ୍ରୟ ଗ୍ରହଣ କରିଛନ୍ତି । ଏହି ସମୟରେ ରାମଚନ୍ଦ୍ର ବ୍ରହ୍ମାଙ୍କ ସ୍ପର୍ଶରେ ମୋହ ନିଦ୍ରା ତ୍ୟାଗ କରି ଧନୁଧାରଣ ପୂର୍ବକ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇଛନ୍ତି; ମାତ୍ର ସେ ଆଶ୍ଚର୍ଯ୍ୟ ହୋଇ ଦେଖିଛନ୍ତି ଯେ ରଣଭୂମିରେ କେବଳ ଗୋଟିଏ ବିକଟାଳ ନାରୀ ମୂର୍ତ୍ତି ନର୍ତ୍ତନ

କରୁଅଛୁ । ଏହି ଭୟଙ୍କର କଙ୍କାଳୀ ରୂପ ଦର୍ଶନରେ ତାଙ୍କ-ହାତରୁ ଧନୁ ଖସି ପଡ଼ୁଛି । ବ୍ରହ୍ମା ତାଙ୍କୁ ବୁଝାଇ ଦେଇଅଛନ୍ତି ଯେ ଏହି କଙ୍କାଳୀ ମୂର୍ତ୍ତି ହେଉଛନ୍ତି ସ୍ୱୟଂ ସୀତା ଦେବୀ ଏବଂ ସେ (ରାମଚନ୍ଦ୍ର) ଅଜ୍ଞାନ ହୋଇ ପଡ଼ିବାପରେ ସେ ସହସ୍ରଶିରାକୁ ବିନାଶ କରିଛନ୍ତି । ସତୀ ସୀତାଙ୍କ ଶକ୍ତିରେ ରାମଚନ୍ଦ୍ର ବଳୀୟାନ ଏବଂ ସୀତା ବ୍ୟତିରେକ ସେ ଶକ୍ତିହୀନ, ଏହା ବ୍ରହ୍ମାଦି ଦେବଗଣ ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି ।

ବର୍ତ୍ତମାନ ସାରଳାଙ୍କ 'ବିଲଙ୍କା ରାମାୟଣ'ର ବିଷୟବସ୍ତୁ ଆଲୋଚନା କରାଯାଇପାରେ । ଶିବ ପାର୍ବତୀଙ୍କ କଥୋପକଥନ ମାଧ୍ୟମରେ କଥାବସ୍ତୁ ଆରମ୍ଭ । ପାର୍ବତୀ ଯୋଡ଼ ହସ୍ତରେ ଶିବଙ୍କୁ 'ବିଲଙ୍କା ରାମାୟଣ' ଚରିତ ବର୍ଣ୍ଣନ କରିବା ନିମନ୍ତେ-ଅନୁରୋଧ କରିଛନ୍ତି । ଅନୁରୋଧ ରକ୍ଷାକରି ଶିବ କହିଛନ୍ତି—

ଲଙ୍କା ବିଜୟ କରି ରାମଚନ୍ଦ୍ର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରିଅଛନ୍ତି । ଶୁଭ-ଲଗ୍ନାନୁଯାୟୀ ତାଙ୍କ ଅଭିଷେକୋତ୍ସବ ସ୍ଥିର ହୋଇଅଛି ଏବଂ ଏହା ବଶିଷ୍ଠ ମହର୍ଷିଙ୍କ ପରାମର୍ଶକ୍ରମେ କରାଯାଇଛି । ଶ୍ରୀରାମ ଓ ସୀତାଙ୍କୁ ସୁବେଶ କରାଯାଇ ଅଭିଷେକ ଆସ୍ଥାନ ଉପରକୁ ନିଆଯାଇଅଛି । ଶ୍ରୀରାମ ସୀତାଙ୍କୁ କୋଳରେ ଧରି ଆସ୍ଥାନ ଉପରେ ବସିଛନ୍ତି । ଏହି ସମୟରେ ସ୍ୱର୍ଗରେ ବ୍ରହ୍ମା, ବୃହସ୍ପତି, ବରୁଣ, କୁବେର, ଅଗ୍ନି ଆଦି ଦେବତାଗଣଙ୍କ ଗହଣରେ ସୁରପତି ଇନ୍ଦ୍ର ଉପସ୍ଥିତ ଥିବା ସମୟରେ ଅଯୋଧ୍ୟାରେ ରାମାଭିଷେକ ଉପଲକ୍ଷେ ହେଉଥିବା ଆନନ୍ଦ କୋଳାହଳ ଶୁଣି ପାରିଛନ୍ତି ଏବଂ ଅଯୋଧ୍ୟା ଆସି ରାମାଭିଷେକ ଦେଖିବା ପାଇଁ ସ୍ଥିର କରିଛନ୍ତି । ଏହି ସମୟରେ କ୍ରନ୍ଦନରତ ଯମ ସେଠାରେ ଉପସ୍ଥିତ ହୋଇ ଇନ୍ଦ୍ରଙ୍କୁ ନିଜର ଦୁଃଖ ଜଣାଇଛନ୍ତି । କ୍ରନ୍ଦନର କାରଣ ସ୍ୱରୂପ ସେ କହିଛନ୍ତି ଯେ ରାକ୍ଷସ ସହସ୍ରଶିରାର ବାଡ଼ିତାଟି ଖଟିବାକୁ ( ମାହାର କାର୍ଯ୍ୟ କରିବାକୁ ) ତାଙ୍କୁ ପଡ଼ୁଛି । ବ୍ରହ୍ମାଙ୍କ ବରରେ ବଳୀୟାନ ହୋଇ ସେ ଦେବତାମାନଙ୍କୁ ବହୁ ଯାତନା ଦେଉଛି । ଏହା ଶୁଣି ବ୍ରହ୍ମା କହିଛନ୍ତି—

"ବ୍ରହ୍ମା ବୋଇଲେ ମୋର ନାହିଁ ତ ଆୟତ୍ତ
ସହସ୍ରଶିର ରାବଣ ଲକ୍ଷଶିରା ପୁତ୍ର ।
ବଳେ ମହାବଳୀୟାର ଦନୁଜ ଅଟଇ
ସର୍ବ ଦେବତାଙ୍କୁ ସେହି ପାଦରେ ଖଟାଇ ।
ମୁହିଁ ଯାଇ ବେଦ ପଢ଼େ ପ୍ରଭାତ କାଳରେ
ମଢ଼ୀଅଳ ଲୁଗାକାଚେ କୁବେର ତା ଘରେ ।
ବୃହସ୍ପତି ପାଞ୍ଜି ପଢ଼େ ଯମ ବାଡ଼ିତାଟି
ଅପସରାମାନେ ଥାନ୍ତି ନୃତ୍ୟଗୀତେ ଖଟି ।" * ( ପୃ-୭ )

* ଏହି ଆଲୋଚନାରେ ଉଦ୍ଧୃତ ପଙ୍କ୍ତିଗୁଡ଼ିକ ଓଡ଼ିଶା ଜଗନ୍ନାଥ କମ୍ପାନୀ କର୍ତ୍ତୃକ ପ୍ରକାଶିତ 'ବିଲଙ୍କା ରାମାୟଣ'ରୁ ଗୃହୀତ ।

ଏହି ଦୁଷ୍ଟମତି ପ୍ରବଳ ପରାକ୍ରମୀ ରାକ୍ଷସର ନିଧନ ନିମନ୍ତେ ଉପାୟ ଚିନ୍ତା କରାଯାଇଛି । ଶେଷରେ ସ୍ଥିର ହୋଇଛି ଯେ ରାମଚନ୍ଦ୍ରଙ୍କ ବିନା ତାକୁ ମାରିବା ପାଇଁ କେହି ସମର୍ଥ ନୁହନ୍ତି; କିନ୍ତୁ ଏହା ଏକ କଠିନ ବିଷୟ । ରାମଚନ୍ଦ୍ରଙ୍କୁ କିପରି ଏ କାର୍ଯ୍ୟରେ ନିଯୁକ୍ତ କରାଯିବ ? ସେ ରାଜା ହୋଇ ରାଜକାର୍ଯ୍ୟରେ ବ୍ୟସ୍ତ ରହିବା ପରେ ତାଙ୍କ ଦ୍ୱାରା ଏ କାର୍ଯ୍ୟ କରାଇବା ମଧ୍ୟ କଷ୍ଟସାଧ୍ୟ ହୋଇ ପଡ଼ିବ । ଏଣୁ ଯେତେ ଶୀଘ୍ର ସମ୍ଭବ ଅଭିଷେକ ପୂର୍ବରୁ ରାମଚନ୍ଦ୍ରଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କରିବାକୁ ପଡ଼ିବ । ସୀତାଙ୍କ ଦ୍ୱାରା ରାମଚନ୍ଦ୍ରଙ୍କୁ ଭର୍ତ୍ସିତ କରାଇ ଏ କାର୍ଯ୍ୟ ସାଧନ କରିବା ନିମିତ୍ତ ସ୍ଥିର ହୋଇଛି ; ମାତ୍ର ପତିବ୍ରତା ସୀତା କ'ଣ କେବେହେଲେ ପତି ଦେବତାଙ୍କୁ ଅପମାନିତ କରିପାରିବେ ? ଏହାର ସମାଧାନ ସ୍ୱରୂପ ବ୍ରହ୍ମା ଖଳଦୁର୍ବଳଙ୍କୁ ପଠାଇଛନ୍ତି ସୀତାଙ୍କ କଣ୍ଠରେ ଅବସ୍ଥାନ କରିବା ନିମନ୍ତେ । ଖଳ ଜାନକୀଙ୍କ କଣ୍ଠରେ ବସିଛି ଏବଂ ଦୁର୍ବଳ ଶ୍ରୀରାମଙ୍କ କଣ୍ଠରେ ବସି ଅଯୋଧ୍ୟା ନଗର ଜନସାଧାରଣଙ୍କୁ ବିମୋହିତ କରିଅଛି । ଅଭିଷେକ ଅବସରରେ ବଶିଷ୍ଠଙ୍କ ଆଗରେ ରାମଚନ୍ଦ୍ର ରାବଣ ନିଧନ ଓ ଲଙ୍କା ବିଜୟ ସମ୍ପର୍କରେ ସ୍ୱବୀରତ୍ୱ ବର୍ଣ୍ଣନା କରିବା ସମୟରେ ସୀତା ତାଚ୍ଛଲ୍ୟ କରି କହିଛନ୍ତି—

"ଜାନକୀ କହିଲେ ପ୍ରଭୁ ପ୍ରତିଜ୍ଞା ନ କର<br>
ମୁହିଁ ନ ମାଇଲେ କାହିଁ ମରନ୍ତା ଅସୁର ।

ତୁମେ କିବା କଷ୍ଟ ପାଇ ଅଛ ରଘୁରାଣ<br>
ଘୋର କଷ୍ଟ ପାଇଣ ମୁଁ ମାଇଲି ରାବଣ ।

ଏମନ୍ତ ପ୍ରତିଜ୍ଞା ଯେବେ ଅଛି ରଘୁରାଇଁ<br>
ବିଲଙ୍କାରେ ରାବଣକୁ ବଧ କର ଯାଇଁ ।" (ପୃ-୮)

ସୀତାଙ୍କର ଏପ୍ରକାର ଭର୍ତ୍ସିତ ଆହ୍ୱାନ ଏବଂ ତାଙ୍କ ମୁଖରୁ ବିଲଙ୍କା ରାବଣ ସମ୍ପର୍କରେ ବଖ୍ୟାନ ଶ୍ରବଣ କରି ରାମଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି ଏବଂ ଏହା ସେ କିପରି ଜାଣିଲେ ବୋଲି ପଚାରିଛନ୍ତି । ପିତ୍ରାଳୟରେ ଥିବା ସମୟରେ ଜନୈକ ଋଷିଙ୍କଠାରୁ ଏ ବିଷୟ ଜାଣିଥିବା ସୀତା ପ୍ରକାଶ କରିଛନ୍ତି । ରାମଚନ୍ଦ୍ର ଏହି ନୂତନ ରାବଣ ବିଷୟରେ ଅଧିକ ଜାଣିବା ନିମନ୍ତେ ଇଚ୍ଛା ପ୍ରକାଶ କରିବାରୁ ସୀତା କହିଛନ୍ତି ଯେ ଲଙ୍କାଠାରୁ ଶତଗୁଣ ଦୂରରେ ବିଲଙ୍କା ରାଜ୍ୟ । ତହିଁର ଅଧୀଶ୍ୱର ରାବଣ ସହସ୍ରଶିରଯୁକ୍ତ । ତା'ର ମନ୍ତ୍ରୀ ହେଉଛି ସପ୍ତଶିରା, ପୁତ୍ର ଶତଶିରା ଏବଂ ଭାଇ ତ୍ରିଶିରା । ଖଳର ପ୍ରଭାବରୁ ସୀତା ରାମଚନ୍ଦ୍ରଙ୍କୁ ବିଲଙ୍କା ରାବଣକୁ ମାରିବା ନିମନ୍ତେ ବାରମ୍ବାର ଆହ୍ୱାନ ଦେଇ ଉତ୍ତେଜିତ କରିଅଛନ୍ତି । ଫଳରେ ତା'ର ବିନାଶ ନିମନ୍ତେ ରାମଚନ୍ଦ୍ର ସିଂହାସନ ପରିତ୍ୟାଗ କରି କୋଦଣ୍ଡ ସହ ବିଲଙ୍କା ଅଭିମୁଖେ ଯାତ୍ରା କରିଅଛନ୍ତି ।

ଦେବଗଣଙ୍କ ଆଦେଶରେ ପବନ ଶ୍ରୀରାମଙ୍କୁ ଆକାଶ ମାର୍ଗରେ ନେଇ ସୁଦୂର ବିଲଙ୍କା ରାଜ୍ୟରେ ପହଞ୍ଚାଇ ଦେଇଛି । ପ୍ରଚଣ୍ଡ ନାମକ ଏକ ନିକଟବର୍ତ୍ତୀ

ପର୍ବତରୁ ରାମଚନ୍ଦ୍ର ଲଙ୍କା ନଗରୀର ଦୃଶ୍ୟ ଦେଖିଛନ୍ତି । ପାଦୁକା ମନ୍ତ୍ର ବଳରେ ନଗରୀର ଉତ୍ତର ଦ୍ୱାର ଦେଇ ସେ ଭିତରେ ପ୍ରବେଶ କରିଛନ୍ତି । ଲଙ୍କାର ରାଜା ସହସ୍ରଶିରାକୁ ସେ ତାଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ଆହ୍ୱାନ କରିଛନ୍ତି । ଏହାଶୁଣି ସହସ୍ରଶିରା ତାଙ୍କୁ ଉପହାସ କରନ୍ତି ଏବଂ ତା'ର ଏକ କରତାଳି ଦ୍ୱାରା ସୃଷ୍ଟି ହୋଇଥିବା ବାୟୁ ଆଘାତରେ ସେ ସତୁରି ଯୋଜନ ଦୂରରେ ନିକ୍ଷିପ୍ତ ହୋଇଅଛନ୍ତି । କିଛିକ୍ଷଣ ପରେ ଚେତନା ଲଭକରି ଏ ଦୁଷ୍ଟ ବଳୀୟାନ ଦୈତ୍ୟର ବିନାଶ ନିମନ୍ତେ ସେ ଉପାୟ ଚିନ୍ତା କରିଛନ୍ତି ।

ରାମଚନ୍ଦ୍ରଙ୍କ ଅଭିଷେକ ନିମନ୍ତେ ଆବଶ୍ୟକୀୟ ଚନ୍ଦନ କାଷ୍ଠ ସଂଗ୍ରହରେ ଯାଇଥିବା ହନୁମାନ ଫେରିଆସି ରାମଚନ୍ଦ୍ରଙ୍କୁ ଦେଖିବାକୁ ପାଇ ନାହିଁ । ସମସ୍ତ ବିଷୟ ଶୁଣି ସେ ତାଙ୍କ ସନ୍ଧାନରେ ଲଙ୍କାପୁର ଯାତ୍ରା କରିଛି । ଲଙ୍କାପୁରର କୋଣ ଅନୁକୋଣ ଖୋଜିବା ପରେ ତାଙ୍କୁ ନ ପାଇ ସେ ହତାଶ ହୋଇ ପଡ଼ିଛି । ସହସ୍ରଶିରା ଦ୍ୱାରା ଉପାସିତ ଗ୍ରାମଦେବତୀ ଲଙ୍କା ଗଡ଼ର ରକ୍ଷାକର୍ତ୍ତ୍ରୀ ଭାବରେ କାର୍ଯ୍ୟ କରନ୍ତି । ଗଡ଼ର ଉତ୍ତର ଦ୍ୱାରରେ ଏକ ବିଷ ସରୋବର ଓ ଦକ୍ଷିଣ ଦ୍ୱାରରେ ଜଳ ସରୋବର । ଗଡ଼ ପ୍ରବେଶକାରୀ ମିତ୍ର ହୋଇଥିଲେ ଦକ୍ଷିଣ ଦ୍ୱାରର ସରୋବରରୁ ଜଳପାନ କରି ଭିତରେ ପ୍ରବେଶ କରେ ଏବଂ ଶତ୍ରୁ ହୋଇଥିଲେ ଗ୍ରାମଦେବତୀଙ୍କ ମାୟାବଳରେ ଉତ୍ତର ଦ୍ୱାରର ବିଷ ପୁଷ୍କରିଣୀର ବିଷପାନ କରି ମୃତ୍ୟୁ ବରଣ କରେ । ହନୁମାନକୁ ଶତ୍ରୁ ବୋଲି ଜାଣିପାରି ଗ୍ରାମଦେବତୀ ତା' କଣ୍ଠରେ ଅବତୀର୍ଣ୍ଣ ହୋଇ ତା'ର ବୁଦ୍ଧି ଲୋପ କରିଛନ୍ତି । ଫଳରେ ହନୁ ତୃଷା ଅନୁଭବ କରିଛି ଏବଂ ଗରଳ ପାନକରି ପଞ୍ଚତ୍ୱପ୍ରାପ୍ତ ହୋଇଛି । ତାପରେ ଦେବତାମାନେ ପବନର ଅନୁରୋଧରେ ହନୁମାନକୁ ଜୀବନ ଦାନ କରିଛନ୍ତି ।

ହନୁମାନ ଦେବତାଙ୍କଠାରୁ ରାମଙ୍କ ସନ୍ଧାନ ପାଇ ତାଙ୍କ ପାଖରେ ଉପସ୍ଥିତ ହୋଇଛି । ଗ୍ରନ୍ଥର ଏହି ସ୍ଥାନରେ କବି ସୁନ୍ଦର କାଳ୍ପନିକତା ପ୍ରକାଶ କରି କହିଛନ୍ତି ଯେ ଲଙ୍କା ରାବଣ ବର୍ଷକରେ ଥରେ ଖାଦ୍ୟ ଗ୍ରହଣ କରେ । ନିଜର ଦୁଇ ସହସ୍ର ହସ୍ତରେ ସେ ଯାହାକୁ ପାଏ, ତାହାକୁ ଭକ୍ଷଣ କରେ । ଏହିପରି ଭାବେ ଲକ୍ଷ ଲକ୍ଷ ମନୁଷ୍ୟ, ପଶୁପକ୍ଷୀ ସେ ଭକ୍ଷଣ କରେ । ହନୁମାନ ଓ ଶ୍ରୀରାମ ପ୍ରଚଣ୍ଡ ପର୍ବତରେ ବାସ କରୁଥିବା ସମୟରେ ସହସ୍ରଶିରାର ସେହି ବର୍ଷର ଖାଦ୍ୟ ଗ୍ରହଣ କରିବା ସମୟ ଉପସ୍ଥିତ ହୋଇଛି । ଇତସ୍ତତଃ ଫଳାହୃନକାରୀଙ୍କଠାରୁ ହନୁ ଏ ସମ୍ବନ୍ଧରେ ଜାଣିପାରି ରାକ୍ଷସକୁ ବିନାଶ କରିବା ପାଇଁ ତା'ର ଉଦରଗାମୀ ହୋଇଅଛି ; ମାତ୍ର ଦୁର୍ବୃତ୍ତ ଉଦରର ମଧ୍ୟରେ ସେ ଅଣନିଃଶ୍ୱାସୀ ହୋଇ 'ରାମ' 'ରାମ' ଉଚ୍ଚାରଣ କରିଛି । ଏହା ଶୁଣିପାରି କୌତୂହଳ ବଶତଃ ରାକ୍ଷସ ଖାଦ୍ୟ ଉଦ୍‌ଗାର କରିଛି ; ଫଳରେ ହନୁମାନ ଭୂପତିତ ହୋଇଛି । ରାମ କାହିଁ ବୋଲି ପ୍ରଶ୍ନ କରନ୍ତେ, ସେ ପେଟ ଭିତରେ ଅଛନ୍ତି ବୋଲି

ହନୁମାନ ଜଣାଇଛି । ରାକ୍ଷସ ଏକ ବର୍ଷପାଇଁ ଉଦରସ୍ଥ କରିଥିବା ସମସ୍ତ ଜୀବଜନ୍ତୁ ଉଦ୍‌ଗାରଣ କରି ରାମଙ୍କୁ ପାଇ ନାହିଁ । ଏହା ଫଳରେ ସେ ଏକ ବର୍ଷ ପାଇଁ ଉପବାସ ରହିବାକୁ ବାଧ୍ୟ ହୋଇଛି ।

ହନୁମାନ ଓ କୁମ୍ଭ ଦୈତ୍ୟ ମଧ୍ୟରେ ରାମଚନ୍ଦ୍ରଙ୍କ ସମ୍ବନ୍ଧରେ ଆଲୋଚନା ଚାଲିଛି । ହନୁ ସେଠାରୁ ଫେରି ରାମଚନ୍ଦ୍ରଙ୍କୁ ସମସ୍ତ ବୃତ୍ତାନ୍ତ କହିଛି । ଏଣେ ମନ୍ତ୍ରୀ, ପୁତ୍ର, ଭ୍ରାତା ଇତ୍ୟାଦିଙ୍କ ସହିତ ପରାମର୍ଶକ୍ରମେ ପରଦିନ ପ୍ରଭାତରେ ଯୁଦ୍ଧ ଯାତ୍ରା ପାଇଁ ସହସ୍ରଶିରା ସ୍ଥିର କରିଛି । ଏହି ସିଦ୍ଧାନ୍ତ ଅନୁଯାୟୀ ପ୍ରଭାତରେ ରାକ୍ଷସ ସେନାମାନେ ଯୁଦ୍ଧ ପାଇଁ ଆଗେଇ ଆସିଛନ୍ତି । ଯୁଦ୍ଧରେ ମନ୍ତ୍ରୀ ମହାମୁଣିରା ନିହତ ହୋଇଛି । ତା'ର ପୁତ୍ର ନାଭିଦୈତ୍ୟ ମଧ୍ୟ ପିତାର ଭାଗ୍ୟ ଆଦରି ନେଇଛି । ନାଭିଦୈତ୍ୟର ମାତା ପ୍ରତିଶୋଧ ପରାୟଣା ହୋଇ ମାୟା ବଳରେ ହନୁମାନକୁ ଗର୍ଭସ୍ଥ କରି ବିଲଙ୍କା ନୃପତି ସମ୍ମୁଖରେ ଉଦ୍‌ଗାର କରିଛି । ରାଣୀମାନେ ହନୁମାନର ମାଂସ କାଟିବା ନିମନ୍ତେ ଉଦ୍ୟତ ହୁଅନ୍ତେ ହନୁ ସେମାନଙ୍କୁ ଆକ୍ରମଣ କରି ସେମାନଙ୍କ ନାସା କର୍ଣ୍ଣ ଛେଦନ କରିଛି । ପରବର୍ତ୍ତୀ ଯୁଦ୍ଧରେ ଶମ୍ଭୁ, ନିଶମ୍ଭୁ, ପ୍ରଳମ୍ବା, କଦମ୍ବା, ଅଶିରା, ଶତଶିରା ଆଦି ଦୈତ୍ୟଙ୍କ ମୃତ୍ୟୁ ଘଟିଛି । ବିଲଙ୍କାଧିପତି ସହସ୍ରଶିରା ସହିତ ଦୀର୍ଘଦିନ ଧରି ଯୁଦ୍ଧ କରି ମଧ୍ୟ ରାମଚନ୍ଦ୍ର ତାକୁ ବିନାଶ କରିପାରି ନାହାନ୍ତି । ରାମଚନ୍ଦ୍ରଙ୍କର ସମସ୍ତ ବାଣ ରାକ୍ଷସର ଶରୀର ସ୍ପର୍ଶମାତ୍ରେ ଚୂର୍ଣ୍ଣୀଭୂତ ହୋଇ-ଯାଇଛି । ଶେଷରେ ତାକୁ ନିଧନ କରିବାର ଆଶା ତ୍ୟାଗ କରନ୍ତେ, ଦେବତାମାନେ ତାଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି ଏବଂ ସୀତାଙ୍କ ବ୍ୟତୀତ ଅନ୍ୟ କେହି ରାକ୍ଷସକୁ ବଧ କରି ପାରିବେ ନାହିଁ ବୋଲି ପ୍ରକାଶ କରିଅଛନ୍ତି । ସୁତରାଂ ହନୁମାନ ଜାନକୀଙ୍କୁ ଆଣିବା ନିମନ୍ତେ ଅଯୋଧ୍ୟା ଗମନ କରିଛି । ତାଠାରୁ ସମସ୍ତ ଶୁଣି ସୀତା କହିଛନ୍ତି —

"ଏହା ଶୁଣି ମହାସତୀ ହସିଣ ଉଠିଲେ
ବହୁତ ପ୍ରତିଜ୍ଞା କରି ରାମ ଯାଇଥିଲେ ।

ଯୁଦ୍ଧେ ମାରି ନ ପାରିଲେ ପାମର ଦୈତ୍ୟକୁ
ଆରେ ବାବୁ ହନୁମନ୍ତ ଡାକ ଲକ୍ଷ୍ମଣକୁ ।" (ପୃ -୭୧)

ସୀତା ଓ ଲକ୍ଷ୍ମଣଙ୍କୁ ଚନ୍ଦ୍ରସେନ ଗନ୍ଧର୍ବର ରଥରେ ଆଣି ପହଞ୍ଚାଯାଇଛି । ରାକ୍ଷସ ସହିତ ଲକ୍ଷ୍ମଣଙ୍କର ଯୁଦ୍ଧ ହୋଇଛି; ମାତ୍ର ସେ ଅନେକ ବାଣ ପ୍ରହାର କରି ରାକ୍ଷସକୁ ବଧ କରି ପାରି ନାହାନ୍ତି । ଜାନକୀ ମହାମାୟୀଙ୍କୁ ସ୍ମରଣ କରିବାରୁ ସେ ତାଙ୍କୁ ପୁଷ୍ପଧନୁ ସହି ପଞ୍ଚଶର ପ୍ରଦାନ କରିଅଛନ୍ତି । ରାମ ଓ ରାକ୍ଷସ ମଧ୍ୟରେ ଘୋର ଯୁଦ୍ଧ ଚାଲିଥିଲାବେଳେ ଦେବୀ ସୀତା ବିବସ୍ତ୍ରା ହୋଇ ବିଲଙ୍କା ରାବଣର

ସମ୍ମୁଖରେ ଅବତୀର୍ଣ୍ଣା ହୋଇଛନ୍ତି । ଫଳରେ ତା’ର ଚିତ୍ତରେ ବିଭ୍ରାନ୍ତି ସୃଷ୍ଟି ହୋଇଛି । କବି ଲେଖିଛନ୍ତି—

"ଅପୂର୍ବ ମୂରତି ଧରିଲେକ ବରିଦେଖି
ଅସୁର ଆଗରେ ଉଭା ହେଲେ ଦେଖା ପାଇଁ ।
ସନ୍ତୁଁ ଗଗନକୁ ଗୃହିଁ ଦେଲେକ ଅସୁର
ମହାକୋପେ ଦୈତ୍ୟ ଅଙ୍ଗ କମ୍ପେ ଥରହର ।
ନବ ଯଉବନ ସତୀ ଦେଲେକ ଦେଖାଇ
ପଞ୍ଚଶର ବେଗେ ପୁଷ୍ପ ଧନୁରେ ପୂରାଇ ।

× × ×

କନ୍ଦର୍ପର ପଞ୍ଚଶର ଅଙ୍ଗରେ ବାଜିଲା
ବେଳୁ ବେଳ ଦୈତ୍ୟ ତନୁ ଆତୁର ହୋଇଲା ।" (ପୃ-୭୧)

ପଞ୍ଚଶରାଘାତରେ ଦୈତ୍ୟର ଚିତ୍ତ ଶୃଙ୍ଖଳା ଘଟିଛି । ସୀତାଙ୍କ ମାୟା ରୂପରେ ମୋହିତ ହୋଇ ସେ ତାଙ୍କୁ ତା’ର ଅଙ୍କଲକ୍ଷ୍ମୀ ହେବା ନିମନ୍ତେ ଅନୁରୋଧ କରିଛି । କ୍ରମଶଃ ସେ ଜ୍ଞାନଶୂନ୍ୟ ହୋଇ ପଡ଼ିଛି ଏବଂ ସୀତାଙ୍କ ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ପାଇବା ନିମିତ୍ତ ରାମଚନ୍ଦ୍ରଙ୍କୁ ଆକ୍ରମଣ କରିଅଛି । ଏହି ଅବସରରେ ରାମ ଓ ଲକ୍ଷ୍ମଣ ତାକୁ ବଧ କରିଅଛନ୍ତି ।

ଶ୍ରୀରାମଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ଦେବଗଣ ତାଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି କରିଛନ୍ତି । ରାମଚନ୍ଦ୍ର ଦେବତାଙ୍କଠାରୁ ଏକ ଲୁହାମଇ ଆଣିଛନ୍ତି ଏବଂ ତା ଉପରେ ସୀତାଙ୍କ ସହିତ ବସି ବିଲଙ୍କାପୁରୀରେ ମଇ ଦେଇଛନ୍ତି । ତାପରେ ସେ ଅଯୋଧ୍ୟା ଫେରିଆସି ସିଂହାସନ ଅଳଙ୍କୃତ କରିଅଛନ୍ତି ।

ଅଦ୍ଭୁତ ରାମାୟଣରେ ବର୍ଣ୍ଣିତ ‘ପୁଷ୍କର’ ଦ୍ୱୀପ ବିଲଙ୍କା ରାମାୟଣରେ ‘ବିଲଙ୍କା’କଟକ ନାମ ଧାରଣ କରିଛି । ମୂଳ ଗ୍ରନ୍ଥରେ ବିଲଙ୍କା ରାବଣ ବିଶ୍ରବା ଋଷିଙ୍କ ପୁତ୍ର ଭାବେ ପରିଚିତ ଥିବାବେଳେ ବିଲଙ୍କା ରାମାୟଣରେ ସେ ନିକଷିାର ପୁତ୍ର ବୋଲି ବ୍ରହ୍ମାଙ୍କ ମୁଖରେ ପ୍ରକାଶ ପାଇଛି । ମୂଳ ଗ୍ରନ୍ଥରେ ରାମଙ୍କର ଅନ୍ୟଭାଇମାନେ ସୀତା, ବିଭୀଷଣ, ସୁଗ୍ରୀବ ଓ କପିବଳ ରାମଙ୍କ ସହିତ ଯୁଦ୍ଧ ଯାତ୍ରାରେ ସହଯୋଗ କରିଛନ୍ତି, ମାତ୍ର ସାରଳା କେବଳ ରାମଙ୍କୁ ବିଲଙ୍କାକୁ ପଠାଇଛନ୍ତି । ଅବିବାହିତା ଥିବା ସମୟରେ ସୀତା ଜଣେ ବ୍ରାହ୍ମଣଠାରୁ ସହସ୍ରଶିରା ରାବଣ ସମ୍ବନ୍ଧରେ ଶୁଣିବାକୁ ପାଇଥିବାର ବର୍ଣ୍ଣନା ମୂଳ ଗ୍ରନ୍ଥରେ ରହିଥିବା ସ୍ଥଳେ, ଆଲୋଚ୍ୟ ଗ୍ରନ୍ଥରେ ସୀତା ତାହା ଜଣେ ଋଷିଙ୍କଠାରୁ ଶୁଣିଥିବାର ବର୍ଣ୍ଣନା ରହିଛି । ହନୁମାନର ବିଲଙ୍କା

ଗଡ଼ ପ୍ରବେଶ କରିବା, ବିଷପାନ କରି ମୃତ୍ୟୁ ବରଣ କରିବା, ଦେବତାଙ୍କ ଦ୍ୱାରା ପୁନର୍ଜୀବନ ଲାଭ କରିବା, ବିଲଙ୍କା ରାବଣ ବର୍ଷକରେ ଥରେ ଖାଦ୍ୟ ଗ୍ରହଣ କରୁଥିବା, ହନୁମାନ ତାକୁ ବର୍ଷକ ପାଇଁ ଉପବାସ ରଖିବା, ଅସୁରମାନଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ହନୁମାନଙ୍କୁ ଅଲୌକିକ ଶକ୍ତିସମ୍ପନ୍ନ କରାଇବା ଇତ୍ୟାଦି ବର୍ଣ୍ଣନା ସାରଳାଙ୍କ କଳ୍ପନାପ୍ରବଣତାର ପରିଚୟ ଦେବା ସଙ୍ଗେ ସଙ୍ଗେ ତାଙ୍କ ମୌଳିକତା ପ୍ରକାଶ କରେ, ଯାହା ସଂସ୍କୃତ ଗ୍ରନ୍ଥରେ ଦେଖିବାକୁ ମିଳେନା । ପୁନଶ୍ଚ ମୂଳ ଗ୍ରନ୍ଥରେ ରାମଙ୍କ ଅସାମର୍ଥ୍ୟ ଅବଲୋକନ କରି ଜାନକୀ କଙ୍କାଳୀ ରୂପ ଧାରଣ କରିଛନ୍ତି ଏବଂ ରାକ୍ଷସକୁଳ ବିନାଶ କରିବା ନିମିତ୍ତ ଶତ ଶତ ମାତୃଗଣ ସୃଷ୍ଟି କରିବା ପରେ ସହସ୍ର ରାବଣଙ୍କୁ ଖଡ଼୍‌ଗ ଦ୍ୱାରା ନିହତ କରିଛନ୍ତି; ମାତ୍ର ଏହିକଥା ବର୍ଣ୍ଣନା କରିବାରେ ସାରଳା ଅପୂର୍ବ ମୌଳିକତା ଓ ନୈପୁଣ୍ୟ ପରିଲକ୍ଷିତ ହୁଏ । ରାମଚନ୍ଦ୍ର ରାକ୍ଷସକୁ ନିହତ କରିବା ନିମନ୍ତେ ଅକ୍ଷମ ହେବାରୁ ହନୁମାନ ସୀତା ଓ ଲକ୍ଷ୍ମଣଙ୍କୁ ଅଯୋଧ୍ୟାରୁ ଆଣିଛି । ସୀତାଦେବୀ ଦୁର୍ଗାଙ୍କୁ ସ୍ମରଣ କରି ତାଙ୍କଠାରୁ ପୁଷ୍ପଧନୁ ସହ ପଞ୍ଚଶର ପ୍ରାପ୍ତ ହୋଇଛନ୍ତି । ଯୁଦ୍ଧରେ ଜାନକୀ ଏହାଦ୍ୱାରା ରାକ୍ଷସକୁ କାମଗ୍ରସ୍ତ କରି ଦେଇଛନ୍ତି ଏବଂ ବିବସନା ହୋଇ ନିଜର ଜାନୁ ଯୌବନ ପ୍ରଦର୍ଶନ କରିବା ଫଳରେ ରାକ୍ଷସ ହୀନବୀର୍ଯ୍ୟ ହୋଇପଡ଼ିଛି । ଏହି ସୁଯୋଗ ନେଇ ରାମଚନ୍ଦ୍ର ରାକ୍ଷସକୁ ବଧ କରିଛନ୍ତି । ଦୁଇ ଗ୍ରନ୍ଥର ବିଷୟ ଉପସ୍ଥାପନାରେ ବୈଷମ୍ୟ ପରିଦୃଷ୍ଟ ହେଲେହେଁ ଉଭୟରେ ପ୍ରକୃତି-ସ୍ୱରୂପିଣୀ ମହାମାୟା ସୀତାଙ୍କର ଶକ୍ତିମତ୍ତା ପ୍ରକାଶିତ ଏବଂ ରାମଚନ୍ଦ୍ରଙ୍କଠାରୁ ଜାନକୀଙ୍କ ପ୍ରାଧାନ୍ୟ ଅଧିକ ଭାବେ ପ୍ରକଟିତ ।

## ବିଶେଷ ଆଲୋଚନା

ବିଲଙ୍କା ରାମାୟଣ କବି ସାରଳା ଦାସଙ୍କ ଶକ୍ତି ଉପାସନାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଶାକ୍ତଧର୍ମର ବିଳୟ କାଳକୁ ଏହା ବ୍ରାହ୍ମଣ୍ୟ ହିନ୍ଦୁ ଧର୍ମର ଦେବଦେବୀମାନଙ୍କୁ ଅବଲମ୍ବନ କରି ଏବଂ ବ୍ରାହ୍ମଣ୍ୟ ଦେବଦେବୀ ଗୋଷ୍ଠୀଙ୍କ ମଧ୍ୟରେ ଶାକ୍ତଦେବୀମାନଙ୍କୁ ଅନ୍ତର୍ଭୁକ୍ତ କରି କିଛିକାଳ ବଞ୍ଚି ରହିବା ପାଇଁ ଯେଉଁ ଉଦ୍ୟମ କରିଥିଲା, ତାହାର ପରିଣତି ସ୍ୱରୂପ ରାମାୟଣ ଓ ମହାଭାରତ ପ୍ରଭୃତି ପୁରାଣମାନଙ୍କରେ ଶାକ୍ତ ଭାବନା ପ୍ରସାରିତ ହୋଇଥିଲା । ବିଲଙ୍କା ରାମାୟଣ ତାହାର ଏକ ଦୃଷ୍ଟାନ୍ତ । କାରଣ ଏଥିରେ ଶ୍ରୀରାମଚନ୍ଦ୍ରଙ୍କୁ ଯେପରି ଦେବୀଭକ୍ତ ଭାବରେ ବର୍ଣ୍ଣନା କରାଯାଇଛି, ସେପରି ଭାବରେ ତାଙ୍କୁ ମୂଳ ସଂସ୍କୃତ ରାମାୟଣରେ ବର୍ଣ୍ଣନ କରାଯାଇ ନାହିଁ ।

କବିଙ୍କର ସ୍ୱୀକାରୋକ୍ତି ଅନୁଯାୟୀ ଏହି ଗ୍ରନ୍ଥ ତାଙ୍କର ପ୍ରଥମ ରଚନା । କବି ପ୍ରାଚୀନ ପରମ୍ପରାନୁଯାୟୀ ପ୍ରଥମେ ରାମାୟଣ ରଚନା କରିବାକୁ ମନ ହୁଏତ ବଳାଇଛନ୍ତି; ମାତ୍ର ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ରାମ ଚରିତ ନୀତି ଓ ଆଦର୍ଶ-ଗର୍ଭିତ ହୋଇଥିବାରୁ ତାହାର କଥାବସ୍ତୁ ଅବଲମ୍ବନରେ କାବ୍ୟ ରଚିତ ହେଲେ,

ତତ୍କାଳୀନ ପାଠକ ତନ୍ମଧ୍ୟରୁ ଆନନ୍ଦ ପାଇପାରିବ ନାହିଁ ବୋଲି ତାଙ୍କର ହୃଦ୍‌ବୋଧ ହୋଇଅଛି । କାରଣ ତାଙ୍କ ପ୍ରିୟ ପାଠକମାନଙ୍କ ମନସ୍ତତ୍ତ୍ୱ କବିଙ୍କୁ ଭଲଭାବରେ ଜଣାଥିଲା । ତାପରେ ସେ ରାମଚରିତ ସମ୍ପର୍କୀୟ ଅନ୍ୟାନ୍ୟ ଗ୍ରନ୍ଥର ଅନ୍ୱେଷଣରେ ହୁଏତ ବାହାରି ପଡ଼ିଛନ୍ତି ଏବଂ ଶେଷରେ ଅଦ୍ଭୁତ ରାମାୟଣର ସନ୍ଧାନ ପାଇ ଯାଇଛନ୍ତି । ସେଥିରେ ଥିବା ସୀତାଙ୍କ ଶକ୍ତି-ସତ୍ତ୍ୱର ବିଜୟ ଅଂଶ ପ୍ରତି ଶକ୍ତଙ୍କ ଶାକ୍ତ-ସତ୍ତ୍ୱା ସ୍ୱତଃ ଆକୃଷ୍ଟ ହୋଇପଡ଼ିଛି । ପୁନଶ୍ଚ ସେଥିରେ ବର୍ଣ୍ଣିତ ସୀତାଙ୍କ ମାନବବାଦୀ ମନ ଓ ଅଦ୍ଭୁତ ପ୍ରକାର ବର୍ଣ୍ଣନା ପ୍ରଦାନ କରିବା ନିମନ୍ତେ ପ୍ରଶସ୍ତ କ୍ଷେତ୍ର ଥିବା ଦେଖି ସେହି କଥାବସ୍ତୁ ଉପରେ ସେ ଗ୍ରନ୍ଥ ରଚନା କରିବା ନିମନ୍ତେ ମନ ବଳାଇଛନ୍ତି । ସେ ଯାହାହେଉ, କବି 'ଅଦ୍ଭୁତ ରାମାୟଣ' କଥାବସ୍ତୁର କଙ୍କାଳକୁ କେବଳ ଗ୍ରହଣ କରି ନିଜ ଗ୍ରନ୍ଥ ରଚନା କରିଅଛନ୍ତି । ତେଣୁ ତାଙ୍କର ମୌଳିକତା ଗ୍ରନ୍ଥର ପଦେ ପଦେ ଫୁଟି ଉଠିଛି । ନିଜର କଳ୍ପନା ବିଳାସ ବଳରେ କବି ଏ ଗ୍ରନ୍ଥକୁ ଏକ ନୂତନ ରୂପରେଖ ଦେଇ ଅଛନ୍ତି, ଯାହା ପାଠକରି ପାଠକ ଏହାକୁ ଏକ ମୌଳିକ ଓ ସ୍ୱତନ୍ତ୍ର ଗ୍ରନ୍ଥଭାବେ ଗ୍ରହଣ କରେ ।'

ସାରଳା ମହାଭାରତ ଭଳି ଏହି ଗ୍ରନ୍ଥ 'ଦାଣ୍ଡିବୃତ୍ତ'ରେ ରଚିତ । ଏହି ବୃତ୍ତଟି ସାରଳାଙ୍କ ନିଜସ୍ୱ । [redacted]ଳା ମହାଭାରତକୁ ପରବର୍ତ୍ତୀ ଅବସ୍ଥାରେ ପୁସ୍ତକାକାରରେ ମୁଦ୍ରିତ କରିବା ସମୟରେ ଯେପରି ପ୍ରତିଧାଡ଼ିକୁ ଭାଙ୍ଗି ୧୪ ଅକ୍ଷରୀ ଛନ୍ଦରେ ପରିଣତ କରାଯାଇଛି ବା ଆଦି ରୂପରେ ପରିବର୍ତ୍ତନ କରାଯାଇଛି, ଆଲୋଚ୍ୟ ଗ୍ରନ୍ଥର ମୁଦ୍ରିତ ରୂପରେ ମଧ୍ୟ ଅନୁରୂପ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ।

ସାରଳା ଦାସ ଜଣେ ପରମ ଶାକ୍ତ ହୋଇଥିଲେ ମଧ୍ୟ ତାଙ୍କ ରଚନାମାନଙ୍କରେ ଉଦାର ଧର୍ମଚେତନା ଦେଖିବାକୁ ମିଳେ । ମହାଭାରତରେ ଯେପରି ସବୁ ଦେବତାଙ୍କୁ ସ୍ତୁତି ଜଣାଇ ସେ ଏହାକୁ ସର୍ବଧର୍ମସମନ୍ୱିତ ଏକ ଗ୍ରନ୍ଥଭାବେ ପରିଚିତ କରାଇଅଛନ୍ତି, ଆଲୋଚିତ ଗ୍ରନ୍ଥରେ ମଧ୍ୟ ସେ ଅନୁରୂପ ଧର୍ମସମ୍ପର୍କୀୟ ଔଦାର୍ଯ୍ୟ ଦେଖାଇଛନ୍ତି । ଏହି ଗ୍ରନ୍ଥର ମଙ୍ଗଳାଚରଣରେ ସେ ପ୍ରଥମେ ମହିଷାମର୍ଦ୍ଦିନୀ ଝଙ୍କଡ଼ର ଶାରଳାଙ୍କୁ ସ୍ତୁତି କରିଅଛନ୍ତି । ତାପରେ ଶିବ, ଜଗନ୍ନାଥ, ସରସ୍ୱତୀ ଆଦି ଦେବଦେବୀଙ୍କୁ ପ୍ରଣତି ଜଣାଇଛନ୍ତି । ଗ୍ରନ୍ଥ ମଧ୍ୟରେ ରାମଚନ୍ଦ୍ରଙ୍କୁ କବି ଅନେକବାର ସର୍ବମଙ୍ଗଳା ସ୍ମରଣ କରାଇଥିବାର ଦେଖାଯାଏ । ପୁନଶ୍ଚ ସତୀ ସୀତା ବିଲଙ୍କାଧିପତି ସହସ୍ରଶିରା ରାବଣର ନିଧନ ନିମନ୍ତେ ସିଂହବାହିନୀ କାତ୍ୟାୟିନୀଙ୍କୁ ସ୍ତୁତି କରିଅଛନ୍ତି ଏବଂ ତାଙ୍କଠାରୁ ପୁଷ୍ପଧନୁ ଓ ପଞ୍ଚଶର ପ୍ରାପ୍ତ ହୋଇଅଛନ୍ତି । ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି ଓ ଜଣାଣ କରାଯାଇଥିଲେ ମଧ୍ୟ ଶକ୍ତି ଉପାସନାର ପ୍ରାଧାନ୍ୟ ଏ ଗ୍ରନ୍ଥରେ ପରିଦୃଷ୍ଟ ହୁଏ ।

ବଲଙ୍କା ରାମାୟଣରେ କବିଙ୍କ ବର୍ଣ୍ଣନା ଶୈଳୀ ଅତି ଚମତ୍କାର । ଯେ କୌଣସି ବର୍ଣ୍ଣନାରେ ସେ ଅପୂର୍ବ କଳା-ପ୍ରାଣତାର ପରିଚୟ ପ୍ରଦାନ କରି ଅଛନ୍ତି । ତାଙ୍କ ନାୟକ ନାୟିକାଙ୍କ ବେଶ ବର୍ଣ୍ଣନାରେ ଆମେ ପ୍ରାଚୀନ କାଳର ବହୁ ଅଳଙ୍କାର ଓ ବେଶଭୂଷା ଦେଖିବାକୁ ପାଉ, ଯାହାର ପ୍ରଚଳନ ଆଧୁନିକ ସମାଜରୁ ପ୍ରାୟ ଲୋପ ପାଇଗଲାଣି । ଅଭିଷେକ କାଳରେ ଶ୍ରୀରାମ ଓ ସୀତାଙ୍କର ବେଶ ବର୍ଣ୍ଣନା ଅତି ସରଳ, ପ୍ରାଞ୍ଜଳ ଏବଂ ରମଣୀୟ ହୋଇଅଛି । ଶ୍ରୀରାମଙ୍କ ଅଭିଷେକକାଳୀନ ବେଶ ବର୍ଣ୍ଣନାରେ କବି ଲେଖିଛନ୍ତି—

"ଶିରରେ ବାନ୍ଧିଲେ ଯାଇ ସୁବର୍ଣ୍ଣ ମୁକୁଟ ।
ନାନା ବର୍ଣ୍ଣ ପୁଷ୍ପମାଳ ମୁକୁଟେ ବାନ୍ଧିଲେ,
ମୁକୁଟ ଉପରେ ହୀରା ରତନ ଖଞ୍ଜିଲେ ।
କର୍ଣ୍ଣରେ କୁଣ୍ଡଳ ଦିଲେ ଗଳେ ମୋତିମାଳ
ଦୋସରି ପଦକ ଆଣି ଖଞ୍ଜିଲେ ତହିଁର ।
ବାହୁରେ ବାହୁଟି ଦିଶେ ଅତି ଶୋଭିବନ
ହୃଦରେ ପଇତା ଦିଶେ ସୁବର୍ଣ୍ଣ ଯେସନ
କଟିରେ କାଞ୍ଚେଣୀ କନ୍ଧେ ବିଚିତ୍ର ଉତ୍ତରୀ
କରରେ କୋଦଣ୍ଡ ଧରି ପ୍ରଭୁ ରୂପଧାରୀ ।" ( ପୃ ୬-୭ )

ଅଭିଷେକ କାଳରେ ସୀତାଙ୍କୁ ମୁଦୁସୁନ୍ଦରୀମାନେ ବିଭିନ୍ନ ବେଶଭୂଷାରେ ସଜ୍ଜିତ କରାଇଅଛନ୍ତି । ସୀତାଙ୍କର ଏହି ବେଶ ବିନ୍ୟାସର ବର୍ଣ୍ଣନା ଦେଇ କବି ଲେଖିଛନ୍ତି—

"ବେଗେ ସ୍ନାନ କରାଇଣ କୁଣ୍ଡାଇଲେ କେଶ
ଯୁଡ଼ା ଗୋଟି ନିର୍ମାଣି ବାନ୍ଧିଲେ ଗଭା ପୁଷ୍ପ ।
ସୁବେଣୀ ଜଟ ମଣ୍ଡଳ ଆକାରେ ଖଞ୍ଜିଲେ
ମାଣିକ୍ୟର ଝୁମ୍ପା ଜଟ ମୂଳରେ ବାନ୍ଧିଲେ ।
କର୍ଣ୍ଣରେ ତାଟଙ୍କ କାପ ନାସାରେ ବେଶର
ବେନି ନୟନେ କଜ୍ଜଳ ଶିରରେ ସିନ୍ଦୂର ।
ନାସାରେ ବସଣି ଦିଶେ ଅତି ଶୋଭିବନ
ଶରଦ ଚନ୍ଦ୍ରମା ପରି ଦିଶଇ ବଦନ ।
ଦୋସରି ମୁକୁତା ହାର ଲମ୍ବାଇ ଗଳାରେ
ସୁବର୍ଣ୍ଣ ପଦକ ଲମ୍ବାଇଲେ ହୃଦୟରେ ।
ସୁବର୍ଣ୍ଣର ବାଜୁବନ୍ଧ ବାହୁରେ ବାନ୍ଧିଲେ
ବେନି ହସ୍ତେ ସୁବର୍ଣ୍ଣର କଙ୍କଣ ପିନ୍ଧିଲେ ।

ବଟନ୍ତ କାଞ୍ଚୁଲି ଏକ ଭିଡ଼ିଲେ ଗ୍ରୁତରେ
ଚୁଣ୍ଟ ଘୁ ଘାଗୁଡ଼ି ଯେ ବାନ୍ଧିଲେ କଟିରେ ।

କୁଙ୍କୁମ ଲେପିଣ ଅଙ୍ଗ କଲେ ଶୋଭିବନ
ସୁର୍ବିନ ବସନ ଶାଢ଼ୀ ପିନ୍ଧାଇ ବହନ ।

ନେତ ଶାଢ଼ୀ ତା ଉପରେ ଉପରଣ ଦେଲେ
ବେନି ଚରଣରେ ବେନି ନୂପୁର ଖଞ୍ଜିଲେ ।" (ପୃ-୭)

ସପ୍ତଶିରର ମୃତ୍ୟୁପରେ ତା'ର ପୁତ୍ର ନାଭିଦୈତ୍ୟ ମଧ୍ୟ ଶମନପୁର ଗମନ କରିଅଛି । ରାମଚନ୍ଦ୍ରଙ୍କୁ ବିନାଶ କରି ସ୍ୱାମୀ ଓ ପୁତ୍ର ମୃତ୍ୟୁର ପ୍ରତିଶୋଧ ନେବା ନିମନ୍ତେ ସୁରେଖା ରାକ୍ଷସୀ ମନସ୍ଥ କରିଛି ଏବଂ ମାୟାବଳରେ ଅପୂର୍ବ ସୁନ୍ଦରୀ ରୂପ ଧାରଣ କରି ରାମଙ୍କ ନିକଟକୁ ଯାଇଛି । ତାକୁ ଏହିପ୍ରକ ବେଶ ନିମନ୍ତେ ଯେଉଁ ଯେଉଁ ବସ୍ତ୍ର, ଅଳଙ୍କାରାଦିରେ ଭୂଷିତ ହେବାକୁ ପଡ଼ିଛି, କବି ତା'ର ଏକ ସୁନ୍ଦର ବର୍ଣ୍ଣନା ଦେଇଅଛନ୍ତି ।

"ଜୁଡ଼ାର ଉପରେ ପୁଷ୍ପ ଗଭା ଯେ ଖୋସିଲା
ମଣ୍ଡଳ ଆକାର ବେଣୀ ଜଟାକୁ ବାନ୍ଧିଲା ।

ସୀମନ୍ତେ ଅଳକା ଖଞ୍ଜେ କପାଳେ ସିନ୍ଦୂର
ଚନ୍ଦନ ବିନ୍ଦୁଏ ଦେଲା ତହିର ଉପର ।

ନାସାଗ୍ରରେ ବେଶର ଯେ ବସଣୀ ଖଞ୍ଜିଲା
କର୍ଣ୍ଣରେ ତାଟଙ୍କ ପନ୍ତ ଯୋଡ଼ିଏକ ଦେଲା ।

ଦୋସର ମୁକୁତାମାଳା ଖଞ୍ଜିଲା ଗଳାରେ
ପଦକ ଲମ୍ବାଇ ଦେଲା ତହିର ଉପରେ ।

କୁଚରେ କାଞ୍ଚଲି ଦୃଢ଼େ କଲାକ ବନ୍ଧନ
ବାହୁରେ ଯେ ବାଜୁବନ୍ଧ ହସ୍ତରେ କଙ୍କଣ ।

ଦଶ ଅଙ୍ଗୁଷ୍ଠିରେ ଦଶ ମୁଦ୍ରିକା ଖଞ୍ଜିଲା
ସୁର୍ବିନ ପଉନୀ ଶାଢ଼ୀ ପରିଧାନ କଲା ।

ଚନ୍ଦ୍ର ମେଘୀ ପାଟ ଉପରଣ ଦେଲା ଶିରେ
ବାଜେଣୀ ନୂପୁର ବାଲା ଖଞ୍ଜିଲା ପୟରେ ।

ରମ୍ଭା ତହୁଁ ଦୁଇଗୁଣ ଦିଶିଲା ସୁନ୍ଦର
ଅଞ୍ଚଳ ଉଡ଼ାଇ ଚଳେ ହୋଇ ଧୀର ଧୀର ।" (ପୃ-୨୯)

ବ୍ରାହ୍ମଣ ବେଶ ବର୍ଣ୍ଣନାରେ ମଧ୍ୟ ସାରଳା ଦାସ ଅପୂର୍ବ କୃତୀତ୍ୱ ପ୍ରଦର୍ଶନ କରିଛନ୍ତି । କମ୍ବୁଦୈତ୍ୟ ମାୟାବଳରେ ବ୍ରହ୍ମଋଷି ବେଶ ଧାରଣ କରିଛି ଏବଂ ଶ୍ରୀରାମଙ୍କ କପାଳରେ ବିଭୂତି ବୋଲି ତାଙ୍କୁ ବିଳଙ୍କା ପୁରୀକୁ ଘେନି ଯାଇଛି । ହନୁମାନ ରାମଙ୍କୁ ଖୋଜିବା ନିମନ୍ତେ ବିଳଙ୍କା କଟକରେ ପ୍ରବେଶ କରନ୍ତି । ସ୍ୱଦେହରେ ଭିତରକୁ ଗଲେ ନିଜ କାର୍ଯ୍ୟ ସିଦ୍ଧ ହେବ ନାହିଁ ଭାବି ସେ ଏକ ବୃଦ୍ଧ ବ୍ରାହ୍ମଣ ବେଶ ଧାରଣ କରିଛି । ଅଳ୍ପ କେତୋଟି ପଙ୍‌କ୍ତିରେ କବି ଅତି ସୁନ୍ଦର ରୂପେ ତା'ର ବେଶ ବର୍ଣ୍ଣନା କରିଛନ୍ତି ।

"ବାଟରେ ବ୍ରାହ୍ମଣ ବେଶ ଧରି ହନୁମାନ
ଧୀରେ ଧୀରେ ବିଳଙ୍କାକୁ କରଇ ଗମନ ।

ଅତ୍ୟନ୍ତ ଦରିଦ୍ର ଦେହ ଦିଶେ ଅସୁନ୍ଦର
ଶିରରେ ପାକଲି ବାଳ ଉଡ଼େ ଫରଫର ।

ଭଙ୍ଗାଛତା ଖଣ୍ଡେ ଘେନି ଅଛି ବୀରମଣି
ବେନି ପାରୁଶରେ ଝୁଲୁଅଛି ଭିକ୍ଷା ମୁଣି ।" (ପୃ-୩୬)

ଶ୍ରୀରାମଙ୍କ ସହିତ ଯୁଦ୍ଧ କରିବାକୁ ଆସିବା ପୂର୍ବରୁ ପ୍ରାୟ ପ୍ରତ୍ୟେକ ରାକ୍ଷସ ବୀର ବେଶରେ ସଜ୍ଜିତ ହୋଇ ଆସିଛନ୍ତି । ସାରଳା ସେମାନଙ୍କ ବେଶ ବର୍ଣ୍ଣନା ଅତି ନିପୁଣତାର ସହିତ ଫୁଟାଇ ପାରିଛନ୍ତି । ସହସ୍ରଶିରା ରାବଣ ପ୍ରଥମ ଥର ପାଇଁ ରାମଚନ୍ଦ୍ରଙ୍କ ସହିତ ଯୁଦ୍ଧକୁ ବାହାରିଛି । ତା'ର ଏହି ସମୟର ବେଶର ଏକ ସଂକ୍ଷିପ୍ତ ବର୍ଣ୍ଣନା କବି ଏହିପରି ପ୍ରଦାନ କରିଛନ୍ତି —

"ସହସ୍ର ଭୁଜରେ କେତେ ନାରାଚ ଧଇଲା
ଏକ ସହସ୍ର ମୁଣ୍ଡରେ ମୁକୁଟ ବାନ୍ଧିଲା ।

ବୀର କାଛୁ ପିନ୍ଧିଲାକ ବୀର ଲଙ୍କସାଇଁ
ସୁବର୍ଣ୍ଣ କୁଣ୍ଡଳ ତାର କର୍ଣ୍ଣେ ବିରାଜଇ ।

ଏକ ଗୋଟା ବ୍ୟାଘ୍ରଚର୍ମ ବାନ୍ଧିଲା କଟିରେ
ଫରଫର ହୋଇ ଲାଞ୍ଜ ଉଡ଼େ ତା ଆଗରେ ।" (ପୃ-୪୮)

କବିଙ୍କ ସମୟରେ ଅର୍ଥାତ ଖ୍ରୀଷ୍ଟୀୟ ପଞ୍ଚଦଶ ଶତକର ରଣରଙ୍ଗ ଓଡ଼ିଆ ଜାତି ଦୀର୍ଘକାଳ ଧରି ଯୁଦ୍ଧରତ ରହି ନିଜ ବାହୁବଳରେ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ଭାରତର ଏହି ବିସ୍ତୃତ ଅଞ୍ଚଳକୁ ସାମ୍ରାଜ୍ୟଭୁକ୍ତ କରିଥିଲା । ଏଣୁ ବିଳଙ୍କା ରାମାୟଣ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ବର୍ଣ୍ଣନାରେ ପରିପୂର୍ଣ୍ଣ । ବିଳଙ୍କା ରାମାୟଣର ବିଭିନ୍ନ ଯୁଦ୍ଧ ପ୍ରସଙ୍ଗରେ ବହୁ ପ୍ରକାରର ବାଣ, ଅସ୍ତ୍ରଶସ୍ତ୍ର, ବାଦ୍ୟ ଆଦିର ନାମ ଦେଖିବାକୁ

ମିଳେ । ସହସ୍ରଶିରା ରାବଣର ଭାଇ ତ୍ରିଶିରା ଓ ଶ୍ରୀରାମଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧର ଯେଉଁ ବର୍ଣ୍ଣନା କବି ଦେଇଛନ୍ତି, ତାର କେତୋଟି ପଙ୍‌କ୍ତି ଏଠାରେ ଉଦ୍ଧାର କରାଯାଇପାରେ ।

"ଧନୁ ଧନୁ ବାଜି ଶବ୍ଦ କରେ ଝଣଝଣ
ଅନୁକ୍ଷଣେ ବାଣ ବର୍ଷୁଛନ୍ତି ବେନି ଜଣ ।

ବାଣଙ୍କ ଉପରେ ବାଣ ବାଜି ହୁଏ ଚୂର୍ଣ୍ଣ
ଫଳାଫଳା ଘଷି ହୋଇ ଉଠେ ହୁତାଶନ ।

ପ୍ରଜ୍ୱଳିତ ଅଗ୍ନିଶର ଛାଡ଼ିଲା ଅସୁର
ବରୁଣାସ୍ତ୍ରେ ନିବାରିଲେ ତାହା ରଘୁବୀର ।

ପର୍ବତାସ୍ତ୍ର ପ୍ରହାରିଲେ ଶ୍ରୀରଘୁନନ୍ଦନ
ଭାଙ୍ଗି ଦଇତ୍ୟର ରଥ ହୋଇଗଲା ଚୂର୍ଣ୍ଣ ।" (ପୃ-୬୨)

ହନୁମାନ ପ୍ରାୟ ସବୁ ଦୈତ୍ୟଙ୍କ ସହ ମଲ୍ଲଯୁଦ୍ଧରେ ପ୍ରବୃତ୍ତ ହୋଇଅଛି । ଏହି ମଲ୍ଲଯୁଦ୍ଧର ବର୍ଣ୍ଣନା କବି ଅତି ମନୋହର ଭାବେ ପ୍ରଦାନ କରିଅଛନ୍ତି । ସହସ୍ରଶିରାର ମନ୍ତ୍ରୀ ସପ୍ତଶିରା ସହିତ ହନୁମାନର ମଲ୍ଲଯୁଦ୍ଧର ବର୍ଣ୍ଣନା କବି ଏହିପରି ଦେଇଛନ୍ତି—

"ଦଇତ ପିଠିରେ ହନୁ ବସିଲାକ ଯାଇଁ
ବଜ୍ରସମ ବିଧା ଏକ ମାଇଲା ନିଠାଇ ।

ଘଡ଼ିକରେ ଦୈତ୍ୟ ପୁଣି ଚେତନା ପାଇଲା
କୋପ ଭରେ ମାରୁତିକି ଦନ୍ତେ ଧଇଲା ।

ରେ ରେ କାର କରି ମାଡ଼ି ବସିଲା ଅସୁର
ମାଲ ସଙ୍ଗେ ମାଲ ଯେସନ୍ତେ କରଇ ସମର ।

ତେସନ୍ତେ ଧରାଧରି ହୋଇ ପଡ଼ି ପର୍ବତରେ
ବାହୁ ବାହୁ ଛନ୍ଦାଛନ୍ଦି ହୋଇ ବେନି ବୀରେ ।

ମୁଣ୍ଡେ ମୁଣ୍ଡେ ମରାମରି ହୁଅନ୍ତି ସେ ପୁଣି
ପାଦ ଭରେ ଦଲ ଦଲ ହୁଅଇ ମେଦିନୀ ।

ବିଧାର ଉପରେ ବିଧା ପ୍ରହାର କରନ୍ତି
ଦୁହେଁ ପୁଣି ଘନ ଘନ ଗର୍ଜନ ଛାଡ଼ନ୍ତି ।

ପର୍ବତରୁ ଗଡ଼ିଯାଇ ସମୁଦ୍ରେ ପଡ଼ିଲେ
ଜଳ ମଧ୍ୟେ ଧରାଧରି ହୋଇ ଯୁଦ୍ଧ କଲେ ।" (ପୃ-୬୩)

ଆଲୋଚ୍ୟ ଗ୍ରନ୍ଥରେ ସାରଳା ଦାସଙ୍କ କଳ୍ପନା-ପ୍ରବଣତା ପାଠକକୁ ବିସ୍ମୟାଭିଭୂତ କରିଥାଏ । ସଂଖ୍ୟାର ସୂଚନା ଦେବା ନିମନ୍ତେ ଅବସର ଯେଉଁଠି ଆସିଛି, କବି ସେଠାରେ ସହସ୍ର, ଲକ୍ଷ୍ୟ, କୋଟି, ଅର୍ବୁଦ ବ୍ୟତୀତ ଅନ୍ୟକିଛି କହି ନାହାନ୍ତି । ରାମଚନ୍ଦ୍ର ଲଙ୍କା ଆସିଥିବା ଜାଣି ବୀର ହନୁମାନ ଲଙ୍କାକୁ ଆସିଅଛି ଏବଂ ଲଙ୍କାର କୋଣ ଅନୁକୋଣରେ ରାମଚନ୍ଦ୍ରଙ୍କୁ ଅନ୍ୱେଷଣ କରିଅଛି । ଏଥି ନିମନ୍ତେ ତାକୁ କୁକୁର, ବିରାଡ଼ି, ମୂଷା, ଭ୍ରମର ଆଦି ବିଭିନ୍ନ ରୂପ ଧାରଣ କରିବାକୁ ପଡ଼ିଛି । ମଧ୍ୟରାତ୍ରିରେ ସେ ଲଙ୍କାଧିପତି ସହସ୍ରଶିରାର ଶୟନ କକ୍ଷରେ ପ୍ରବେଶ କରିଛି । ଶୟନରତ ରାଜାର ସେବାରେ ନିୟୁକ୍ତ ଥିବା ପରିଚାରିକାଙ୍କ ହିସାବ ଦେଇ କବି ଲେଖିଛନ୍ତି—

"ଲକ୍ଷେ ବିଳାସିନୀ ବସି ଚାମର ଢାଳନ୍ତି
ଲକ୍ଷେ ପରିଚାରୀ ଦୈତ୍ୟ ପାଦ ମର୍ଦ୍ଦାଳନ୍ତି ।
ତାମ୍ବୁଳ ଯୋଗାନ୍ତି ଆଣି ଲକ୍ଷେ ପରିଚାରୀ
ସପ୍ତଶିରା ମନ୍ତ୍ରୀ ଅଛି ସନ୍ନିଧେ ତାହାରି । (ପୃ-୧୬)

ହନୁମାନ ରାମଙ୍କ ସନ୍ଧାନ ନେବା ସମୟରେ ଲଙ୍କା କଟକ ବୁଲି ଦେଖିଛି ଏବଂ ରାଜାର ସୈନ୍ୟ କଳନା କରିଛି । ସେ ଯେଉଁ ଯେଉଁ ସଂଖ୍ୟକ ଗୃହ, ମନ୍ଦିର, ମଣ୍ଡପ ରଥ ଓ ସୈନ୍ୟସାମନ୍ତ ଦେଖିଛି, ସେଗୁଡ଼ିକର ବିବରଣୀ କବି ଏହିପରି ଦେଇଛନ୍ତି—

"ଆଠକୋଟି ସାତଲକ୍ଷ ଘରଅଛି ତହିଁ
ଦେଉଳ ମଣ୍ଡପ କେତେ ତା'ର ସଂଖ୍ୟା ନାହିଁ ।

ସପତ ସହସ୍ର ହାଟ ପାଞ୍ଚସସ୍ର କହି
ପଦାତି ହଜାର ପଦ୍ମ ମହା ମହା ଯୋଧି ।

ସାତ ସସ୍ର ଗଜବାଜି ପାଞ୍ଚଶ ଅୟୁତ
ପାଞ୍ଚଶତ କୋଟି ରଥ ପଦ୍ମେକ ରାଉତ ।

ସାତକ୍ଷୌଣୀ ବାଦ୍ୟକାର ବୀର ଅଗଣିତ
ପରଦାର ଫରକାର ଅଛନ୍ତି ବହୁତ ।

ଲକ୍ଷେକ ପାଇକ ପାଞ୍ଚଶତ କୋଟି ଜେନା
ଦଶ ବୃନ୍ଦ ମାଲ ପୁଣି ଅଣୀ ଖଙ୍ଗ ସେନା ।

ସାତସସ୍ର ପାଞ୍ଚଶତ ବାଉନ ହଜାର
ମଧୁବନ ତୋଟା ଅଟେ ଯୋଜନେ ଓସାର ।" (ପୃ-୧୬)

ହନୁମାନର ଗରଲ ପାନ, ସହସ୍ରଶିର୍‌ର ବର୍ଷକେ ଥରେ ଭୋଜନ, ହନୁମାନର ଅଲୌକିକ ଶକ୍ତି ପ୍ରଦର୍ଶନ ଆଦି ଉପାଖ୍ୟାନରେ କବିଙ୍କ ମୌଳିକତା ଏବଂ କାଳ୍ପନିକତା ପ୍ରକାଶ ଲାଭ କରିଛି ।

ଚରିତ୍ର ଚିତ୍ରଣରେ ସାରଳା ଅପୂର୍ବ ମୌଳିକତା ପ୍ରଦର୍ଶନ କରିଅଛନ୍ତି । ସ୍ୱାମୀଙ୍କୁ ପରମ ଦେବତା ଭାବେ ଭକ୍ତି କରୁଥିବା ସତୀ ସାଧ୍ୱୀ ସୀତା ରାମଚନ୍ଦ୍ରଙ୍କ ପ୍ରତି ଅତି ନିର୍ମମ ବାକ୍ୟବାଣ ପ୍ରୟୋଗ କରିଛନ୍ତି, ଯାହା ତାଙ୍କ ଚରିତ୍ରର ମହତ୍ତ୍ୱ ହ୍ରାସ କରିବା ଭଳି ମନେ କରାଯାଇପାରେ; ମାତ୍ର ଏପରି କରିବା ନିମନ୍ତେ ତାଙ୍କୁ ଦୋଷ ଦିଆ ଯାଇ ନ ପାରେ । କାରଣ ଦେବତାମାନଙ୍କ ଦ୍ୱାରା ପ୍ରେରିତ ଖଳ ତାଙ୍କ କଣ୍ଠରେ ଉପସ୍ଥିତ ଥିଲା ଏବଂ ଦେବତାଙ୍କ ମଙ୍ଗଳ ବିଧାନ ନିମିତ୍ତ ପତିଙ୍କୁ ତାଡ଼ନା, ଅପମାନିତ ଓ ଅବଜ୍ଞା କରିବା ନିମନ୍ତେ ତାଙ୍କୁ ବାଧ୍ୟ କରିଥିଲା । ଶକ୍ତି ଉପାସକ ସାରଳାଦାସ ଏ ଗ୍ରନ୍ଥରେ ଜନକ ନନ୍ଦିନୀଙ୍କୁ ସର୍ବଶକ୍ତିର ଉତ୍ସଭାବେ ବର୍ଣ୍ଣନା କରିଅଛନ୍ତି । ପୁନଶ୍ଚ ସେ ପ୍ରମାଣ କରିଛନ୍ତି ଯେ ସୀତାଙ୍କ ଶକ୍ତି ବଳରେ ହିଁ ରାମଚନ୍ଦ୍ର ବଳୀୟାନ । ଏ ଗ୍ରନ୍ଥରେ ହନୁମାନ ଅଲୌକିକ ଶକ୍ତି ସମ୍ପନ୍ନ । କେଉଁଠି ହନୁମାନ ନିଜ ଲାଙ୍ଗୁଳରେ ଦଶଟା ପର୍ବତ ଓ ହାତରେ ଦୁଇଟିକି ପାହାଡ଼ ଧରି ପବନ ବେଗରେ ଛୁଟି ଆସିଛି ଶତ୍ରୁର ମୁକାବିଲା କରିବା ପାଇଁ ତ କେଉଁଠାରେ ନିଜ ବଧାଘାତରେ ପର୍ବତାକାରର ଦୈତ୍ୟଙ୍କୁ ଦେହୋର୍ସ କରି ପକାଇଛି । ପୁଣି କେଉଁଠାରେ ଦୈତ୍ୟର ନାସାବାଟେ ପଶି ଶ୍ରବଣ ବାଟେ ବାହାରି ଆସିଛି ତ ଅନ୍ୟ କେଉଁଠି କୁକୁର, ବିରାଡ଼ି, ମୂଷାଦି ରୂପରେ ଲଙ୍କାପୁରରେ ବୁଲି ଗୁପ୍ତତଥ୍ୟ ସଂଗ୍ରହ କରିଛି । ଗ୍ରନ୍ଥର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବର୍ଣ୍ଣିତ ସମସ୍ତ ଯୁଦ୍ଧରେ ସେ ମୁଷ୍ଟିଯୁଦ୍ଧରେ ବ୍ୟାପୃତ ରହିଛି । ଲକ୍ଷ ଲକ୍ଷ ରାକ୍ଷସଙ୍କୁ ସେ ଯମାଳୟ ପଠାଇଛି । ବଳଙ୍କା ରାବଣର ଭାଇ ତ୍ରିଶିର ସହିତ ଯୁଦ୍ଧକରି ତାକୁ ସେ ବଧ କରିଛି ।

ପୂର୍ବରୁ ବର୍ଣ୍ଣିତ ପୁରୁଷ, ସ୍ତ୍ରୀ, ବ୍ରାହ୍ମଣ ଓ ବୀରବେଶାଦିରୁ ସାରଳାକାଳୀନ ସମାଜର ସ୍ପଷ୍ଟ ଚିତ୍ର ମିଳେ । ଗ୍ରନ୍ଥ ଶେଷରେ ଲୁହାମଇ ବୁଲିସିବା ଉପାଖ୍ୟାନରୁ ସେ ସମୟରେ ମଧ୍ୟ କୃଷି ନିମନ୍ତେ ମଇ ବ୍ୟବହୃତ ହେଉଥିବାର ଜଣାଯାଏ । ଅତିଥି ସତ୍କାର କରିବା ବ୍ୟବସ୍ଥାକୁ ତତ୍କାଳୀନ ସମାଜରେ ଶ୍ରେଷ୍ଠ ଆସନ ଦିଆଯାଉଥିଲା । ରାମଙ୍କ ଅନ୍ୱେଷଣରେ ବଳଙ୍କାକୁ ଯିବା କାଳରେ ହନୁମାନ ଲଙ୍କା ଦେଇ ଯାତ୍ରା କରିଛି । ବିଭୀଷଣ ହନୁକୁ ଦେଖି ଆଦରରେ ପାଛୋଟି ନେଇଅଛନ୍ତି ଏବଂ ସ୍ୱାଦଯୁକ୍ତ ପକ୍ୱଫଳ ଖାଇବାକୁ ଦେଇଛନ୍ତି । ଗୃହରୁ ଅନୁକୂଳରେ ବାହାରିବା ସମୟରେ ଦେବତା ସ୍ମରଣ କରି ବାହାରିବା ନିୟମ ପ୍ରଚଳିତ ଥିଲା । ରାମଚନ୍ଦ୍ର ବଳଙ୍କା ଅଭିମୁଖେ ଯାତ୍ରା କରିବା ପୂର୍ବରୁ ସର୍ବମଙ୍ଗଳା ସ୍ମରଣ କରିଅଛନ୍ତି । ଶ୍ରୀରାମାଭିଷେକ ଉତ୍ସବୋପଲକ୍ଷେ ହାଟ ଦାଣ୍ଡରେ ଲୋକମାନେ ପସରା ବସାଇ ଅଛନ୍ତି, ବିଭିନ୍ନ ବର୍ଣ୍ଣର ପୁଷ୍ପରେ ଦ୍ୱାରମାନ

ଶୋଭିତ ହୋଇଅଛି ଏବଂ ବିଚିତ୍ର ଗୃହମାନ ଚତୁର୍ଦ୍ଦିଗରେ ବିଲମ୍ବିତ ହୋଇଅଛି । ଏହିପରି କେତୋଟି ସାମାଜିକ ଜୀବନର ଚିତ୍ରଛବି ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଦେଖିବାକୁ ମିଳେ ।

ବିଲଙ୍କା ରାମାୟଣରେ ଶବ୍ଦାଳଙ୍କାରର ବ୍ୟବହାର ଦେଖିବାକୁ ମିଳେ ନାହିଁ । ଯେଉଁ କେତେକ ଅର୍ଥାଳଙ୍କାର ଦେଖିବାକୁ ମିଳେ ତା'ର ସଂଖ୍ୟା ଖୁବ୍ କମ୍ । ଏଥିରେ ସ୍ଥାନ ପାଇଥିବା ଯୁଦ୍ଧ ବର୍ଣ୍ଣନାରେ ସାଧାରଣତଃ ଏହା ପରିଦୃଷ୍ଟ ହୁଏ । ବିଲଙ୍କା ରାବଣର ଭାଇ ଶିଶିର ଓ ଅନ୍ୟାନ୍ୟ ରାକ୍ଷସଗଣଙ୍କ ସହିତ ରାମ ଓ ହନୁମାନର ଯୁଦ୍ଧ ସମୟରେ କବି ପ୍ରଦତ୍ତ ଏକ ଉପମାଳଙ୍କାର ଏଠାରେ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ ।

"ଶୁଣି ଡେଇଁ ପଶେ ଯାଇ ସୈନ୍ୟର ଭିତରେ
କାଳସର୍ପ ଯେହ୍ନେ ପଶେ ମଣ୍ଡୁକ୍କୀ ଦଳରେ ।

ଦଧିଭାଣ୍ଡ ମଧ୍ୟେ ଖୁଆ ଯେସନେ ପଶଇ
କଦଳୀ ବନକୁ ଯେହ୍ନେ ମାତଙ୍ଗ ଭାଙ୍ଗଇ ।

ମହାକୋପେ ଯୁଦ୍ଧ କରେ ହନୁମନ୍ତ ବୀର
ଏକକୁ କଚାଡ଼ୁ ଅଛି ଆରେକ ଉପର ।" (ପୃ-୪୪)

ଶତଶିର ଯୁଦ୍ଧ କରିବା ନିମନ୍ତେ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ସୈନ୍ୟବଳ ସହ ଆଗକୁ ମାଡ଼ି ଚାଲିଛି । ବୀରବାଦ୍ୟରେ ଗଗନ ପବନ ମୁଖରିତ ହେଉଅଛି । କବିଙ୍କର ଏହି ବର୍ଣ୍ଣନାରେ ମଧ୍ୟ ଉପମାଳଙ୍କାରର ପ୍ରୟୋଗ ଦେଖାଯାଏ ।

"ପ୍ରଳୟ କାଳରେ ଯେହ୍ନେ ସିନ୍ଧୁ ଗରଜଇ
ସେହି ପରକାରେ ବାଦ୍ୟମାନ ଶୁଭୁଛନ୍ତି ।" (ପୃ-୪୮)

ସହସ୍ରା ରାବଣ ଓ ବୀରହନୁମାନର ମୁଷ୍ଟିଯୁଦ୍ଧ ବର୍ଣ୍ଣନାରୁ କେତୋଟି ପଙ୍କ୍ତି ନିମ୍ନରେ ଉଦ୍ଧୃତ ହୋଇଅଛି । ପ୍ରଥମ ପଦରେ ଉପମାଳଙ୍କାର ଓ ପର ପଦରେ ଉତ୍ପ୍ରେକ୍ଷାଳଙ୍କାରର ପ୍ରୟୋଗ ଲକ୍ଷିତ ହୁଏ ।

"ଭୁଜେ ଭୁଜ ଅଙ୍ଗେ ଅଙ୍ଗ ପିଟାପିଟି ହୋନ୍ତି
ଯେହ୍ନେ ଷଣ୍ଢ ଷଣ୍ଢ କୋପେ ଲଢ଼ାଇ କରନ୍ତି ।

ପର୍ବତରେ ପର୍ବତକ ବାଜୁଅଛି ଅବା
ସେ ବେନି ବୀରଙ୍କ ଯୁଦ୍ଧ କି ଉପମା ଦେବା ।

ଘୋର ଗରଜନ କରି ସମର କରନ୍ତି
କମ୍ପଇ ପାତାଳପୁରେ ବାସୁକୀ ନୃପତି ।" (ପୃ-୭୮)

କବି ଏହି ଗ୍ରନ୍ଥରେ ଅତି ସରଳ, ସର୍ବଜନବୋଧ୍ୟ ଭାଷା ପ୍ରୟୋଗ କରିଛନ୍ତି । ତାଙ୍କର ପ୍ରିୟ ଶ୍ରୋତା ଥିଲେ ନରଗରର ସାଧାରଣ ଗ୍ରାମ୍ୟ ଜନତା । ତେଣୁ ତାଙ୍କ ଭାଷା ହୋଇଛି ସାଧାରଣ ଜନତାର ଭାଷା । ଏହି ଗ୍ରନ୍ଥ କବିଙ୍କର ପ୍ରଥମ ରଚନା ବୋଲି ଯେ ସ୍ୱୀକାର କରିଥିଲେ ମଧ୍ୟ ଭାଷା ଦୃଷ୍ଟିରୁ ବିଚାର କଲେ, ଏହାର ଭାଷା ମହାଭାରତର ଭାଷା ଅପେକ୍ଷା ଉନ୍ନତ ଓ ମାର୍ଜିତ ମନେହୁଏ । "ବିଲଙ୍କା ରାମାୟଣକୁ ପରମ୍ପରା କ୍ରମେ ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ଗ୍ରହଣ କରି ନେଇଛନ୍ତି ଯେ ତାହା ସାରଳା ଦାସଙ୍କର ରଚନା ; କିନ୍ତୁ ତହିଁରେ ପରିଦୃଷ୍ଟ 'ପୌଢ଼ଲ', 'ଫଡ଼କାର' ପ୍ରଭୃତି ଶବ୍ଦର ପ୍ରୟୋଗ ଫଳରେ ଗ୍ରନ୍ଥଟି ସାରଳାଙ୍କର କି ନୁହେଁ ତାହା ବିଶେଷ ସନ୍ଦେହ ସୃଷ୍ଟି କରୁଛି । ଏହି ବିଷୟରେ ଅନ୍ୟାନ୍ୟ ଆଲୋଚନା ନ ହେବା ପର୍ଯ୍ୟନ୍ତ ଆମେ ଉକ୍ତ ଆଲୋଚନାକୁ ସାରଳା ସାହିତ୍ୟ ଆଲୋଚନା ଅନ୍ତର୍ଭୁକ୍ତ କରୁଛୁ । ସାରଳା ଦାସଙ୍କର ପ୍ରଥମ ନାମ 'ସିଦ୍ଧେଶ୍ୱର' ଥିବା ଉକ୍ତ ଅନୁଯାୟୀ ବିଲଙ୍କା ରାମାୟଣ ସାରଳା ଦାସଙ୍କର ରଚନା ବୋଲି ଗ୍ରହଣ କରାଯାଉଛି ।" ✻

## ସଂସ୍କୃତ ମହାଭାରତ ଓ ସାରଳା ମହାଭାରତ

ସାରଳା ମହାଭାରତ ମୂଳ ( ସଂସ୍କୃତ ) ମହାଭାରତର ଅନୁବାଦ ନୁହେଁ କିମ୍ବା ଅବିକଳାନୁକରଣରେ ଲିଖିତ ନୁହେଁ । ମୂଳ ଗ୍ରନ୍ଥରୁ କେବଳ କଙ୍କାଳଟି ଗ୍ରହଣ କରି ସାରଳା ଦାସ ସେଥିରେ ସ୍ୱକଳ୍ପନାଶକ୍ତି ବଳରେ ରକ୍ତମାଂସ ସଂଯୋଗ କରିଛନ୍ତି । ବିଷୟବସ୍ତୁ, ଚରିତ୍ର ଚିତ୍ରଣ, ବର୍ଣ୍ଣନାଶୈଳୀ ଆଦି ପ୍ରତ୍ୟେକ କ୍ଷେତ୍ରରେ କବିଙ୍କ ମୌଳିକତାର ପ୍ରତିଫଳନ ପରିଲକ୍ଷିତ ହୁଏ । ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ସାରଳା ମହାଭାରତ ଉପରେ ରଚିତ 'ଶ୍ରୀ ଭାରତ ଦର୍ପଣ' ନାମକ ସମାଲୋଚନା ପୁସ୍ତକ ଖଣ୍ଡିକ ସମାଲୋଚନା ସାହିତ୍ୟ ଆକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ସଦୃଶ । ସେଥିରେ ସେ ସଂସ୍କୃତ ମହାଭାରତକାରଙ୍କୁ ବ୍ୟାସକବି ଓ ବ୍ରହ୍ମମୁନି ଏବଂ ଓଡ଼ିଆ ମହାଭାରତକାରଙ୍କୁ ଦାସକବି, ଉତ୍କଳବ୍ୟାସ, ଶୂଦ୍ରମୁନି ଆଦି ନାମରେ ନାମିତ କରି ପ୍ରଗାଢ଼ ପରିଶ୍ରମ ବଳରେ ଏହି ଉଭୟ କବିଙ୍କ ରଚିତ ମହାଭାରତ ଦ୍ୱୟରେ ଥିବା ବିଭିନ୍ନ ପ୍ରକାର ବୈଷମ୍ୟକୁ ଅତି ନିଖୁଣ ଭାବରେ ପ୍ରଦର୍ଶନ କରିଛନ୍ତି । ତାଙ୍କ ମତରେ ମୂଳ ଗ୍ରନ୍ଥର ବିଷୟବସ୍ତୁକୁ ନିଜ ସ୍ମୃତିକୋଷରେ ପ୍ରଦୀପ୍ତ ରଖି ସାରଳା ଦାସ ଅଳୀକକରଣ, ବିସ୍ତୃତକରଣ, ଅନୁକ୍ତ ପ୍ରକ୍ଷେପ ଓ ଉକ୍ତ ନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖି ଯାଇଛନ୍ତି । ଏଣୁ ଏହି କ୍ରମରେ ଦୁଇ ମହାଭାରତର ତୁଳନା କରାଯାଇପାରେ ।

---

✻ ଓଡ଼ିଆ ସାହିତ୍ୟର ଇତିହାସ—୨ୟ ଭାଗ—ଡଃ ବଂଶୀଧର ମହାନ୍ତି—ପୃ-୭୮ ।

# ଅଳଙ୍କାରଣ :

ମୂଳ ଗ୍ରନ୍ଥରେ ବିସ୍ତୃତ ଆକାରରେ ବର୍ଣ୍ଣିତ କେତେକ ବିଷୟକୁ ସାରଳା ଦାସ ସଂକ୍ଷିପ୍ତ କରିଦେଇଛନ୍ତି । ସେଥି ମଧ୍ୟରୁ ଅଳ୍ପ କେତୋଟି ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ପ୍ରଦତ୍ତ । ବ୍ୟାସକବିଙ୍କ ମହାଭାରତରେ ମୂଳ ଅଂଶରେ ତତ୍ତ୍ୱଜ୍ଞାନ ସମ୍ପର୍କୀୟ ଅନେକ କଥା କୁହାଯାଇଛି । ଏଥି ନିମନ୍ତେ ପଣ୍ଡିତମାନେ ଏହି ଗ୍ରନ୍ଥକୁ ଗୋଟିଏ 'ଜ୍ଞାନକୋଷ' ବୋଲି କହିଥାନ୍ତି । କିନ୍ତୁ ଦାସକବିଙ୍କ ମହାଭାରତରେ ଏସବୁ ଯଥାଯଥ ଭାବରେ 'ଅକ୍ଷୁର୍ଣ୍ଣ' ରହି ନାହିଁ । ମୂଳର ତତ୍ତ୍ୱଜ୍ଞାନ ପ୍ରତିପାଦକ ବିଷୟମାନ ପ୍ରାୟ ଆଦୌ ନାହିଁ କହିଲେ ଚଳେ । ଯାହା ଅଛି, ତାହା ଅତି ଅଳ୍ପ, ଯାହାକି ସାଧାରଣ ଲୋକ ବୁଝି ପାରିବେ ।

ବ୍ୟାସକବିଙ୍କ ଗ୍ରନ୍ଥର ଆଦି ପର୍ବରେ ଅଣଶିଗୋଟି ଅଧ୍ୟାୟରେ ସୁବିସ୍ତୃତ ଅନୁକ୍ରମଣିକା ପ୍ରଦତ୍ତ ହୋଇଛି; କିନ୍ତୁ ମହାପ୍ରାଜ୍ଞ ସାରଳା ଦାସ ମୂଳଗ୍ରନ୍ଥଗତ ଅନୁକ୍ରମଣିକାଧ୍ୟାୟର ଚରିତକୁ ସୁସଙ୍ଗତ ଓ ସୁଗମ ଭାବରେ ଅତି ସଂକ୍ଷିପ୍ତ କରିଦେଇ କୁରୁବଂଶ ଉତ୍ପତ୍ତିଠାରୁ କେବଳ ଗ୍ରନ୍ଥ ଆରମ୍ଭ କରିଛନ୍ତି । କାରଣ ଦାସକବି ବୋଧହୁଏ ଭାବିଛନ୍ତି ଯେ ମହାଭାରତ ମୂଳକଥା ହେଉଛି କୁରୁବଂଶର ଉତ୍ପତ୍ତି ଓ ବିନାଶ । ତେଣୁ କେବଳ କୌରବ ବଂଶର ଉତ୍ପତ୍ତିକୁ ସେ ସୁନ୍ଦର ଭାବେ ଉପସ୍ଥାପିତ କରିଛନ୍ତି । ଏହା ଫଳରେ ବିଷୟ ସଙ୍କ୍ଷୀକରଣ ବଡ଼ ଯୁକ୍ତିଯୁକ୍ତ ଏବଂ ଆକର୍ଷଣୀୟ ହୋଇଅଛି ।

ବନ ପର୍ବରେ ପାଣ୍ଡବମାନଙ୍କର ତୀର୍ଥ ଭ୍ରମଣର ଯେଉଁସବୁ ବୃତ୍ତାନ୍ତ ମୂଳ ମହାଭାରତରେ ଅଛି, ସେ ମଧ୍ୟରୁ ଅଧିକାଂଶ ସାରଳା ତ୍ୟାଗ କରିଛନ୍ତି; ଯେଉଁ କେତୋଟି ବିବରଣୀ ଦେଇଛନ୍ତି ସେଗୁଡ଼ିକ ଅତି ସଂକ୍ଷେପ କରିଦେଇଛନ୍ତି ।

ମୂଳ ମହାଭାରତର ଶାନ୍ତିପର୍ବ ଏକ ବିଶାଳ ପର୍ବ, ଯାହାର ଅଧ୍ୟାୟ ସଂଖ୍ୟା ହେଉଛି ୩୬୫, କିନ୍ତୁ ସାରଳା ଦାସଙ୍କ ମହାଭାରତର ଶାନ୍ତିପର୍ବ ହେଉଛି ଗ୍ରନ୍ଥର କ୍ଷୁଦ୍ରତମ ପର୍ବ ଏବଂ ଏହା ମାତ୍ର ୩୪ ପୃଷ୍ଠା ବିଶିଷ୍ଟ ଓ ଛଅଗୋଟି ଅଧ୍ୟାୟର ସମାହାର ।

ଭୀଷ୍ମ ପର୍ବରେ ପ୍ରଦତ୍ତ ମୂଳ ଗ୍ରନ୍ଥର ଅଷ୍ଟାଧ୍ୟାୟୀ ଗୀତାକୁ ସାରଳା ଅଳ୍ପ କେତୋଟି ଧାଡ଼ିରେ ଶେଷ କରି ଦେଇଛନ୍ତି । ଏହାର କାରଣ ସ୍ୱରୂପ କୁହାଯାଇ-ପାରେ ଯେ ସାରଳାଦାସ ନୀତିପ୍ରବର୍ତ୍ତକ ନ ଥିଲେ, ସେ ଥିଲେ ରସସ୍ରଷ୍ଟା । ଏଣୁ ନୀତି ଏବଂ ତତ୍ତ୍ୱପୂର୍ଣ୍ଣ ସମସ୍ତ ବର୍ଣ୍ଣନାକୁ ସେ ନିଜ ଗ୍ରନ୍ଥରେ ତ୍ୟାଗ କରିଛନ୍ତି ବା ସଂକ୍ଷିପ୍ତ କରିଛନ୍ତି । ଏଥିଯୋଗୁଁ କେତେକଣ ସମାଲୋଚକ ତାଙ୍କର ସଂସ୍କୃତ ଜ୍ଞାନ ନ ଥିବାର କହିଥାନ୍ତି ।

ବିରାଟ ରାଜ୍ୟରେ ଥିଲାବେଳେ ଗୋହରଣ ସଂକ୍ରାନ୍ତୀୟ ଯେଉଁ ଯୁଦ୍ଧ ହୋଇଥିଲା, ତାହାର ବର୍ଣ୍ଣନା ବ୍ୟାସଙ୍କ ଗ୍ରନ୍ଥ ଅପେକ୍ଷା ଦାସଙ୍କ ଗ୍ରନ୍ଥରେ ସଂକ୍ଷିପ୍ତାକାରରେ ପ୍ରଦତ୍ତ ହୋଇଛି ।

ମୂଳ ଗ୍ରନ୍ଥରେ ଅଶ୍ୱତ୍ଥାମା ପିତୃହନ୍ତା ପାଣ୍ଡବମାନଙ୍କୁ ବଧ କରିବା ନିମନ୍ତେ ନାରାୟଣାସ୍ତ୍ର ପ୍ରୟୋଗ କରିବାର ବର୍ଣ୍ଣନା ବିସ୍ତୃତ ଭାବରେ ଦିଆଯାଇଥିବା ସ୍ଥଳେ ସାରଳା ମହାଭାରତରେ ତା'ର ସଂକ୍ଷିପ୍ତ ରୂପ ଦିଆଯାଇଅଛି ।

ଏହା ବ୍ୟତୀତ ବ୍ୟାସମୁନିଙ୍କ ମୂଳ ଗ୍ରନ୍ଥରେ ମହାଦେବଙ୍କ ସହିତ ଅର୍ଜୁନଙ୍କ ଯୁଦ୍ଧ, ନଳୋପାଖ୍ୟାନ, ପୃଥୁଲା ଗାଗ୍ରୀ ଚରିତ, ନହୁଷ ଉପାଖ୍ୟାନ, ଯଯାତି ଉପାଖ୍ୟାନ ଇତ୍ୟାଦି ବିସ୍ତୃତ ଭାବରେ ପ୍ରଦତ୍ତ; ମାତ୍ର ଶୂଦ୍ରମୁନି ଏଗୁଡ଼ିକ ନିଜ ଗ୍ରନ୍ଥରେ ସଂକ୍ଷିପ୍ତ କରି ଦେଇଅଛନ୍ତି ।

## ବିସ୍ତୃତୀ କରଣ :

ସାରଳା ଦାସ ମୂଳ ଗ୍ରନ୍ଥରେ ସଂକ୍ଷିପ୍ତ ଆକାରରେ ଥିବା ବହୁ ପ୍ରସଙ୍ଗକୁ ବ୍ୟାପକ କରି ବର୍ଣ୍ଣନାର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ବ୍ୟାସମୁନିଙ୍କ ଗ୍ରନ୍ଥର ଆଦିପର୍ବରେ ସୁଭଦ୍ରା ହରଣ ପ୍ରସଙ୍ଗରେ ବର୍ଣ୍ଣିତ ଯେ ରୈବତକ ପର୍ବତରେ ସୁଭଦ୍ରାଙ୍କ ପ୍ରତି ଅର୍ଜୁନଙ୍କର ପ୍ରଗାଢ଼ ପ୍ରେମ ଜାତ ହେବାରୁ ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ସେ ତାଙ୍କୁ ବଳପୂର୍ବକ ହରଣ କରି ବିବାହ କରିଅଛନ୍ତି; ମାତ୍ର ଶୂଦ୍ରମୁନିଙ୍କ ଗ୍ରନ୍ଥର ମଧ୍ୟ ପର୍ବରେ ଏହା ଭିନ୍ନ ରୂପରେ ବର୍ଣ୍ଣିତ ହୋଇଛି । ପ୍ରଥମେ ସୁଭଦ୍ରା ଅର୍ଜୁନଙ୍କ ପ୍ରତି ଆସକ୍ତ ହୋଇ ତାଙ୍କୁ ପ୍ରେମ ନିବେଦନ କରିଛନ୍ତି । କିନ୍ତୁ ଅର୍ଜୁନ ସ୍ୱଚରିତ୍ରର ପରାକାଷ୍ଠା ଦେଖାଇ ତାଙ୍କୁ ବାରମ୍ବାର ନିରାଶ କରିଅଛନ୍ତି ।' ଅନନ୍ୟୋପାୟ ହୋଇ ସତ୍ୟଭାମା-ଙ୍କର ସାହାଯ୍ୟ ଲୋଡ଼ିବା ନିମନ୍ତେ ସୁଭଦ୍ରା ବାଧ୍ୟ ହୋଇଛନ୍ତି ଏବଂ ଶେଷରେ ମାୟାଦେବୀଙ୍କ ବଶୀକରଣ ମନ୍ତ୍ର ସାହାଯ୍ୟରେ ସତ୍ୟଭାମା ସୁଭଦ୍ରାଙ୍କୁ ଅର୍ଜୁନଙ୍କ ପାଖରେ ପହଞ୍ଚାଇଛନ୍ତି । ଏହି ପ୍ରସଙ୍ଗରେ ଯେଉଁ କାଳ୍ପନିକ ବିଷୟର ସଂଯୋଜନା କରାଯାଇଛି, ତାହା ଜନସାଧାରଣଙ୍କୁ ବେଶ୍ ଆନନ୍ଦ ଦିଏ ।

ମୂଳ ଗ୍ରନ୍ଥରେ ଜରାସନ୍ଧ ଭୀମଙ୍କଦ୍ୱାରା ନିହତ ହୋଇଥିବା ବର୍ଣ୍ଣିତ । ସାରଳା ଦାସ କିନ୍ତୁ ନିଜ ଗ୍ରନ୍ଥରେ ଏହି ପ୍ରସଙ୍ଗ ସହିତ ତିନିଗୋଟି କାଳ୍ପନିକ ଗଳ୍ପର ସଂଯୋଗ କରିଛନ୍ତି । ଏହି ତିନିଗୋଟି ଗଳ୍ପ ହେଲା—ଭେଣ୍ଡାର ପୂର୍ବ ଚରିତ, ଶିମିଳି ଗଛର ବୃତ୍ତାନ୍ତ ଏବଂ ଗଧ ଚରିତ । 'ଅସମୟରେ ଗଧପାଦ ଧରିବା' ପ୍ରବଚନର ଅଭ୍ୟୁଦୟ ହୋଇଛି ଏହିଠାରୁ । ଏହି କାଳ୍ପନିକ କାହାଣୀଗୁଡ଼ିକ ପାଠକଙ୍କ ମନକୁ ବେଶ୍ ଆକର୍ଷଣ କରେ ।

ବ୍ୟାସ କବିଙ୍କ ମହାଭାରତରେ ପାଣ୍ଡବଙ୍କ ଦିଗ୍‌ବିଜୟ । ରାଜସୂୟ ଯଜ୍ଞ, ଶିଶୁପାଳ ବଧ ପ୍ରସଙ୍ଗ ପ୍ରଭୃତି ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ଦାସକବି ତାଙ୍କ ମହାଭାରତରେ ଏହିସବୁ ସ୍ଥଳରେ କେତେକ କପୋଳ କଳ୍ପିତ ପ୍ରସଙ୍ଗ ଅବତାରଣା କରି ଗ୍ରନ୍ଥର କଳେବର ବଢ଼ାଇଛନ୍ତି ।

ଦ୍ରୌପଦୀଙ୍କ ବସ୍ତ୍ର ହରଣ ପ୍ରସଙ୍ଗ ମୂଳ ଗ୍ରନ୍ଥରେ ସଂକ୍ଷିପ୍ତାକାରରେ ପ୍ରଦତ୍ତ । ସାରଳା ଦାସ ଏ ବିଷୟ ସହିତ ଅନ୍ୟ କେତେକ ବିଷୟ ସଂଯୁକ୍ତ କରି ଏକ କରୁଣ ପରିବେଶ ସୃଷ୍ଟି କରିଛନ୍ତି ।

ଅର୍ଘାହରଣ ପ୍ରସଙ୍ଗ ସହିତ ଋଷ୍ୟଶୃଙ୍ଗଙ୍କ ଜନ୍ମ ବିବରଣୀ, ଧନୁ ମୂଳରେ ଅର୍ଜ୍ଜୁନଙ୍କର ଧରାଧାରଣ ପ୍ରଭୃତି କାଳ୍ପନିକ କାହାଣୀ ସାରଳାଦାସ ଯୋଗ କରିଅଛନ୍ତି ।

ଭୀମଙ୍କର ଜନ୍ମ ବୃତ୍ତାନ୍ତ ସଂସ୍କୃତ ମହାଭାରତରେ ସଂକ୍ଷେପରେ ବର୍ଣ୍ଣିତ; ମାତ୍ର ସାରଳା ମହାଭାରତରେ ଏ ସଂପର୍କରେ ବିସ୍ତୃତ ଓ ମନୋରମ ବର୍ଣ୍ଣନା ଦିଆଯାଇଛି । ପବନଙ୍କ ସହିତ ମିଳିତ ହେବା ଫଳରେ କୁନ୍ତୀ ମୂର୍ଚ୍ଛିତା ହୋଇ ପଡ଼ିଛନ୍ତି ଏବଂ ପରକ୍ଷଣରେ ପବନ ଦେବତା ତାଙ୍କୁ ଜୀବନ୍ୟାସ ଦେଇଛନ୍ତି । ପୁଣି ଜନ୍ମ ହେବା ପରେ ବାୟୁଦେବତା ତା'ର ନାମକରଣ କରିଛନ୍ତି ଭୀମସେନ । ଏହି ଭୀମସେନ ବାଲ୍ୟକାଳରେ ବାଘ ମସ୍ତକରେ ପାଦ ସ୍ପର୍ଶ କରନ୍ତେ ବ୍ୟାଘ୍ର ପଞ୍ଚତ୍ୱପ୍ରାପ୍ତ ହେବାର ଏବଂ ବାମ ପାଦର କନିଷ୍ଠ ଅଙ୍ଗୁଳିର ଆଘାତରେ ଶତଶୃଙ୍ଗ ପର୍ବତ ଏକ ଶୃଙ୍ଗ ହରାଇବାର କାଳ୍ପନିକ ବିବରଣୀ ସାରଳା ମହାଭାରତରୁ ମିଳେ ।

ବେଦବ୍ୟାସଙ୍କ ଗ୍ରନ୍ଥରେ ରହିଛି ଯେ ବିଦୁରଙ୍କର ଜଣେ ବିଶ୍ୱସ୍ତ ଖନକ ଜତୁଗୃହରୁ ଗଙ୍ଗାନଦୀ ତୀର ପର୍ଯ୍ୟନ୍ତ ଗୋଟିଏ ସୁପ୍ରଶସ୍ତ ବିଲ ଖନନ କରିଥିଲେ; ଉତ୍କଳ ବ୍ୟାସଙ୍କ ଗ୍ରନ୍ଥରେ ଏହି ବିଷୟଟି ଅତି ବିସ୍ତୃତାକାରରେ ଦେଖିବାକୁ ମିଳେ ଯେ ବିଦୁର ଏକଦା ଅନ୍ଧକାର ରାତିରେ ଭ୍ରମଣ କରୁଥିବା ସମୟରେ ଗୋଟିଏ ଗ୍ରେରକୁ ଦେଖିଛନ୍ତି । ବିଦୁରଙ୍କ ପ୍ରଶ୍ନରେ ଅମ୍ବ ପରିଚୟ ଦେଇଛି ଯେ ବୃନ୍ଦା ଦୂତୀ ସହଜସୁନ୍ଦରୀର ଗର୍ଭରୁ ଶ୍ରୀକୃଷ୍ଣଙ୍କ ଔରସରେ ତା'ର ଜନ୍ମ । ସେ ପୂର୍ବେ ଯମୁନା ତୀରକୁ ଶ୍ରୀରାଧାଙ୍କ ମନ୍ଦିର ପର୍ଯ୍ୟନ୍ତ ବିଲ କରିଥିଲା । ବିଦୁର ଏହି ଗ୍ରେରର ପରିଚୟ ପାଇ ତାକୁ ଖନନ କାର୍ଯ୍ୟରେ ନିଯୁକ୍ତ କରିଅଛନ୍ତି ।

## ଅନୁକ୍ତ ପ୍ରକ୍ଷେପ :

ସାରଳା ମହାଭାରତରେ ଏପରି କେତେକ ପ୍ରସଙ୍ଗ ବା ଉପାଖ୍ୟାନ ସ୍ଥାନ ପାଇଛି, ଯାହାର ବର୍ଣ୍ଣନା ମୂଳ ମହାଭାରତରେ ଦେଖିବାକୁ ମିଳେ ନାହିଁ । ଏଗୁଡ଼ିକ ସାରଳା ଦାସଙ୍କ କଳ୍ପନା-ପ୍ରସୂତ ହୋଇଥିବାରୁ ଏଗୁଡ଼ିକରେ ସାରଳା ଦାସଙ୍କ

ମୌଳିକତା ପ୍ରକଟିତ । ଏଥି ମଧ୍ୟରୁ ଅଳ୍ପ କେତୋଟିର ଆଲୋଚନା କରାଯାଇ-ପାରେ ।

ଶାହାଡ଼ା ଗଛର ମାହାତ୍ମ୍ୟ ସାରଳା ମହାଭାରତ ଆଦି ପର୍ବରେ ବର୍ଣ୍ଣିତ ହୋଇଛି । ଏକଦା ମହାଦେବ ବୃଷଭ ଆରୋହଣ କରି ଯାଉଥିବା ସମୟରେ ବୃଷଭ ବାମପାର୍ଶ୍ୱରେ ଥିବା ଏକ ଶାହାଡ଼ା ଗଛରୁ ପତ୍ରଟିଏ ନେଇ ମଥାରେ ଘେନିଛି । ମହାଦେବ ଏହାର କାରଣ ପଚାରିବାରୁ ବୃଷଭ ଉତ୍ତର ଦେଇଅଛି ଯେ ଶାହାଡ଼ା ପତ୍ର ମଥାରେ ଘେନିଲେ ଅମୃତତୁଲ୍ୟ ଖାଦ୍ୟ ଖାଇବାକୁ ମିଳେ । ସେଦିନ ବୃଷଭକୁ ଉପବାସ ରଖିବା ନିମନ୍ତେ ସ୍ଥିର କରି ମହାଦେବ ଦିନସାରା ତାକୁ ଏଣେ ତେଣେ ବୁଲାଇଛନ୍ତି । ଏଣେ ଘରକୁ ଫେରିବାରେ ଖୁବ୍ ବିଳମ୍ବ ହେବାରୁ ପାର୍ବତୀ ଶିବଙ୍କ ପାଇଁ ପ୍ରସ୍ତୁତ ଦିବ୍ୟ ଅନ୍ନ ଭୁଞ୍ଜିବାକୁ ଆରମ୍ଭ କରିଛନ୍ତି । ଠିକ୍ ଏହି ସମୟରେ ଶିବଙ୍କ ଡମ୍ବରୁ ଶବ୍ଦ ଶୁଭିଛି । ଲଜ୍ଜା ଏବଂ ସଙ୍କୋଚରେ ଖାଇବାକୁ ଆରମ୍ଭ କରିଥିବା ଖାଦ୍ୟ-ଦ୍ରବ୍ୟ ତକ ପାର୍ବତୀ ବୃଷଭ କୁଣ୍ଡିକାରେ ନିକ୍ଷେପ କରିଅଛନ୍ତି । ମହାଦେବ ଗୃହକୁ ଫେରି ବୃଷଭକୁ କିଛି ଖାଦ୍ୟପଦାର୍ଥ ନ ଦେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି; କିନ୍ତୁ ବୃଷଭ ମହା ଆନନ୍ଦରେ ତା' କୁଣ୍ଡିରେ ନିକ୍ଷିପ୍ତ ଅନ୍ନ-ପ୍ରସ୍ୱାଦ ଭକ୍ଷଣ କରି ନିଦ୍ରା ଯାଇଛି । ପରଦିନ ମହାଦେବ ଏକଥା ଜାଣିପାରି ଶାହାଡ଼ା ଗଛର ମହତ୍ତ୍ୱ ବୁଝି-ପାରିଛନ୍ତି ।

( ଆଦିପର୍ବ, ବିରାଟ ପର୍ବ )

ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରେ ସାରଳା ଦାସ ଲେଖିଛନ୍ତି ଯେ ଜନ୍ମକାଳର ନକ୍ଷତ୍ର ଗଣନାନୁଯାୟୀ ଧୃତରାଷ୍ଟ୍ରଙ୍କୁ ବ୍ରହ୍ମରାକ୍ଷସ ଦୋଷ ଲାଗିଥିଲା । ଏଣୁ ସେ ଯେଉଁ କନ୍ୟାକୁ ବିବାହ କରିବାକୁ ଯାଉଥିଲେ, ତା'ର ମୃତ୍ୟୁ ହେଉଥିଲା । ଏହିପରି ଏକଶହ ଆଠଜଣ କନ୍ୟା ମୃତ୍ୟୁ ମୁଖରେ ପଡ଼ିଥିଲେ । ସେହିପରି ଗାନ୍ଧାର ଦେଶ ରାଜାଙ୍କ କନ୍ୟା ଗାନ୍ଧାରୀ ଉଆଁସ ତିଥିରେ ଜନ୍ମ ହୋଇଥିବାରୁ ତାଙ୍କୁ ବିବାହ କରି ବାଇଶି ଜଣ ରାଜା ମୃତ୍ୟୁ ବରଣ କରିଥିଲେ । ଦୈବଯୋଗ ଏ ଦୁହିଁଙ୍କର ବିବାହ ସ୍ଥିର ହେଲା । ବିବାହ ଅନୁଷ୍ଠିତ ହେବା ପୂର୍ବରୁ ଗାନ୍ଧାରୀଙ୍କୁ ବ୍ୟାସଙ୍କ ନିର୍ଦ୍ଦେଶମତେ ଏକ ଶାହାଡ଼ା ଗଛ ସହିତ ବିବାହ ଦିଆଗଲା । ଏହି ଶାହାଡ଼ା ଗଛଟି ସଙ୍ଗେ ସଙ୍ଗେ ଜଳିଗଲା । ତାପରେ ଧୃତରାଷ୍ଟ୍ରଙ୍କ ସହିତ ଗାନ୍ଧାରୀଙ୍କ ବିବାହ ସମ୍ପାଦିତ ହେଲା । ଅପମୃତ୍ୟୁ ଦୋଷ ଖଣ୍ଡନ କରିବା ଶକ୍ତି ଶାହାଡ଼ା ଗଛର ଥିବା ବିଶ୍ୱାସ ଏବେ ମଧ୍ୟ ଓଡ଼ିଶାର ଜନସାଧାରଣ ପୋଷଣ କରନ୍ତି । (ଆଦିପର୍ବ)

ଗୈର ବ୍ୟବହାର କରୁଥିବା ସିନ୍ଧିକାଠିର ଜନ୍ମବୃତ୍ତାନ୍ତରେ ସାରଳା ବର୍ଣ୍ଣନା କରିଛନ୍ତି ଯେ ସଂସାର ସୃଷ୍ଟି କରିବା ସମୟରେ ବ୍ରହ୍ମା ଗୈର ଜାତି ସୃଷ୍ଟି କରିଛନ୍ତି ଓ ସେହି ଗୈର ଜାତି ପାଇଁ ଏକ ପ୍ରକାର ସିନ୍ଧି ଅସ୍ତ୍ର ଉଦ୍ଭାବନ କରିଅଛନ୍ତି, ଯାହାର

ନାମ 'ଲକ୍ଷଣା' । ଏହି ନିର୍ମାଣ କୌଶଳ ଓ ନିର୍ମାଣ କାଳ ସମ୍ବନ୍ଧରେ କେତେକ ବିଚିତ୍ର ବିବରଣୀ ଦିଆଯାଇଛି । ରାଧାଙ୍କ ଗୃହରେ ପ୍ରବେଶ କରିବା ନିମନ୍ତେ ଏହି ଯନ୍ତ୍ରଟି ସହାୟକ ହେବ ଭାବି ବ୍ରହ୍ମା ଏହାକୁ ଶ୍ରୀକୃଷ୍ଣଙ୍କୁ ଦେଇଥିଲେ । ( ଆଦିପର୍ବ )

ଆଉ ଏକ କାଳ୍ପନିକ ଗଳ୍ପର ଅବତାରଣା କରାଯାଇଛି ବୈଦୁର୍ଯ୍ୟ ପର୍ବତ ବର୍ଣ୍ଣନାରେ । କବିଙ୍କ ମତରେ ବୈଦୁର୍ଯ୍ୟ ପର୍ବତରେ ଏକ ବଜ୍ରକୀଟ ବାସ କରିଥାଏ । ତାହାର ଶରୀରର ବର୍ଣ୍ଣ ବୈଦୁର୍ଯ୍ୟ ମଣିର ବର୍ଣ୍ଣ ପରି । ଲୋମଗୁଡ଼ିକର ବର୍ଣ୍ଣ ନୀଳାଭ ବର୍ଣ୍ଣପରି । ତାର ଚଉଦ ଗୋଟି ଆଖି ଅଛି ଏବଂ ସେଥିରୁ ମାଣିକ୍ୟର ଜ୍ୟୋତି ବାହାରୁଛି । ତାର ଦାନ୍ତଗୁଡ଼ିକ ହୀରାରେ ନିର୍ମିତ । ତାର ଚାରିଗୋଟି ପାଦ ଓ ଚାରିଗୋଟି ହାତ ଅଛି । ତା'ର ଜିଭରେ କାଳ ଅଗ୍ନି ବାସ କରେ । ସେ ହଜାରେ ବର୍ଷରେ ଖଣ୍ଡ ପଥର କାଟିଥାଏ ଓ ସେହି ପଥର ଖଣ୍ଡ ହେଉଛି ବୈଦୁର୍ଯ୍ୟ ମଣି ।

( ସଭା ପର୍ବ )

ଶାନ୍ତନୁ ଗଙ୍ଗାଙ୍କୁ ବିବାହ କରିବା ପୂର୍ବରୁ ପ୍ରତିଜ୍ଞା କରିଛନ୍ତି ଯେ ଗଙ୍ଗାଙ୍କୁ ସ୍ୱେଚ୍ଛାଚାରିଣୀ ହେବା ନିମନ୍ତେ ସମସ୍ତ ପ୍ରକାର ସୁଯୋଗ ଦିଆଯିବ । ଗଙ୍ଗାଙ୍କର ଉଗ୍ର ସ୍ୱଭାବ ଏବଂ ସ୍ୱେଚ୍ଛାଚାରିତା ଶାନ୍ତନୁଙ୍କୁ ସର୍ବଦା ପୀଡ଼ିତ କରିଛି । ସନ୍ତାନ ଜନ୍ମହେବା ପରେ ପରେ ଗୋଟି ଗୋଟି କରି ଛଅଗୋଟି ପୁତ୍ରଙ୍କୁ ଗଙ୍ଗା ହତ୍ୟା କରିଅଛନ୍ତି । ପ୍ରତିଜ୍ଞା ଭଗ୍ନ ହେବା ଭୟରେ ଶାନ୍ତନୁ ଗଙ୍ଗାଙ୍କର ଏହି କାର୍ଯ୍ୟରେ ପ୍ରତିବାଦ କରି-ପାରି ନାହାନ୍ତି । ମାତ୍ର ସପ୍ତମ ପୁତ୍ର ଜନ୍ମର ନିଧନ ଅବସରରେ ଶାନ୍ତନୁ ତାଙ୍କୁ ଏକାର୍ଯ୍ୟରୁ ନିବର୍ତ୍ତାଇ ଅଛନ୍ତି । ଏହାଦ୍ୱାରା ପ୍ରତିଜ୍ଞା ଭଙ୍ଗ ହୋଇଥିବାର ଦର୍ଶାଇ ଗଙ୍ଗା ଶାନ୍ତନୁଙ୍କୁ ପରିତ୍ୟାଗ କରି ଅଛନ୍ତି । (ଆଦିପର୍ବ)

ବନ ପର୍ବରେ ସାରଳା ଦାସ ଏକ ମୌଳିକ ଗଳ୍ପର ଅବତାରଣା କରି-ଅଛନ୍ତି । ଏହା ହେଉଛି ସତ୍ୟ ଆମ୍ବ ଗଳ୍ପ । ପାଣ୍ଡବମାନେ ବନବାସ କରୁଥିବା ସମୟରେ ସେମାନଙ୍କୁ ପରୀକ୍ଷା କରିବା ନିମନ୍ତେ ଦୁର୍ଯ୍ୟୋଧନ ଜଣେ ବ୍ରାହ୍ମଣଙ୍କୁ ଦୂତ ରୂପେ ସେମାନଙ୍କ ନିକଟକୁ ପଠାଇଅଛନ୍ତି । ଏହି ଦୂତକୁ କୁହାଯାଇଛି ଯେ ସେ ପାଣ୍ଡବମାନଙ୍କୁ ଅଋତୁ ଫଳ ଭଳି କିଛି ଅସମ୍ଭବ ଦ୍ରବ୍ୟ ଭିକ୍ଷା କରିବ ।

ବ୍ରାହ୍ମଣ ଦୂତ ଘୋର ବନରେ କେତେ ଜଣଙ୍କୁ ଦେଖି ସେମାନେ ପ୍ରକୃତ ପାଣ୍ଡବ କି ନୁହନ୍ତି, ଜାଣିବା ନିମନ୍ତେ ସେମାନଙ୍କୁ ଏକ ପାଚିଲା ଆମ୍ବ ମାଗିଅଛି । ଶରତ ଋତୁରେ ପାଚିଲା ଆମ୍ବ ଆସିବ କେଉଁଠାରୁ ? ଆମ୍ବ ନ ଦେଲେ ବ୍ରାହ୍ମଣ ଅସନ୍ତୁଷ୍ଟ ହେବେ । ଏଣୁ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରାଯାଇଛି । ଶ୍ରୀକୃଷ୍ଣ ଆସି ପାଣ୍ଡବମାନଙ୍କୁ ଆଦେଶ ଦେଇଅଛନ୍ତି ଏକ ଆମ୍ବ ଟାକୁଆ ମାଟିରେ ପୋତିବା ପାଇଁ । ଆମ୍ବ ଟାକୁଆ ପୋତା ଯାଇଛି, ଗଛ ମଧ୍ୟ ଉଠିଛି; ମାତ୍ର ଫଳ ? ଶ୍ରୀକୃଷ୍ଣ ପାଣ୍ଡବ ପାଞ୍ଚଭାଇ ଓ ଦ୍ରୌପଦୀଙ୍କୁ

କହିଅଛନ୍ତି ଯେ ସେମାନେ ପ୍ରତ୍ୟେକେ ସେ ଗଛ ଆଗରେ ନିଜର ପାପ ଓ ଦୁର୍ବଳତା ଅକୁଣ୍ଠ ଚିତ୍ତରେ ପ୍ରକାଶ କରନ୍ତୁ । ସେମାନେ ସ୍ୱୀକାରୋକ୍ତିରେ ଥିବା ସତ୍ୟର ଶକ୍ତି ହିଁ ବୃକ୍ଷକୁ ଫଳବାନ୍ କରାଇପାରିବ ।

ପାଣ୍ଡବ ପାଞ୍ଚଭାଇ କିଛି ନ ଲୁଚାଇ ନିଜ ନିଜର ପାପ ଓ ଦୁର୍ବଳତା ପ୍ରକାଶ କରିଅଛନ୍ତି । ଶେଷକୁ ରହିଛନ୍ତି ଦ୍ରୌପଦୀ । ତାଙ୍କ ସ୍ୱୀକାରୋକ୍ତି ସବୁଠାରୁ ବିସ୍ମୟକର । ପଞ୍ଚସ୍ୱାମୀ ଓ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ସେ ସ୍ୱୀକାର କରିଅଛନ୍ତି ଯେ ପଞ୍ଚସ୍ୱାମୀ ଥିଲେ ମଧ୍ୟ ତାଙ୍କର ବୀର କର୍ଣ୍ଣଙ୍କ ପ୍ରତି କିଛି ଦୁର୍ବଳତା ରହିଛି । ସେମାନଙ୍କ କଥାରେ ଥିବା ସତ୍ୟତା ବଳରେ ବୃକ୍ଷରେ ଆମ୍ବ ଫଳିଛି, ଯାହାର ନାମ ସତ୍ୟାମ୍ବ ।

(ବନପର୍ବ)

ଉଦ୍‌ଯୋଗ ପର୍ବରେ ଥିବା 'ବାବନା ଭୂତ' କାହାଣୀ ସାରଳା ଦାସଙ୍କର ଅନ୍ୟତମ ମୌଳିକ ସୃଷ୍ଟି । କାହାଣୀଟି ଏହିପରି ତୁଙ୍ଗଭଦ୍ରା ନଦୀକୂଳରେ ଜ୍ଞାନପୁର ନାମକ ନଗର । ସେଠାରେ ସମସ୍ତ ଲୋକ ମୃତ୍ୟୁ ପରେ ମୁକ୍ତି ନ ପାଇ ଭୂତ ପାଲଟନ୍ତି । ଶୂଦ୍ରକ ନାମରେ ତନ୍ତ୍ରବିଦ୍ୟା ପ୍ରବୀଣ ଜଣେ ରାଉଳ ( ଗୁଣିଆ) ଏକଦା ନିଜ ସ୍ତ୍ରୀ ସହିତ ସେହି ନଦୀ କୂଳରେ ଗୃହ ନିର୍ମାଣ କରି ବାସ କରିଅଛି । ପରେ ସେ ମାଘି ହଳ ଚାଷ କରିବା ନିମନ୍ତେ ସେହି ଗ୍ରାମର ଗ୍ରାମବାସୀମାନଙ୍କୁ ପାହାଡ଼ ନିକଟସ୍ଥ ଖଣ୍ଡେ ଭଲ ଜମି ମାଗିଅଛି । ଗ୍ରାମବାସୀମାନେ ସେଠାରେ ଭୂତ ଉତ୍ପାତ କରୁଥିବା କଥା କହିବା ସତ୍ତ୍ୱେ ରାଉଳ ସେଠାରେ ଚାଷ ଆରମ୍ଭ କରିଛି । ସେ ପଠାଇଥିବା ହଳିଆ ଓ ବଳଦଙ୍କୁ ଭୂତମାନେ ଡରାଇବା ଫଳରେ ଜମି ପଡ଼ିଆ ରହିଅଛି । ଏହା ଦେଖି ଶୂଦ୍ରକ ମହାମୁଦ୍ରା ନାମକ ଜାଲ ବିଛାଇ ଭୂତମାନଙ୍କୁ ବାନ୍ଧିପକାଇଅଛି । ଭୂତମାନେ ଭୟଭୀତ ହୋଇ ମହାରାଉଳ (ଶୂଦ୍ରକ)କୁ ଷାଠିଏ ପଉଟି ହଳ ଦେବାକୁ ରାଜି ହୋଇଅଛନ୍ତି ।

ଭୂତମାନଙ୍କ ରାଜା 'ବାବନାଭୂତ' କିଛି ଦିନପରେ ସେଠାରେ ଆସି ଦେଖିବାକୁ ପାଇଅଛି ଯେ ସେମାନଙ୍କ ଖେଳ ଭୂଇଁ ଚାଷଭୂଇଁରେ ପରିଣତ ହୋଇଅଛି । ବାବନାଭୂତ ଭୂତମାନଙ୍କଠାରୁ ସବୁକଥା ଶୁଣି ସେମାନଙ୍କ ବାରଣ ସତ୍ତ୍ୱେ ମହାରାଉଳ ପୁଅକୁ ଗ୍ରାସ କରିଅଛି । ମହାରାଉଳ ବାବନାଭୂତକୁ ଲୁହାକଣ୍ଟାରେ କଳିବାକୁ ଉଦ୍ୟତ ହୁଅନ୍ତେ ବାବନାଭୂତ ଭୟଭୀତ ହୋଇ ତାକୁ ୩୬୦ ପଉଟି ସ୍ଥାନ ଦେଇ ମୁକ୍ତ ହୋଇଅଛି ।

ଏହି ଉଦ୍‌ଯୋଗ ପର୍ବରେ କୋକୁଆ ଭୟ ପ୍ରସଙ୍ଗ, ଅନନ୍ତା ଅଳସୁଆ କଥା, ଭାରଦା ବୃତ୍ତାନ୍ତ ଇତ୍ୟାଦି କାଳ୍ପନିକ ଗଳ୍ପମାନ ମଧ୍ୟ ଦେଖିବାକୁ ମିଳେ । ଏହିପରି ରାଶି ରାଶି କାଳ୍ପନିକ ତଥା ମୌଳିକ କାହାଣୀରେ ସାରଳା ମହାଭାରତ ପୂର୍ଣ୍ଣ । ଏହି ପୁସ୍ତକର ଅନ୍ୟତ୍ର ଆଲୋଚିତ ପ୍ରବଚନ ଓ ଲୋକକଥାଗୁଡ଼ିକ

ମଧ୍ୟ ସାରଳାଙ୍କ ମୌଳିକ ସୃଷ୍ଟି ଏବଂ 'ଅନୁପ୍ରକ୍ଷେପ ଭାବେ ଆଲୋଚିତ ହୋଇ-ପାରେ ।

## ଉତ୍କ୍ଷେପ :

ସଂସ୍କୃତ ମହାଭାରତରେ ଅନେକ ବିଷୟ ଅଛି, ଯାହାକି ସାରଳା ମହାଭାରତରେ ପରିତ୍ୟକ୍ତ ହୋଇଅଛି । ଏହାର କେତେକ ଉଦାହରଣ ଦିଆଯାଇ-ପାରେ ।

ଧୃତରାଷ୍ଟ୍ର ଅନ୍ଧ ହୋଇ ଜନ୍ମ ହେବାର କାରଣ ସ୍ୱରୂପ ସଂସ୍କୃତ ମହାଭାରତରେ କୁହାଯାଇଛି ଯେ ବ୍ୟାସଙ୍କ ସହ ଅମ୍ବିକାଙ୍କ ସହବାସ କାଳରେ ବ୍ୟାସଙ୍କର ଉଗ୍ର ରୂପ ଦେଖି ଅମ୍ବିକା ଭୟରେ ଆଖି ମୁଦିଦେଲେ । ତେଣୁ ତାଙ୍କଠାରୁ ଜନ୍ମ ନେଇଥିବା ପୁତ୍ର ଧୃତରାଷ୍ଟ୍ର ଅନ୍ଧ ହେଲେ । କିନ୍ତୁ ସାରଳା ଦାସ ନିଜ ଗ୍ରନ୍ଥରେ ଧୃତରାଷ୍ଟ୍ରଙ୍କ ଅନ୍ଧ ହେବାର କାରଣ କିଛି ଦେଇ ନାହାନ୍ତି ।

ବନବାସ କାଳର ପ୍ରଥମ ଭାଗରେ ପାଣ୍ଡବମାନେ କାମ୍ୟକ୍ୟ ବନରେ ପ୍ରବେଶ କରନ୍ତେ ଦୁଷ୍ଟକର୍ମା ମନୁଷ୍ୟଭକ୍ଷୀ କର୍ମୀର ରାକ୍ଷସ ( କ୍ରୁମ୍ମୀର ରାକ୍ଷସ ) ସେମାନଙ୍କୁ ଆକ୍ରମଣ କରିଅଛି । କ୍ରୁମ୍ମୀର ରାକ୍ଷସ ବକ ରାକ୍ଷସର ଭାଇ ଓ ହିଡ଼ମ୍ବକର ସଖା । ଭୀମ ଓ କର୍ମୀର ରାକ୍ଷସ ମଧ୍ୟରେ ଯୁଦ୍ଧ ହୋଇଛି ଓ କର୍ମୀରର ମୃତ୍ୟୁ ଘଟିଛି । ଏହି ପ୍ରସଙ୍ଗଟି ସାରଳା ଦାସଙ୍କ ମହାଭାରତରେ ଦେଖିବାକୁ ମିଳେ ନାହିଁ ।

କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଅଷ୍ଟାଦଶାଧ୍ୟାୟ ବ୍ୟାପୀ ଗୀତା ଶୁଣାଇ ଥିବାର ସଂସ୍କୃତ ମହାଭାରତରେ ଦେଖିବାକୁ ମିଳେ; କିନ୍ତୁ ସାରଳା ଦାସ ଏହାକୁ ପରିତ୍ୟାଗ କରିଛନ୍ତି । ସମ୍ଭବତଃ ସେ ତାତ୍ତ୍ୱିକ ବିଷୟବସ୍ତୁର ବର୍ଣ୍ଣନା ଅପେକ୍ଷା କବିତ୍ୱପୂର୍ଣ୍ଣ ଦିଗ ପ୍ରତି ଅଧିକ ସଚେତନ ଥିଲେ ।

ମୂଳ ମହାଭାରତରେ ଅଭିମନ୍ୟୁଙ୍କ ମୃତ୍ୟୁ ପରେ ବ୍ୟାସଦେବ ପାଣ୍ଡବମାନଙ୍କୁ ଉପଦେଶ ଓ ସାନ୍ତ୍ୱନା ଦେଇଛନ୍ତି । ଏହା ଦୀର୍ଘ ଷୋଡ଼ଶ ଅଧ୍ୟାୟ ବ୍ୟାପ୍ତ । ଏସବୁ ସାରଳା ପରିତ୍ୟାଗ କରିଛନ୍ତି ।

ସଂସ୍କୃତ ମହାଭାରତର ଶଲ୍ୟ ପର୍ବରେ ଦୁର୍ଯ୍ୟୋଧନଙ୍କ ଉରୁଭଙ୍ଗ ପ୍ରସଙ୍ଗରେ ପ୍ରଦତ୍ତ ସାରସ୍ୱତ ଉପାଖ୍ୟାନ, ଗାନ୍ଧାରୀଙ୍କୁ ଶ୍ରୀକୃଷ୍ଣଙ୍କ ପ୍ରବୋଧନା, ନନ୍ଦିଘୋଷ ରଥରେ ଉପୁଜିଥିବା ଭୟଙ୍କର ଅନଳ ଶ୍ରୀକୃଷ୍ଣ ଉଦରସ୍ଥ କରିବା ପ୍ରଭୃତି ପ୍ରସଙ୍ଗ ସାରଳାଦାସ ପରିହାର କରିଛନ୍ତି ।

ପାଣ୍ଡବ ପଞ୍ଚପୁତ୍ରଙ୍କ ବଧ ପରେ ଦ୍ରୌପଦୀ ଶୋକାକୁଳା ହୋଇ ପଡ଼ିଛନ୍ତି । ଏଥି ନିମନ୍ତେ ସେ ଅଶ୍ୱତ୍ଥାମାଙ୍କୁ ଦୋଷୀ ମନେ କରିଛନ୍ତି । କାରଣ ଅଶ୍ୱତ୍ଥାମା ଦୁର୍ଯ୍ୟୋଧନର ସେନାପତି ହେବାରୁ ପାଣ୍ଡବପୁତ୍ରଗଣ ନିହତ ହେଲେ । ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେବା ନିମନ୍ତେ ଅଶ୍ୱତ୍ଥାମା ମସ୍ତକରୁ ମଣି ଅଣା ହୋଇଅଛି । ଏହି ବିଷୟ ମୂଳ ମହାଭାରତରେ ବର୍ଣ୍ଣିତ ହୋଇଥିବା ସ୍ଥଳେ ସାରଳା ମହାଭାରତରେ ପରିତ୍ୟକ୍ତ ହୋଇଅଛି ।

ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ସୂତ୍ର ଅଲୀକୀକରଣ, ବିସ୍ତୃତୀକରଣ, ଅନୁକ୍ତ-ପ୍ରକ୍ଷେପ ଓ ଉକ୍ତନିକ୍ଷେପ ନାମରେ ଦୁଇ ମହାଭାରତର ତୁଳନା କରାଗଲେ ମଧ୍ୟ ଆଲୋଚନା ସମ୍ପୂର୍ଣ୍ଣ ହେଲାପରି ମନେହୁଏ ନାହିଁ । କାରଣ ଏ ଦୁଇ ମହାଭାରତ ମଧ୍ୟରେ ନାମଗତ, ଆକୃତିଗତ ଇତ୍ୟାଦି କେତେକ ବୈଷମ୍ୟ ପରିଦୃଷ୍ଟ ହୁଏ । ଏଗୁଡ଼ିକର ଆଲୋଚନା କରାଯାଇପାରେ ।

ବ୍ୟାସଦେବଙ୍କ ମହାଭାରତର ଶ୍ଲୋକ ସଂଖ୍ୟା ଏକଲକ୍ଷ, ମାତ୍ର ସାରଳା ଦାସଙ୍କ ମହାଭାରତର ପଦ ସଂଖ୍ୟା ଏକ ଲକ୍ଷ ବୃଳିଶ ହଜାର । ଏଥିରୁ ଏହାର ବିଶାଳତା ଅନୁମିତ ହୁଏ । ପୁନଶ୍ଚ ପ୍ରତ୍ୟେକ ଗ୍ରନ୍ଥ ଅଷ୍ଟାଦଶ ପର୍ବ ବିଶିଷ୍ଟ ହେଲେ ମଧ୍ୟ ପର୍ବଗୁଡ଼ିକର ନାମ ଉଭୟ ଗ୍ରନ୍ଥରେ ସମାନ ନୁହେଁ ଏବଂ କେତେକ ପର୍ବର ନାମକରଣ ମଧ୍ୟରେ ବୈଷମ୍ୟ ଦେଖାଯାଏ । ପର୍ବଗୁଡ଼ିକର ନାମକରଣରେ, ସେଗୁଡ଼ିକରେ ବର୍ଣ୍ଣିତ ଚରିତ୍ର ଓ ବିଷୟ ବସ୍ତୁର ଅବତାରଣାରେ କବିଙ୍କର ସ୍ୱାଧୀନତା, ସ୍ୱକୀୟତା ଏବଂ ମୌଳିକତା ପରିଲକ୍ଷିତ ହୁଏ ।

ମୂଳ ଗ୍ରନ୍ଥର ଆଦିପର୍ବକୁ ସାରଳା ଦାସ ନିଜ ଗ୍ରନ୍ଥରେ ଦୁଇ ଭାଗରେ ବିଭକ୍ତ କରି ଆଦିପର୍ବ ଓ ମଧ୍ୟପର୍ବ ଭାବେ ନାମିତ କରିଛନ୍ତି । ପୁନଶ୍ଚ ମୂଳଗ୍ରନ୍ଥର ସୌପ୍ତିକ ପର୍ବ, ଅନୁଶାସନିକ ପର୍ବ, ମହାପ୍ରସ୍ଥାନିକ ପର୍ବ ବଦଳରେ ସେ ନିଜ ଗ୍ରନ୍ଥରେ ମଧ୍ୟପର୍ବ ଗଦାପର୍ବ, କାର୍ଣ୍ଣିକା ବା ଐଷିକ ପର୍ବ ନାମଧେୟ ତିନିଗୋଟି ନୂତନ ଓ ପ୍ରଧାନ ପର୍ବର ସଂଯୋଗ କରିଛନ୍ତି । ଉଭୟ ଗ୍ରନ୍ଥରେ ଥିବା ପର୍ବ-ଅନୁକ୍ରମଣିକା ନିମ୍ନରେ ପ୍ରଦତ୍ତ ହେଲା ।

**ବ୍ୟାସମୁନିଙ୍କ ମହାଭାରତ**

୧ —ଆଦିପର୍ବ
୨ — ସଭାପର୍ବ
୩—ବନପର୍ବ
୪ — ବିରାଟ ପର୍ବ

**ଶୂଦ୍ରମୁନିଙ୍କ ମହାଭାରତ**

୧—ଆଦିପର୍ବ
୨—ମଧ୍ୟପର୍ବ
୩—ସଭାପର୍ବ
୪ — ବନପର୍ବ

| | |
|---|---|
| ୫—ଉଦ୍‌ଯୋଗ ପର୍ବ | ୫—ବିରାଟ ପର୍ବ |
| ୬—ଭୀଷ୍ମ ପର୍ବ | ୬—ଉଦ୍‌ଯୋଗ ପର୍ବ |
| ୭—ଦ୍ରୋଣ ପର୍ବ | ୭—ଭୀଷ୍ମ ପର୍ବ |
| ୮—କର୍ଣ୍ଣ ପର୍ବ | ୮—ଦ୍ରୋଣ ପର୍ବ |
| ୯—ଶଲ୍ୟ ପର୍ବ | ୯—କର୍ଣ୍ଣ ପର୍ବ |
| ୧୦—ସୌପ୍ତିକ ପର୍ବ | ୧୦—ଶଲ୍ୟ ପର୍ବ |
| ୧୧ ସ୍ତ୍ରୀ ପର୍ବ | ୧୧—ଗଦା ପର୍ବ |
| ୧୨—ଶାନ୍ତ ପର୍ବ | ୧୨—କାଇଁଶିକା ବା ଐଷିକ ପର୍ବ |
| ୧୩—ଅନୁଶାସନିକ ପର୍ବ | ୧୩—ନାରୀ ପର୍ବ |
| ୧୪—ଆଶ୍ରମବାସିକ ପର୍ବ | ୧୪—ଶାନ୍ତ ପର୍ବ |
| ୧୫—ମହାପ୍ରସ୍ଥାନିକ ପର୍ବ | ୧୫—ଆଶ୍ରମିକ ପର୍ବ |
| ୧୬—ଅଶ୍ୱମେଧ ପର୍ବ | ୧୬—ଅଶ୍ୱମେଧ ପର୍ବ |
| ୧୭—ମୌଷଲ ପର୍ବ | ୧୭—ମୂଷଲୀ ପର୍ବ ବା ହରିବଂଶ ପର୍ବ |
| ୧୮—ସ୍ୱର୍ଗାରୋହଣ ପର୍ବ | ୧୮—ସ୍ୱର୍ଗାରୋହଣ ପର୍ବ |

ଉପସଂହାରରେ ଏତିକ କୁହାଯାଇପାରେ ଯେ ଉଭୟ ଗ୍ରନ୍ଥରେ ପର୍ବ ସଂଖ୍ୟା ସମାନ ଥିଲେ ହେଁ ସେଗୁଡ଼ିକର କ୍ରମରେ ତାରତମ୍ୟ ଲକ୍ଷିତ ହେଉଥିବାରୁ ସେଗୁଡ଼ିକରେ ବର୍ଣ୍ଣିତ ବିଷୟବସ୍ତୁରେ ମଧ୍ୟ ତାରତମ୍ୟ ପରିଲକ୍ଷିତ ହୋଇଥାଏ। ଦ୍ୱିତୀୟତଃ ଗୋଟିଏ ଗ୍ରନ୍ଥର ବିଷୟବସ୍ତୁକୁ ଆଖି ଆଗରେ ରଖି ଅନ୍ୟ ଏକ ଗ୍ରନ୍ଥ ରଚନା କରିବା ସମୟରେ ପରବର୍ତ୍ତୀ କବି ଲେଖକଙ୍କର ସ୍ୱକୀୟତା ଓ ସ୍ୱାଧୀନ ଚିନ୍ତାଧାରା ଯେ ନୂତନ ଗ୍ରନ୍ଥରେ ପ୍ରତିଫଳିତ ହେବ, ଏଥିରେ ସନ୍ଦେହ ନାହିଁ। ଫଳତଃ ଉଭୟ ଗ୍ରନ୍ଥ ମଧ୍ୟରେ ବହୁବିଧ ବୈଷମ୍ୟ ଦେଖାଯିବା ସ୍ୱାଭାବିକ। ତୃତୀୟତଃ ମୂଳ ଗ୍ରନ୍ଥଠାରୁ ବୃହତ୍ ହୋଇଥିବା ଏପରି ଏକ ବିଶାଳକାୟ ଗ୍ରନ୍ଥରେ ପାର୍ଥକ୍ୟ ରହିବା କିଛି ବିଚିତ୍ର କଥା ନୁହେଁ। ମୂଳ ମହାଭାରତରେ ସ୍ଥାନ ପାଇଥିବା ବର୍ଣ୍ଣିଷ୍ଟ ଚରିତ ଓ ଘଟଣାମାନଙ୍କର ମୋଟାମୋଟି ଧାରଣା ସାରଳା ମହାଭାରତରେ ମିଳିଥାଏ। କାରଣ କୌରବ-ପାଣ୍ଡବଙ୍କ ଜନ୍ମ, ବିବାଦ ଓ ଶେଷ ପରିଣତି ହିଁ ଉଭୟ ଗ୍ରନ୍ଥର ଉପଜୀବ୍ୟ ବିଷୟବସ୍ତୁ।

## ପ୍ରବଚନ ଓ ନୀତିବାକ୍ୟ

ସାରଳା ମହାଭାରତ ଏ ଦେଶର ଜାତୀୟ ମହାକାବ୍ୟ। ଏଥିରେ ସାରଳା ଦାସ ତତ୍କାଳୀନ ଉତ୍କଳରେ ପ୍ରଚଳିତ ଶତ ଶତ ମନୋହର ପ୍ରବାଦ, ପ୍ରବଚନ ଓ ନୀତି ବାକ୍ୟକୁ ସ୍ଥାନ ଦେଇଅଛନ୍ତି। ଏଣୁ କେତେକ ସମାଲୋଚକ ସାରଳା ମହାଭାରତକୁ

ପ୍ରବାଦ, ପ୍ରବଚନ ଓ ନୀତିବାକ୍ୟର ଖଣି ବୋଲି କହିଥାନ୍ତି କିନ୍ତୁ ପ୍ରଶ୍ନଉଠେ, ଏଗୁଡ଼ିକ ସାରଳା ପାଇଲେ କେଉଁଠାରୁ ? ଏଗୁଡ଼ିକର ଉତ୍ପତ୍ତିର ଉତ୍ସ ସମ୍ବନ୍ଧରେ ନିଶ୍ଚିତ ଭାବେ କୁହାଯାଇପାରେ ଯେ ଏଗୁଡ଼ିକ ମଧ୍ୟରୁ କେତେକ ତତ୍କାଳୀନ ଲୋକମୁଖରେ ପ୍ରଚଳିତ ଥିବ, କେତେକ କବିଙ୍କ କଳ୍ପନାରୁ ଜନ୍ମ ନେଇଥିବ ଏବଂ କେତେକ ସଂସ୍କୃତାଦି ଅନ୍ୟ ଗ୍ରନ୍ଥରୁ ତାଙ୍କ ଦ୍ୱାରା ସଂଗୃହିତ ହୋଇଥିବ । ଯେ ଯାହାହେଉ, ଏଗୁଡ଼ିକର ଚମତ୍କାର ସଂଯୋଜନାରୁ ଜଣାଯାଏ ଯେ ସମସ୍ତ ଯେପରି ତାଙ୍କର ନିଜସ୍ୱ । ସ୍ଥାନ, କାଳ ଓ ପାତ୍ର ବିଚାରରେ ଏହି ପ୍ରବଚନ ଓ ନୀତିବାକ୍ୟଗୁଡ଼ିକର ଯଥାଯଥ ପ୍ରୟୋଗ କରି ସେ ନିଜର ପାଣ୍ଡିତ୍ୟ, ବହୁଶାସ୍ତ୍ର ଦର୍ଶିତା ଓ ଦୂରଦୃଷ୍ଟିର ସମ୍ୟକ୍ ପରିଚୟ ଦେଇଛନ୍ତି । ଏଠାରେ କେତେକ ଲୋକପ୍ରିୟ ପ୍ରବଚନ ଓ ନୀତିବାକ୍ୟର ଆଲୋଚନା କରାଯାଇ ପାରେ ।

## ପ୍ରବଚନ

**୧ । ଗଙ୍ଗା କହିଲେ ଥିବ, ଗାଙ୍ଗୀ କହିଲେ ଯିବ :**

ଏହି ଆପ୍ତ ବାକ୍ୟଟି ଗଙ୍ଗା ଓ ଶାନ୍ତନୁଙ୍କ ଦାମ୍ପତ୍ୟ ଜୀବନରେ କବି ପ୍ରତିଷ୍ଠା କରିଛନ୍ତି । ଶତ ଦୋଷ ତ୍ରୁଟି ସତ୍ତ୍ୱେ ନୀରବ ରହିବା ଏବଂ ଅତି ଅସହ୍ୟ ହେବାବେଳେ ସାମାନ୍ୟ ପ୍ରତିବାଦ କରିବା ଦ୍ୱାରା କିଛି ଅଘଟଣ ଘଟିବା ଅର୍ଥରେ ଏହା ପ୍ରଚଳିତ ।

ଗଙ୍ଗା ଶାନ୍ତନୁଙ୍କୁ ନିଜର ଅନିଚ୍ଛାସତ୍ତ୍ୱେ ବିବାହ କରିଥିଲେ । ଏହି ବିବାହ ଥିଲି ସର୍ତ୍ତମୂଳକ । ସର୍ତ୍ତଟି ହେଲା

"ଗଙ୍ଗା ବୋଲିଣ ତୁ ବୋଲୁଥିବୁ ଅନୁବ୍ରତେ
ଗାଙ୍ଗୀ ବୋଇଲେ ନ ଥାଇଟି ପୁରେଇ ମୋର ବ୍ରତେ ।"
(ଆଦିପର୍ବ ପୃ ୨୩)

ଅର୍ଥାତ୍ ଗଙ୍ଗାଙ୍କ ସ୍ୱେଚ୍ଛାଚାରିତା ବିରୁଦ୍ଧରେ ଶାନ୍ତନୁ କେବେହେଲେ ସ୍ୱର ଉତ୍ତୋଳନ କରିବେ ନାହିଁ । ଯଦି କେବେ କରନ୍ତି, ଗଙ୍ଗା ତାଙ୍କୁ ପରିତ୍ୟାଗ କରିବେ । ସମୟକ୍ରମେ ଗଙ୍ଗା ସ୍ୱେଚ୍ଛାଚାରିଣୀ ହୋଇ ପଡ଼ିଛନ୍ତି ଏବଂ ତାଙ୍କ ଔଦ୍ଧତ୍ୟ ଦିନକୁ ଦିନ ବୃଦ୍ଧି ପାଇଛି । ଏପରିକି ସେ ଶାନ୍ତନୁଙ୍କୁ ନାନା ପ୍ରକାର କଷଣ ଦେଇଛନ୍ତି । ସ୍ୱଭାବରେ ସେ ଏତେ ଉଗ୍ର ହୋଇ ପଡ଼ିଛନ୍ତି ଯେ ନିଜେ ନିଜ ଗର୍ଭଜାତ ଛଅଗୋଟି ପୁତ୍ର ସନ୍ତାନଙ୍କୁ ଜନ୍ମ ଦେବା ମାତ୍ରେ ସ୍ୱହସ୍ତରେ ହତ୍ୟା କରିବାକୁ ସେ କୁଣ୍ଠାବୋଧ କରି ନାହାନ୍ତି । ଶାନ୍ତନୁଙ୍କ ଆଖି ଆଗରେ ଏସବୁ ଘଟିଗଲେ ମଧ୍ୟ ସର୍ତ୍ତଭଙ୍ଗ ହେବା ଆଶଙ୍କାରେ ସେ ପ୍ରତିବାଦ କରି ପାରି ନାହାନ୍ତି; ମାତ୍ର ସପ୍ତମ ପୁତ୍ରକୁ ବଧ କରିବାକୁ

ଗଙ୍ଗା ଉଦ୍ୟତ ହୁଅନ୍ତେ ଶାନ୍ତନୁଙ୍କ ଧୈର୍ଯ୍ୟର ବାନ୍ଧ ଭୁଶୁଡ଼ି ପଡ଼ିଅଛି । ସେ ନିଜର ପ୍ରତିଶ୍ରୁତି ଭୁଲିଯାଇ ଗଙ୍ଗାଙ୍କ ହାତ ଧରି ପକାଇ ଚିତ୍କାର କରି ଉଠିଛନ୍ତି —

"ଆଲୋ ଛଡ଼ପୁଅ ମାଇଲୁ ନ ପୂରିଲା ତୋର ଅଭିଷ୍ଟି
ଆଲୋ ଆଲୋ ଗାଙ୍ଗୀ ତୁ ଅଛୁ ବଡ଼ ମନ୍ଦ ନଷ୍ଟି"
( ଆଦିପର୍ବ ପୃ ୩୯ )

ଏହା ଫଳରେ ସର୍ତ୍ତ ଭଙ୍ଗ ହୋଇଛି ଏବଂ ଗଙ୍ଗା ଶାନ୍ତନୁଙ୍କୁ ପରିତ୍ୟାଗ କରିଛନ୍ତି । ଏହି ସମୟରେ ଗଙ୍ଗା କହିଛନ୍ତି —

ଗଙ୍ଗା ବୋଇଲେ ମୁଁ ଆଉ ଗାଙ୍ଗୀ ବୋଇଲେ ନ ଆଇଂ
ଗାଙ୍ଗୀ ବୋଲିଲୁ ତୁ ଯାଉଛି ମୁଁ ବ୍ରତ ପୂରୋଇ ।"
( ଆଦିପର୍ବ —ପୃ: ୪୦ )

## ୨ । ଧୃତରାଷ୍ଟ୍ରକୁ କନ୍ୟା ନାହିଁ, କି ଗାନ୍ଧାରୀକୁ ବର ନାହିଁ :

ବର କନ୍ୟାର ବିବାହ ଯୋଗାଡ଼ ହୋଇ ନ ପାରିଲେ କିମ୍ବା ଯୋଗାଡ଼ ହୋଇ ବାରମ୍ବାର ଭାଙ୍ଗି ଯାଉଥିଲେ, ଏହି ପ୍ରବଚନଟି ଲୋକ ମୁଖରେ କଥିତ ହୋଇଥାଏ । ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରେ କବି ଏହି ପ୍ରବଚନଟିର ବ୍ୟବହାର କରିଛନ୍ତି ।

ଜନ୍ମକାଳର ନକ୍ଷତ୍ର ଗଣନାନୁସାରେ ଧୃତରାଷ୍ଟ୍ରଙ୍କୁ ବ୍ରହ୍ମରାକ୍ଷସ ଦୋଷ ଲାଗିଥିବାରୁ ତାଙ୍କର ଯେଉଁ କନ୍ୟା ସହିତ ବିବାହ ହେଉଥିଲା, ସେ ମୃତ୍ୟୁ ମୁଖରେ ପଡ଼ୁଥିଲା । ଏହିପରି ଏକଶହ ଆଠଜଣ କନ୍ୟା ଇହଧାମ ତ୍ୟାଗ କରିଥିଲେ । ଏଣେ ସେହିପରି ଗାନ୍ଧାର ଦେଶର ରାଜକନ୍ୟା ଗାନ୍ଧାରୀ ଉଆଁସ ତିଥିରେ ଜନ୍ମ ହୋଇଥିବାରୁ ତାଙ୍କ ସହ ବିବାହ କରିବାକୁ ଆସି ବାଇଶି ଜଣ ରାଜା ମୃତ୍ୟୁ ବରଣ କରିଥିଲେ । ଦୈବଯୋଗକୁ ଏ ଦୁହିଁଙ୍କର ବିବାହ ସ୍ଥିର ହେଲା । ଗାନ୍ଧାରୀଙ୍କୁ ଶାହାଡ଼ା ଗଛ ସହିତ ବିବାହ କରାଇବା ପରେ ଦୁଇଜଣଙ୍କ ବିବାହ ସମ୍ପାଦିତ ହେଲା । ସାରଳା ଦାସ ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି —

"ଧୃତରାଷ୍ଟ୍ରକଇଂ ନାହିଂ କନ୍ୟା ଗାନ୍ଧାରୀକି ନାହିଂ ବର
ଯେହ୍ନେ ଜାତି ବ୍ରହ୍ମ ଅସୁରୀ ସେ ବ୍ରହ୍ମ ଅସୁର ।"
( ଆଦିପର୍ବ—ପୃ : ୧୧୮ )

ଏହି କଥାଟି ସାରଳା ମହାଭାରତରୁ କ୍ରମଶଃ ଲୋକମୁଖରେ ପ୍ରବଚନ ଆକାରରେ ପ୍ରଚଳିତ ।

**୩ । ଉଆଁ ଷୀ କନ୍ୟାକୁ ଶାହାଡ଼ା ବର :**

ଉଆଁଷ ବା ଅମାବାସ୍ୟା ତିଥିରେ ଜନ୍ମଲାଭ କରିଥିବା କନ୍ୟାର ବିବାହ ପ୍ରସଙ୍ଗରେ ଏହି ପ୍ରବଚନଟି ଲୋକମୁଖରେ ଶୁଣାଯାଏ । ଗାନ୍ଧାରୀ ଉଆଁଷୀ କନ୍ୟା ଥିବାରୁ ତାଙ୍କ ବିବାହ ପ୍ରସଙ୍ଗରେ କବି ସାରଳା ଦାସ ଏହି ପ୍ରବଚନଟି ବ୍ୟବହାର କରିଛନ୍ତି ।

ଗାନ୍ଧାର ରାଜକନ୍ୟା ଗାନ୍ଧାରୀ ଉଆଁସ ତିଥିରେ ରାକ୍ଷସଗଣରେ ସମ୍ଭୂତା ହୋଇଥିବାରୁ ତାଙ୍କ ପାଇଁ ଯେଉଁ ବରମାନଙ୍କୁ ବରଣ କରାଯାଉଥିଲା, ସେମାନେ ମୃତ୍ୟୁ ମୁଖରେ ପଡ଼ୁଥିଲେ । ଏହିପରି ବାଇଶି ଜଣ ରାଜାଙ୍କର ମୃତ୍ୟୁ ଘଟିଥିଲା । ଗାନ୍ଧାରୀଙ୍କ ଜନ୍ମକାଳୀନ ତିଥି, ଲଗ୍ନ ଇତ୍ୟାଦି ସମ୍ବନ୍ଧରେ ଜ୍ୟୋତିଷ ଶାସ୍ତ୍ର ନିପୁଣ କବି ସାରଳା ଦାସ କହିଅଛନ୍ତି—

"କୃତ୍ତିକା ନକ୍ଷତ୍ରେ ଉପୁଜିଲା ଗାନ୍ଧାରୀ
ଆବର ଉଆଁଷୀ ହୋଇଲା ଜାତରେ ବ୍ରହ୍ମ ଯେ ଅସୁରୀ ।"
( ଆଦିପର୍ବ ପୃ : ୧୧୬ )

ଗାନ୍ଧାରୀଙ୍କ ବିବାହ ଧୃତରାଷ୍ଟ୍ରଙ୍କ ସହିତ ହେବା ନିମନ୍ତେ ସ୍ଥିର ହେବା ପରେ ଧୃତରାଷ୍ଟ୍ରଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରିବା ନିମନ୍ତେ ପ୍ରଥମେ ଗାନ୍ଧାରୀଙ୍କୁ ଏକ ଶାହାଡ଼ା ଗଛ ସହିତ ବିବାହ ଦେବାକୁ ବ୍ୟାସଦେବ ଏହିପରି ନିର୍ଦ୍ଦେଶ ଦେଲେ—

"ଶୁଣ ହେ ରାଜା ଯେବେ ସାହାଡ଼ା ବୃକ୍ଷ ଯେ ଦେଖିବା
ଗାନ୍ଧାରୀକି ତାହା ପ୍ରଦାନ କରିବା ।" (ଆଦିପର୍ବ—ପୃ : ୧୧୭)

ତାଙ୍କ ନିର୍ଦ୍ଦେଶ ପାଳିତ ହେଲା । ଗାନ୍ଧାରସେନ ଏକ ଶାହାଡ଼ା ଗଛକୁ ବର ବେଶରେ ସଜ୍ଜିତ କରାଇ ତାହା ସହିତ ଗାନ୍ଧାରୀଙ୍କୁ ବିବାହ ଦେଲେ । ଏପରି କରିବା ଦ୍ୱାରା ଶାହାଡ଼ା ଗଛଟି ଜଳିଗଲା । ଏଥିରୁ ପ୍ରତିପାଦିତ ହେଲା ଯେ ସେ ସମୟରେ ଶାହାଡ଼ା ଗଛର ଅପମୃତ୍ୟୁ ଦୋଷ ଖଣ୍ଡନ ଶକ୍ତି ଥିବାର ଲୋକବିଶ୍ୱାସ ଥିଲା । ଉଆଁଷୀ କନ୍ୟା କ୍ଷେତ୍ରରେ ଏହି ଶାହାଡ଼ା ବିବାହ ବିଧି ମଧ୍ୟ ଓଡ଼ିଆ ସମାଜରେ ପ୍ରଚଳିତ ।

**୪ । ପ୍ରଥମ ଯୁଦ୍ଧରେ ଭୀମ ହାରେ :**

ଯେ କୌଣସି କାର୍ଯ୍ୟରେ ପ୍ରଥମେ ଅକୃତକାର୍ଯ୍ୟ ହେଲେ ଏ ପ୍ରବଚନଟି ଉଚ୍ଚାର କରାଯାଇଥାଏ । ପ୍ରଥମ ଚେଷ୍ଟାରେ ଯଦି କେହି ଅସଫଳ ହୁଏ, ପରବର୍ତ୍ତୀ ଚେଷ୍ଟାରେ ସେ ନିଶ୍ଚୟ ସଫଳକାମ ହେବ – ଏହା ହେଉଛି ଏହି ପ୍ରବଚନର ଅର୍ଥ ।

ଭୀମ ଶିଶୁ ଥିବା ଅବସ୍ଥାରେ ଏକଦା କୁନ୍ତୀ ଗୋଟିଏ ବାଘକୁ ଦେଖି ଭୀମକୁ 'ଶତଶୃଙ୍ଗ ପର୍ବତରେ ପରିତ୍ୟାଗ କରି ପର୍ବତର ଉଚ୍ଚ ସ୍ଥାନରେ ଥିବା ଏକ ବୃକ୍ଷ ଉପରକୁ ଉଠିଯାଇଛନ୍ତି । ହାତଗୋଡ଼ ବାଡ଼େଇ କାନ୍ଦିବା ଶିଶୁର ସ୍ୱଭାବ । ଭୀମ ମଧ୍ୟ ମାତାଙ୍କ ଅନୁପସ୍ଥିତିରେ ହାତଗୋଡ଼ ଛାଟି କାନ୍ଦିବାକୁ ଆରମ୍ଭ କରିଛନ୍ତି । ଏହି ସମୟରେ ବାଘ ଆସି ଭୀମଙ୍କ ପାଖରେ ପହଞ୍ଚି ଯାଇଅଛି । କ୍ରନ୍ଦନରତ ଭୀମଙ୍କ ପାଦ ମସ୍ତକରେ ଲାଗିବାରୁ ବାଘର ମୃତ୍ୟୁ ଘଟିଛି । ପୁନଶ୍ଚ ତାଙ୍କ ବାମ ପାଦର କାଣି ଆଙ୍ଗୁଳି ବାଜିବା ମାତ୍ରେ ଶତଶୃଙ୍ଗ ଗିରିର ଗୋଟିଏ ଶୃଙ୍ଗ ଭାଙ୍ଗି ଯାଇଛି । ଶତଶୃଙ୍ଗ ପର୍ବତ କ୍ରୋଧାନ୍ୱିତ ହୋଇ ଭୀମଙ୍କୁ ଅଭିଶାପ ଦେଇଅଛି—"ଆରେ ଆରେ ଭୀମା ତୁ ପ୍ରଥମ ଯୁଦ୍ଧେ ହାରି" (ଆ: ପ-ପୃ ୨୦୫) କୁନ୍ତୀ ଏହା ଦେଖି ଶତଶୃଙ୍ଗ ପର୍ବତକୁ ଶାପ ଦେଇଅଛନ୍ତି । ପର୍ବତ ଭୟଭୀତ ହୋଇ କହିଛି ଯେ ପ୍ରଥମ ଯୁଦ୍ଧରେ ହାରିଲେ ମଧ୍ୟ 'ଶତଶୃଙ୍ଗ' 'ଶତଶୃଙ୍ଗ' ସ୍ମରଣ କଲେ ଦ୍ୱିତୀୟ ଯୁଦ୍ଧରେ ତାଙ୍କୁ କେହି ପରାସ୍ତ କରି ପାରିବେ ନାହିଁ, ସେ ନିଶ୍ଚୟ ଜୟଲାଭ କରିବ ।

## ୫ । ଭୀମର ବଳ କୁଇନ୍ତାକୁ ଜଣା :

ପ୍ରତ୍ୟକ୍ଷଦର୍ଶୀର ବିବରଣୀ ଉପରେ ସର୍ବଦା ନିର୍ଭର କରିବା ଉଚିତ—ଏହି ଅର୍ଥରେ ପ୍ରବଚନଟି ବ୍ୟବହୃତ ହୁଏ ।

(୪ର୍ଥ ପ୍ରବଚନ ବ୍ୟାଖ୍ୟାର ଅନୁରୂପ)

## ୬ । ମନ ଜାଣେ ପାପ, ମାଆ ଜାଣେ ବାପ :

ଏହା ଏକ ବହୁ ପ୍ରଚଳିତ ପ୍ରବଚନ । ଏହା ସାରଳା ଦାସଙ୍କ ମୌଳିକ ସୃଷ୍ଟି । ପାଣ୍ଡବ ପାଞ୍ଚଭାଇଙ୍କ ମଧ୍ୟରୁ ପ୍ରତ୍ୟେକ ଭିନ୍ନ ଭିନ୍ନ ପିତାଙ୍କ ଔରସରୁ ଜନ୍ମ ହୋଇଥିବାରୁ ମହାମାନୀ ଦୁର୍ଯ୍ୟୋଧନ ସେମାନଙ୍କୁ ନିନ୍ଦିତ କରିବା ନିମନ୍ତେ ପ୍ରତ୍ୟେକଙ୍କ ପିତାଙ୍କ ନାମାନୁଯାୟୀ ରାଜସଭା ମଧ୍ୟରେ ସମ୍ବୋଧନ କରୁଥାନ୍ତି । ଭୀମଙ୍କୁ 'ବଯ ହୋ ପବନ ପୁତ୍ର' ବୋଲି ସମ୍ବୋଧନ କରିବାବେଳେ ଭୀମଙ୍କୁ ଖୁବ୍ ବାଧୁଥାଏ । କ'ଣ କରିବେ, ଉପାୟ କିଛି ନାହିଁ । ଯେତେ ବାଧିଲେ ମଧ୍ୟ ନୀରବ ରହିବାକୁ ପଡ଼ୁଥାଏ । ଭୀମଙ୍କର ଏ ଦୁର୍ଦ୍ଦଶା ଦେଖି ଶ୍ରୀକୃଷ୍ଣ ତାଙ୍କୁ ସାନ୍ତ୍ୱନା ଦେବା ନିମନ୍ତେ ଦୁର୍ଯ୍ୟୋଧନଙ୍କ ପିତାମାତାଙ୍କ ସମ୍ବନ୍ଧରେ ସୂଚନା ଦେଇ ଦୁର୍ଯ୍ୟୋଧନଙ୍କୁ ଗୋଲକ ପୁତ୍ର ବୋଲି ସମ୍ବୋଧନ କରିବା ନିମନ୍ତେ ଶିକ୍ଷା ଦେଇଛନ୍ତି । ଏହାଶୁଣି ହୁରୁମା ଭୀମ ଦୁର୍ଯ୍ୟୋଧନଙ୍କୁ ଅପମାନ ଦେବା ନିଶାରେ ବିଭୋର ହୋଇପଡ଼ିଛନ୍ତି । ପରଦିନ ରାଜସଭାରେ ଦୁର୍ଯ୍ୟୋଧନ ଭୀମଙ୍କୁ ଦେଖି 'ପବନ ସୁତ ବଯ' ବୋଲି କହିଛନ୍ତି । ଭୀମ ତତ୍‌କ୍ଷଣାତ୍ ହସି ହସି କହିଛନ୍ତି, "ଆହେ ଗୋଲକ ପୁତ୍ର ମୁଁ ବଯୁଛି ।" ଏହା ଶୁଣି ଦୁର୍ଯ୍ୟୋଧନ ଖୁବ୍ ଅପମାନ ବୋଧ କରିଅଛନ୍ତି । କାରଣ ଗୋଲକ ପୁତ୍ର କହିଲେ ଶାହାଡ଼ା

ବୃକ୍ଷର ପୁତ୍ରକୁ ବୁଝାଏ; ପୁନଶ୍ଚ, ବୃଧବାର ଗର୍ଭଜାତ ଜାରଜ ସନ୍ତାନକୁ ବୁଝାଏ । ଭୀମର ତାଙ୍କୁ 'ଗୋଳକ ପୁତ୍ର' କହିବା ପଛରେ ଥିବା ରହସ୍ୟ ଜାଣିବା ନିମନ୍ତେ ଦୁର୍ଯ୍ୟୋଧନ ଋଷିଙ୍କର ଶୋଇଛନ୍ତି । ଏ ସମ୍ବନ୍ଧୀୟ ସମସ୍ତ ବୃତ୍ତାନ୍ତ ମାତା ଗାନ୍ଧାରୀ ଯେ ନିଶ୍ଚୟ କହିପାରିବେ—ଏଥିରେ ସେ ନିଃସନ୍ଦେହ ଥିଲେ । କାରଣ—

"ମନହିଂ ସେ ଜାଣଇ ଗୋ ହୃଦରେ ଯେତେ ପାପ
ମାତା ହିଂ ସେ ଜାଣଇ ପୁତ୍ରର ଯେତେ ବାପ ।"

(ଆଦିପର୍ବ—ପୃ: ୪୫୭)

## ୭ । ଝିମେଟି (ଝିମାଣି) ଖେଳରୁ ମହାଭାରତ :

ସାମାନ୍ୟ କାରଣରୁ ବିରାଟ ଗଣ୍ଡଗୋଳ ସୃଷ୍ଟି ହେବାର ଦେଖିଲେ, ଯେ କୌଣସି ଓଡ଼ିଆ ପାଟିରୁ ଏ ପ୍ରବଚନଟି ବାହାରିପଡ଼େ ।

କୌରବ ଓ ପାଣ୍ଡବମାନେ ପ୍ରାୟ ସମବୟସୀ ଥିବାରୁ ଏକତ୍ର ବିଦ୍ୟା ଶିକ୍ଷା କରୁଥିଲେ । ସେମାନଙ୍କ ମଧ୍ୟରେ ଏକଦା ଝିମାଣି ବା ଝିମିଟି (ଆଧୁନିକ କବାଡ଼ି) ଖେଳ ଆୟୋଜିତ ହୋଇଥିଲା । ଅସମ୍ଭବ ଭାବେ ବଳବାନ ଥିବାରୁ ଭୀମ ଏହି ଖେଳରେ କୌରବମାନଙ୍କୁ ବାରମ୍ବାର ପରାସ୍ତ କରିଥିଲେ । ଫଳତଃ ଦୁର୍ଯ୍ୟୋଧନାଦି କୌରବମାନେ ଲଜ୍ଜିତ ହୋଇଥିଲେ ଏବଂ ସେମାନଙ୍କ ମନରେ ପ୍ରତିହିଂସାର ବହ୍ନି ଜଳି ଉଠିଥିଲା । ଶେଷରେ ଏହି ପ୍ରତିହିଂସା ବହ୍ନିର ଆକାର ବଢ଼ି ବଢ଼ି ବିରାଟ ମହାଭାରତ ଯୁଦ୍ଧର ରୂପ ଗ୍ରହଣ କରିଥିଲା । (ଆଦିପର୍ବ)

## ୮ । ଭିତରେ ଭିତରେ ଶଳାକୁ ନମସ୍କାର

ସାରଳା ମହାଭାରତର ଏହି ପ୍ରବଚନଟି ଲୋକମୁଖରେ ବିଶେଷ ପ୍ରଚଳିତ ।

('ଲୋକକଥା' ପରିଚ୍ଛେଦ ଦ୍ରଷ୍ଟବ୍ୟ)

## ୯ । ଗଧ ପାଦ ଧରିବା

ଅଦମଧ୍ୟରେ ନୀଚ ଜନର ଯେ କୌଣସି ସର୍ତ୍ତରେ ମଧ୍ୟ ରାଜି ହେବାକୁ ପଡ଼େ —ଏହି ଅର୍ଥରେ ଉକ୍ତ ପ୍ରବଚନଟି ଏବେ ମଧ୍ୟ ଲୋକ ମୁଖରେ ପ୍ରଚଳିତ ।

ଜରାସନ୍ଧକୁ ବଧ କରିବା ନିମନ୍ତେ ଶ୍ରୀକୃଷ୍ଣ ସହ ଭୀମ ଓ ଅର୍ଜୁନ ତାହାର ଦୁର୍ଗ ନିକଟରେ ଉପସ୍ଥିତ; ମାତ୍ର ଭିତରକୁ ଯିବେ କିପରି ? ପ୍ରଥମ ଦ୍ୱାରରେ ପ୍ରହରୀ ଗୋଟିଏ ମେଣ୍ଢା ଏବଂ ଦ୍ୱିତୀୟ ଦ୍ୱାରରେ ଗୋଟିଏ ଗଧ । ସେମାନେ କୌଣସିମତେ ପ୍ରଥମ ଦ୍ୱାର ପାର ହୋଇଯାଇଛନ୍ତି; ଦ୍ୱିତୀୟ ଦ୍ୱାର ତ ପୁଣି ଅତିକ୍ରମ କରିଯିବାକୁ ପଡ଼ିବ ? ଦ୍ୱାରରକ୍ଷକ ସେମାନଙ୍କୁ ଦେଖି ଯଦି ଶବ୍ଦ କରେ, ତେବେ ସର୍ବନାଶ ।

ତେଣୁ ଶ୍ରୀକୃଷ୍ଣ ଗଧକୁ ନୀରବରେ ରହିବା ପାଇଁ ଅନୁରୋଧ କରିଛନ୍ତି । କିନ୍ତୁ ଗଧ ଏକ ସର୍ତ୍ତ ବାଢ଼ିଛି । ସର୍ତ୍ତଟି ହେଲା—

"ଇନ୍ଦ୍ରାଦ୍ୟେ ବଧ ତୁ ଯେ କରସି ଜରାସନ୍ଧ
ସ୍ୱେଚ୍ଛା ତୋହୋର ଶ୍ରୀକରେ ଛୁଅଁ ମୋହୋର ପାଦ ।"

(ସଭାପର୍ବ ପୃ: ୪୧)

ଜରାସନ୍ଧକୁ ମାରିବାକୁ ହେଲେ ଗଧର ପାଦ ଛୁଇଁବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଏଣୁ ଶ୍ରୀକୃଷ୍ଣ ବାଧ୍ୟ ହୋଇ ଗଧର ପାଦ ଛୁଇଁ ନିଜ ଲକ୍ଷ୍ୟ ପଥରେ ଆଗେଇ ଯାଇଛନ୍ତି । କବି କହିଅଛନ୍ତି —

"ସ୍ନେହସନକ ବଚନରେ ଦେବ ଦାମୋଦର
ଗର୍ଦ୍ଦଭ ଚରଣ ଦେବ ଛୁଇଁଲେ ବାମକର ।"

(ସଭାପର୍ବ, ପୃ-୪୨)

ଏହିପରି ପରିସ୍ଥିତି ଉପୁଜିବାର ଲକ୍ଷ୍ୟ କଲେ, ଏବେ ମଧ୍ୟ ଯେ କୌଣସି ଓଡ଼ିଆ କହେ, "ସେଥିରେ କ'ଣ ଅଛି, ଅସମୟରେ ଭଗବାନ ତ ପୁଣି ଗଧପାଦ ଧରିଥିଲେ ।"

## ୧୦ । ଶିମିଳି ଗଛରେ ଦେହ ଘଷିବା :

ପ୍ରକୃତ ଗୁଣ ନ ଜାଣି ଉପରର ଚାକଚକ୍ୟରେ ଭୁଲିଯାଇ କିଛି ଗୋଟାଏ କରି ବସିବା ଫଳରେ ବିପଦକୁ ଡାକି ଆଣିବା, କିମ୍ବା ଭଲ ମନ୍ଦ ବିଚାର ନ କରି କୌଣସି କାର୍ଯ୍ୟକୁ ହଠାତ୍ କରିବସିବା ଲକ୍ଷ୍ୟ କଲେ ଏହି ପ୍ରବଚନଟି କୁହାଯାଏ ।

ନିକୁମ୍ଭ ଦୈତ୍ୟ କର୍ତ୍ତୃକ ଅପହୃତା ରମ୍ଭାର କନ୍ୟା ହାରାବତୀ ନିଦ୍ରାମଗ୍ନ ଅର୍ଜ୍ଜୁନଙ୍କ ରୂପରେ ମୁଗ୍ଧା ହୋଇ ତାଙ୍କୁ ନିଜ ଶୟନ କକ୍ଷକୁ ନେଇ ଯାଇଅଛି ଏବଂ କାମାତୁରା ହୋଇ ତାଙ୍କ ସହିତ ଶୃଙ୍ଗାରରତ ହେବାକୁ ଇଚ୍ଛା ପ୍ରକାଶ କରିଅଛି । ଏହାର ପୂର୍ବାଭାସ ସ୍ୱରୂପ ସେ ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କରିବାକୁ ଉଦ୍ୟତ ହୋଇଛି । ଏହି କାର୍ଯ୍ୟରୁ ନିବୃତ୍ତ ହେବା ନିମିତ୍ତ ତାକୁ ଉପଦେଶ ଦେଇ ଅର୍ଜ୍ଜୁନ କହିଛନ୍ତି —

"ଶାମିଳୀ ଫୁଲ ଯେ ଦେଖିଲୁ ସୁରଙ୍ଗ
ସେ ବୃକ୍ଷ କୋଳ କଲେ ବିଦାରି ହୋଇଇ ଅଙ୍ଗ ।"।

(ବନପର୍ବ-ପୃ: ୫୩୨)

ଏଠାରେ ଅର୍ଜ୍ଜୁନଙ୍କ ଚରିତ୍ରର ମହାନୀୟତା ଫୁଟି ଉଠିଛି ।

**୧୧ । କର୍ଣ୍ଣ ମଲେ ପାଞ୍ଚ, ଅର୍ଜ୍ଜୁନ ମଲେ ପାଞ୍ଚ :**

ଗୋଟିଏ ପଦାର୍ଥ ହରାଇବା ସଙ୍ଗେ ସଙ୍ଗେ ସମାନ ଗୁଣ ବା ସମାନ ମୂଲ୍ୟ ବିଶିଷ୍ଟ ଅନ୍ୟ ଗୋଟିଏ ପଦାର୍ଥ ପ୍ରାପ୍ତ ହେଲେ କିମ୍ବା ଉଭୟ ଲାଭ ଓ କ୍ଷତି ସମାନ ହେଲେ ଏହି ପ୍ରବଚନଟି ବ୍ୟବହାର କରାଯାଏ ।

ମହାଭାରତ ଯୁଦ୍ଧରେ କର୍ଣ୍ଣ ଓ ଅର୍ଜ୍ଜୁନ ପରସ୍ପରର ପ୍ରତିଦ୍ୱନ୍ଦୀ । ଦୁହେଁ ମଧ୍ୟ ଉଚ୍ଚକୋଟୀର ବୀର । ଉଭୟେ କୁନ୍ତୀଙ୍କ ପୁତ୍ର । ମାତ୍ର କର୍ଣ୍ଣ ସର୍ବଦା ମାତାଙ୍କ ସ୍ନେହରୁ ବଞ୍ଚିତ । ଯେ ଯାହାହେଉ, କର୍ଣ୍ଣଙ୍କୁ ମିଶାଇ କୁନ୍ତୀଙ୍କର ଛଅ ପୁଅ । ଯୁଦ୍ଧରେ କର୍ଣ୍ଣ ବା ଅର୍ଜ୍ଜୁନ ମଧ୍ୟରୁ କେହି ଜଣେ ନିଶ୍ଚୟ ନିହତ ହେବେ । ଫଳତଃ ଜୀବିତ ରହିବା ପୁତ୍ରଙ୍କ ସଂଖ୍ୟା ହେବ ପାଞ୍ଚ । ଅର୍ଥାତ୍ ପୂର୍ବ ସଂଖ୍ୟା ଅପରିବର୍ତ୍ତିତ ରହିବ ଏବଂ ଯେଉଁ ପଞ୍ଚପାଣ୍ଡବଙ୍କୁ ସେହି ପଞ୍ଚପାଣ୍ଡବ । ଏହି ପ୍ରସଙ୍ଗରେ କୁନ୍ତୀ ଓ କର୍ଣ୍ଣଙ୍କ ମଧ୍ୟରେ ହୋଇଥିବା କଥୋପକଥନ ସମୟରେ କୁନ୍ତୀ କହିଛନ୍ତି —

"କୋଇନ୍ତାସ୍ୱେ ବୋଇଲେ ତୁ ଯେବେ ଅର୍ଜ୍ଜୁନକୁ ମାରିବୁ ସମରେ
ଶେଷେ ପଞ୍ଚପୁତ୍ର ହୋଇବ ମୋହୋରେ
ଅର୍ଜ୍ଜୁନ ଯେବେ ତୋତେ ମାରନ୍ତି ପ୍ରମାଦେ
ସେହି ପଞ୍ଚପୁତ୍ର ମୋର ହୋଇବ ଯେ ହାଦେ ।"

(ଉଦ୍‌ଯୋଗ ପର୍ବ-ପୃ: ୩୭୨)

**୧୨ । କୋକୁଆ ଭୟ ପଶିବା :**

ବିନା କାରଣରେ ବା ଭିତ୍ତିହୀନ ପ୍ରଚାରରେ ଭୟଭୀତ ହୋଇ ନିଜକୁ ଧ୍ୱଂସ ମୁଖକୁ ଟାଣିନେବା ପ୍ରସଙ୍ଗରେ ଏ ପ୍ରବଚନଟି ଲୋକମୁଖରେ କଥିତ ହୋଇଥାଏ ।

ଦକ୍ଷିଣ ସୋମରାଷ୍ଟ୍ରରେ କୁବଲ ନାମକ ଦେଶରେ ବାବଚ୍ଛୁଙ୍ଗା ନାମକ ନଗର । ସେହି ନଗର ରାଜାଙ୍କ ନାମ ଭଣ୍ଡେଶ୍ୱର ଏବଂ ମନ୍ତ୍ରୀଙ୍କ ନାମ ବାଇଚୁଣ୍ଡ । ସେହି ନଗରର ପ୍ରଧାନ ଦେବତା ହେଉଛନ୍ତି ଅଣ୍ଡିଆ କ୍ଷେତ୍ରପାଳ । ସେ ଦେଶର ଠାକୁର ରାଜା, ପ୍ରଜା ଇତ୍ୟାଦି ସମସ୍ତେ ଉଲଗ୍ନ । ସେଠାରେ ସତ୍ୟବାଦୀ ଦଣ୍ଡ ଓ ମିଥ୍ୟାବାଦୀ ପୁରସ୍କାର ପାଏ । ଏହି ବିଚିତ୍ର ଦେଶରେ ଏକଦା 'କୋକୁଆ' ଭୟ ପଶେ । ସନ୍ଧ୍ୟା ପୂର୍ବରୁ ଘରଦ୍ୱାର ବନ୍ଦ ହୋଇଯାଏ, କିନ୍ତୁ 'କୋକୁଆ' କିପ୍ରକାର ଜୀବ, ତାକୁ କେହି ଦେଖି ନ ଥାନ୍ତି । କୋକୁଆର ଆକୃତି ପ୍ରକୃତି ସମ୍ବନ୍ଧରେ ବିଭିନ୍ନ ତୁଣ୍ଡରୁ ବିଭିନ୍ନ ପ୍ରକାର ବର୍ଣ୍ଣନା ଶୁଣିବାକୁ ମିଳିଛି । କେହି କେହି କହିଛନ୍ତି, କୋକୁଆର ସାତଟା ଆଖି, ନଅଟା ପକ୍ଷୀ ଏବଂ ସେ ମଣିଷକୁ ପାଇଲେ ଗୋଟାପୁରା ଗିଳିଦିଏ । ପୁଣି ଅନ୍ୟ କେହି କହିଛନ୍ତି ପେଟ ଖୁବ୍ ବଡ଼ଟ ଏବଂ ତା'ର ଶରୀର ଆକାଶକୁ ଛୁଇଁଛି । କବି ଲେଖିଛନ୍ତି

"ବୋଲୁଥାନ୍ତି କୋକୁଆ କେହି ତାକୁ ନ ଦେଖି
କେ ବୋଲଇ କୋକୁଆର ସାତଗୋଟା ଆଖି ।

ଧରିବା ମାତ୍ରେ ଗିଳନ୍ତି ଝଣ୍ଟିସ୍ତେ ନ ପକାଇ
ଯେମନ୍ତେ ସେ ନଗ୍ରେ ବଡ଼ ଭୟ ପାଇ ।"
(ଉଦ୍‌ଯୋଗ ପର୍ବ –ପୃ: ୧୩୯)

ପିଲାମାନେ କାନ୍ଦିଲେ, କୋକୁଆ ଆସିଲା କହି ତାଙ୍କୁ ଭୟଭୀତ କରେଇ ଦିଆଯାଇଥାଏ । ସେଦିନେ ଏହି ମିଥ୍ୟା-ଭୟରୁ ରାଜ୍ୟବାସୀଙ୍କ ମଧ୍ୟରେ କଳହ ଆରମ୍ଭ ହୋଇଛି ଏବଂ ଏହା ଫଳରେ ବହୁତ ଲୋକ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଏହି ଗଳ୍ପରେ ଏକ ଆଦିବାସୀ ସମାଜର ଚିତ୍ର ଦିଆଯାଇଥିବା ଅନୁମାନ କରାଯାଏ ।

## ୧୪ । ତୁଳସୀ ବଣ ବାଘ :

ଛଦ୍ମଜନ ସାଧୁତା ଦେଖିଲେ ଅର୍ଥାତ ଭିତରେ ମନ୍ଦ ମନୋଭାବ ରଖି ଉପରେ ସାଧୁଜନ ସୁଲଭତା ପ୍ରକାଶ କରିବା ଲକ୍ଷ୍ୟକଲେ ଯେ କୌଣସି ଓଡ଼ିଆର ପାଟିରୁ ବାହାରି ପଡ଼େ 'ତୁଳସୀବଣ ବାଘ' । ଏହି ପ୍ରବଚନଟି ଆମ ସମାଜରେ ବହୁ ପ୍ରଚଳିତ ।

କୁରୁପାଣ୍ଡବଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଫେରାଇ ଆଣିବା ନିମନ୍ତେ ଧୃତରାଷ୍ଟ୍ର ଓ ଶକୁନିଙ୍କ ମଧ୍ୟରେ ଆଲୋଚନା ହୋଇଅଛି । ଏମାନଙ୍କ ମଧ୍ୟରେ ଥିବା ବିବାଦକୁ ଶକୁନି ବଢ଼ାଇ ଦେଉଛନ୍ତି ବୋଲି ଧୃତରାଷ୍ଟ୍ର ପ୍ରସଙ୍ଗକ୍ରମେ ପ୍ରକାଶ କରିଛନ୍ତି । ଏହା ଶୁଣି ଶକୁନି ଧୃତରାଷ୍ଟ୍ରଙ୍କ କାର୍ଯ୍ୟକଳାପକୁ ନିନ୍ଦା କରିଛି ଏବଂ 'ତୁଳସୀବଣ ବାଘ'ର କାର୍ଯ୍ୟ କଳାପ ସଙ୍ଗେ ତୁଳନା କରିଛି । ସଭାସଦ୍‌ଗଣ ଏ ସମ୍ବନ୍ଧରେ ଜାଣିବା ନିମନ୍ତେ ଆଗ୍ରହ ପ୍ରକାଶ କରିବାରୁ ଶକୁନି କହିଛି ଯେ ଗୋଟିଏ ବୃଦ୍ଧ ମର୍କଟକୁ ଦେଖି ତାକୁ ଭକ୍ଷଣ କରିବା ନିମନ୍ତେ ଗୋଟିଏ ବାଘ ଇଚ୍ଛା କଲା । ଏହି ମର୍କଟଟି ସୌରାଷ୍ଟ୍ର ନଗରର ଶେଷଭାଗରେ ଥିବା ଏକ ପିପ୍ପଳ ବୃକ୍ଷରେ ବାସ କରୁଥିଲା । ସେହି ବୃକ୍ଷ ନିକଟରେ ତୁଳସୀବଣଟିଏ ଥିଲା । ଏହି ବାଘଟି ବୈଷ୍ଣବ ବେଶରେ ଆସି ସେହି ବଣରେ ମୌନବ୍ରତ ଧାରଣ କରି ବସି ରହିଲା । ପ୍ରତିଦିନ ସନ୍ଧ୍ୟା ସମୟରେ ସେ ଜଳାଶୟ ନିକଟକୁ ଯାଇ ଜଳପାନ କରି ଫେରି ଆସୁଥିଲା । ଚାଲିଲାବେଳେ ସେ ପ୍ରଥମେ ଭୂମି ଫୁଙ୍କି ସଫା କରୁଥିଲା ଏବଂ ତାପରେ ପାଦ ପକାଉଥିଲା । ଏହା ଦେଖି ମାଙ୍କଡ଼ ତାକୁ ଏ ବିଷୟରେ ପଚାରିବାରୁ ସେ କହିଲା ଯେ ସେ ସଂସାର ତ୍ୟାଗ କରି ବୈଷ୍ଣବ ହୋଇଛି ଏବଂ କାଳେ ତା ପାଦ ତଳେ କୌଣସି ଜୀବ ରହି ମୃତ୍ୟୁ ବରଣ କରିବ, ସେଥିପାଇଁ ସେ ଏପରି କରୁଛି । ତାର ଏପରି ଛଦ୍ମବେଶ ଏବଂ ମିଥ୍ୟା ବ୍ୟବହାରରେ ମାଙ୍କଡ଼ ଭୁଲିଯାଇ ତାକୁ ଖୁବ୍ ଭକ୍ତି କଲା ଏବଂ ତା'ଠାରୁ କିଛି ଧର୍ମବାଣୀ ଶୁଣି ପଶୁ ଜନ୍ମରୁ ମୁକ୍ତିଲାଭ କରିବା ନିମନ୍ତେ ଇଚ୍ଛା ପ୍ରକାଶ କଲା । ଭକ୍ତିର ସହିତ ସେ ବାଘର ଚରଣରେ ମଥା ଲଗାଇ ପ୍ରଣାମ କଲାବେଳେ ଛଦ୍ମବେଶୀ ବାଘ ତା'ର ଗଳାକୁ ଧରି ପକାଇଲା । ବୈଷ୍ଣବ ହୋଇ ଏପରି ଅନ୍ୟାୟ କାର୍ଯ୍ୟ କିପରି

କରି ପାରୁଛ ବୋଲି ମାଙ୍କଡ଼ ପ୍ରଶ୍ନ କରିବାରୁ, ବାଘ ଉଚ୍ଚ ସ୍ୱରରେ ହସି ଉଠିଲା ଏବଂ ତା ପାଟି ଟିକିଏ ଝୁଙ୍ଗୁଲା ହୋଇ ଯିବାରୁ ମାଙ୍କଡ଼ ଖସି ପଳାଇଲା । ଏହି ବୈଷ୍ଣବବେଶୀ ବାଘ ସହିତ ଧୃତରାଷ୍ଟ୍ରଙ୍କୁ ତୁଳନା କରି ଶକୁନି କହିଛି

"ତୁଳସୀବଣ ବ୍ୟାଘ୍ର ପରି ସ୍ନେହ ଅନ୍ଧ
ସ୍ନେହାର ମୁଖକୁ ଯେ ଚାହିଁଲେ ବଡ଼ ମନ୍ଦ ।"

( ଉଦ୍‌ଯୋଗ ପର୍ବ—ପୃ .-୩୩୫ )

## ୧୪ । ତୁଳାମୁହାଁ କାଙ୍କ :

'ତୁଳସୀବଣ ବାଘ' ଭଳି ଏହି ପ୍ରବଚନଟି ମଧ୍ୟ ଛଦ୍ମ ଜନର ସାଧୁତା ପ୍ରସଙ୍ଗରେ କଥିତ ହୋଇଥାଏ ।

କୁରୁପାଣ୍ଡବଙ୍କ ମଧ୍ୟରେ ଭ୍ରାତୃଭାବ ଫେରାଇ ଆଣିବା ନିମନ୍ତେ ଶକୁନି ଓ ଧୃତରାଷ୍ଟ୍ରଙ୍କ ମଧ୍ୟରେ ହୋଇଥିବା ଆଲୋଚନା ସମୟରେ ପରସ୍ପର ମଧ୍ୟରେ ଆକ୍ଷେପ-ମୂଳକ ବାକ୍ୟ ବିନିମୟ ହୋଇଅଛି । ଶକୁନି ଧୃତରାଷ୍ଟ୍ରଙ୍କୁ 'ତୁଳସୀବଣ ବାଘ' ଭାବେ ବର୍ଣ୍ଣନା କରିବା ପରେ ଶକୁନି 'ତୁଳାମୁହାଁ କାଙ୍କ' ଭଳି ଆଚରଣ କରୁଥିବା କଥା ଧୃତରାଷ୍ଟ୍ର ଅଭିଯୋଗ କରିଅଛନ୍ତି । ସେ କହିଛନ୍ତି ଯେ ଗୋଟିଏ କାଙ୍କ ( କଙ୍କ, ବଗ ) ଗୋଟିଏ ହ୍ରଦରେ ବହୁ ଜଳଜୀବ ସେମାନଙ୍କୁ ଦେଖି ଖାଇବା ପାଇଁ ଉପାୟ ପାଞ୍ଚିଲା । କୂଳରେ ଥିବା ଏକ ବରଗଛ ଉପରେ ବସିଲା । ପ୍ରତିଦିନ ସନ୍ଧ୍ୟାରେ ସେ ହ୍ରଦକୁ ଯାଇ ମୁହଁରେ ତୁଳା ଦେଇ ଅଳ୍ପ ପରିମାଣର ଜଳ ପାନ କରୁଥିଲା । ଏକଦା ଜଳପାନ କାଳରେ ତା'ର ମୁହଁରେ ତୁଳାଦେବାର କାରଣ ସମ୍ବନ୍ଧରେ ଜାଣିବାକୁ ମାଛମାନେ ଚାହିଁଲେ । କାଙ୍କ କହିଲା ଯେ ଜଳପାନ ସମୟରେ ତା ପାଟି ମଧ୍ୟକୁ କ୍ଷୁଦ୍ର ଜଳଜୀବ ପଶିଯିବାର ଆଶଙ୍କା କରି ସେ ତୁଳା ସାହାଯ୍ୟରେ ଅଳ୍ପ ଜଳ ଛାଣିକରି ପିଉଅଛି । ଏହା ଶୁଣି ଜଳଜୀବଗଣଙ୍କର ତା ପ୍ରତି ଭକ୍ତି ଜାତ ହେଲା ଏବଂ ସେମାନେ ତାକୁ ଭୟ ନ କରି ତା ସହିତ ମିଳାମିଶା ଆରମ୍ଭ କଲେ । କିଛି ଦିନପରେ ସେ କାଙ୍କ ଥରେ ମାଛମାନଙ୍କୁ ଜଣାଇଲା ଯେ ଆଗାମୀ ବାରବର୍ଷ ପର୍ଯ୍ୟନ୍ତ ବର୍ଷା ନ ହେବା ଫଳରେ ସେହି ହ୍ରଦ ଶୁଖିଯିବ । ଜଳାହାରୀ ହୋଇଥିବାରୁ ସେ ଅସୁବିଧାର ସମ୍ମୁଖୀନ ହେବ । ଏଣୁ ସେ ମାନସରୋବରକୁ ଚାଲିଯିବା ନିମନ୍ତେ ସ୍ଥିର କରିଛି । ଏହା ଶୁଣି ଜଳଜୀବମାନେ ଆସନ୍ନ ବିପଦରୁ ରକ୍ଷା ପାଇବା ନିମନ୍ତେ ସେମାନଙ୍କୁ ତା ସଙ୍ଗରେ ନେଇଯିବା ପାଇଁ ଅନୁରୋଧ କଲେ । ସେମାନଙ୍କ ଅନୁରୋଧକୁ ନ ପାରି ସେମାନଙ୍କୁ ଜଣ ଜଣ କରି ନେଇ ଛାଡ଼ି ଦେଇ ଆସିବା ନିମନ୍ତେ ସ୍ଥିର ହେଲା । ଥରକେ ଗୋଟିଏ ଲେଖାଏଁ ମାଛ ଥଣ୍ଟରେ ନେଇ ଘୋର ଅରଣ୍ୟ ମଧ୍ୟକୁ ଉଡ଼ିଯାଉଥିଲା ଏବଂ ସେଠାରେ ତାକୁ ମହାଆନନ୍ଦରେ ଭକ୍ଷଣ କରୁଥିଲା । ଏହିପରି ପ୍ରାୟ ସମସ୍ତ ମାଛ ଖାଇ ସାରିବା ପରେ ଶେଷକୁ ଗୋଟିଏ କଙ୍କଡ଼ା ଥଣ୍ଟରେ ଧରି

ସେ ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲା । ସେଠାରେ କୁଢ଼ କୁଢ଼ ଅସ୍ଥି ଦେଖି ପୂର୍ବରୁ ଆସିଥିବା ମାଛମାନଙ୍କର ଶେଷ ପରିଣତି ସମ୍ବନ୍ଧରେ ସେହି କଙ୍କଡ଼ାର ଧାରଣା ହୋଇଗଲା ଏବଂ ନିଜ ମୃତ୍ୟୁ ଯେ ଅତି ନିକଟ, ଏହା ସେ ବୁଝି ପାରିଲା । ବିଶ୍ୱାସରେ ବିଷ ଦେଇଥିବାରୁ କ୍ରୋଧାନ୍ୱିତ ହୋଇ ସେ କାଙ୍କର ଗଳାକୁ ନିଜର ଦାଢ଼ୁଆ ଗୋଡ଼ ସାହାଯ୍ୟରେ ଅତି ଜୋରରେ ଚିପିଦେଲା । ଫଳରେ ତା'ର ମସ୍ତକ ଶରୀରରୁ ପୃଥକ ହୋଇଗଲା । ଏହି ଗଳ୍ପଟି କହିସାରିବା ପରେ ଧୃତରାଷ୍ଟ୍ର କହିଛନ୍ତି –

ସେହି ଶକୁନି ହେଲା ସେହିବେ ତୁଲାମୁହାଂ କାଙ୍କ
କୁରୁକୁଳର ସେହି ଅଟେ ନିଟସେହି ଅନ୍ତକ ।"
( ଉଦ୍‌ଯୋଗ ପର୍ବ – ପୃ ୩୩୯ )

**୧୫ । ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ହତ :**

ଗୋଟିଏ ମିଥ୍ୟା ଘଟଣାକୁ ଅନୁରୂପ ଏକ ସତ୍ୟ ଘଟଣାର ପୁଟ ଦେଇ ଚତୁରତାର ସହିତ ପ୍ରକାଶ କରିବା ପ୍ରସଙ୍ଗରେ ଏହି ପ୍ରବଚନଟିର ବ୍ୟବହାର ଦେଖାଯାଏ ।

କୁରୁକ୍ଷେତ୍ର ଯୁଦ୍ଧରେ କୌରବଙ୍କ ପକ୍ଷରୁ ପାଣ୍ଡବଙ୍କ ବିପକ୍ଷରେ ଗୁରୁ ଦ୍ରୋଣାଚାର୍ଯ୍ୟ ଅସ୍ତ୍ରଧାରଣ କରିଅଛନ୍ତି । ଅପ୍ରତିଦ୍ୱନ୍ଦ୍ୱୀ ଦ୍ରୋଣଙ୍କୁ ଯୁଦ୍ଧରେ ପରାସ୍ତ କରିବା ଏକାନ୍ତ ଅସମ୍ଭବ ଦେଖି ଶ୍ରୀକୃଷ୍ଣ ଚିନ୍ତିତ ହୋଇ ପଡ଼ିଛନ୍ତି । ତାଙ୍କୁ ନିରସ୍ତ୍ର କରିବାର ଉପାୟ, ବହୁ ଚିନ୍ତା ପରେ କୁଟନୀ ଶ୍ରୀକୃଷ୍ଣ ସ୍ଥିର କରିଅଛନ୍ତି । ଯୁଦ୍ଧଭୂମିର ବହୁ ଦୂରରେ ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମା ଅସ୍ତ୍ରାଘାତ ପାଇ ଚେତାଶୂନ୍ୟ ହୋଇ ପଡ଼ିଥିବାର ଦେଖାଯାଇଅଛି । ଏହି ଘଟଣାକୁ କୌଶଳକ୍ରମେ ଶ୍ରୀକୃଷ୍ଣ ଅଶ୍ୱତ୍ଥାମା ହତ ବୋଲି ଘୋଷଣା କରିଦେଇଅଛନ୍ତି । ଏ ସମ୍ବାଦ ଶ୍ରବଣରେ ଦ୍ରୋଣ ବିସ୍ମିତ ତଥା ବିଚଳିତ ହୋଇ ପଡ଼ିଅଛନ୍ତି ଏବଂ ଏହାର ସତ୍ୟତା ଥିଲେ ଧନୁ ତ୍ୟାଗ କରିବେ ବୋଲି ପ୍ରତିଜ୍ଞା କରିଅଛନ୍ତି । ଏ ଘଟଣା ସତ୍ୟ କି ମିଥ୍ୟା ଏହା ଜାଣିବା ନିମନ୍ତେ ସେ ଯୁଧିଷ୍ଠିରଙ୍କୁ ପଚାରି ଅଛନ୍ତି । କାରଣ ସତ୍ୟବାଦୀ ଯୁଧିଷ୍ଠିର ଅପରପକ୍ଷର ହୋଇଥିଲେ ମଧ୍ୟ ସତ୍ୟ ବ୍ୟତୀତ ମିଥ୍ୟା କଦାପି କହିବେ ନାହିଁ ବୋଲି ଦ୍ରୋଣଙ୍କର ଦୃଢ଼ ଧାରଣା ଥିଲା । ଏ ପରିସ୍ଥିତିରେ ଯୁଧିଷ୍ଠିର ଅଡୁଆରେ ପଡ଼ି ଯାଇଅଛନ୍ତି । ଅନ୍ୟାନ୍ୟ ଭାଇମାନଙ୍କର ଜୀବନ ରକ୍ଷା ନିମନ୍ତେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ମିଥ୍ୟା କହିବା ନିମନ୍ତେ ପ୍ରବର୍ତ୍ତାଇ ଅଛନ୍ତି । ସୌଭାଗ୍ୟବଶତଃ ସେହି ସମୟରେ ଅଶ୍ୱତ୍ଥାମା ନାମକ ଏକ ହସ୍ତୀ ନିହତ ହୋଇଥାଏ । ତେଣୁ ଦ୍ରୋଣଙ୍କ ପ୍ରଶ୍ନର ଉତ୍ତର ଦେଇ ଯୁଧିଷ୍ଠିର ଉତ୍ତର ଦେଇଅଛନ୍ତି--

ଯୁଧିଷ୍ଠି ଦେବେ ବୋଇଲେ ଶୁଣ ଗୁରୁ ତାତ
ନର କି କୁଞ୍ଜର ଯେ ଅଶ୍ୱତ୍ଥମା ହତ ।" (ଦ୍ରୋଣ ପର୍ବ-ପୃ ୩୧୫)

ଅର୍ଥାତ୍ ନର ହେଉ ବା ହସ୍ତୀ ହେଉ, ଅଶ୍ୱତ୍ଥାମା ନିହତ ହୋଇଅଛି ।

**୧୭ । ଯାଚଲା କନ୍ୟା, ଦ୍ରବ୍ୟ ଛାଡ଼ନ୍ତି ନାହିଁ :**

ଇଚ୍ଛାକରି ନ ଥିବା ଦ୍ରବ୍ୟ ବା ସହଜଲବ୍ଧ ଦ୍ରବ୍ୟ ଗ୍ରହଣ କରିବାକୁ ପଶ୍ଚାତ୍ପଦ ହେଲେ, ଅନ୍ୟ ମୁଖରୁ ଏହି ପ୍ରବଚନଟି ଶୁଣିବାକୁ ମିଳିଥାଏ ।

ସ୍ୱର୍ଗାରୋହଣ ପର୍ବରେ ଦ୍ରୌପଦୀ ସମେତ ପଞ୍ଚପାଣ୍ଡବ ବାନପ୍ରସ୍ଥ ନିମନ୍ତେ ବାହାରିଛନ୍ତି । ସେମାନଙ୍କୁ ସ୍ୱଦେଶପ୍ରେମୀ କବି ସାରଳାଦାସ ଓଡ଼ିଶାର ଯାଜପୁରରେ ଆଣି ପହଞ୍ଚାଇଛନ୍ତି । ସେହିଠାରେ ହରିସାହୁ ନାମକ ଜଣେ ବୈଶ୍ୟ ବଣିଆର ସୁହାଣି ନାମକ କନ୍ୟା ବିବାହଯୋଗ୍ୟା ହୋଇ ସାରିଥିଲେ ମଧ୍ୟ ବିବାହ ହୋଇପାରୁ ନ ଥାଏ । କାରଣ କୋଷ୍ଠୀ ଅନୁଯାୟୀ ବିବାହ କାଳରେ ସେ କନ୍ୟାର ମୃତ୍ୟୁଯୋଗ ଥାଏ । ଏହି କନ୍ୟାଟିକୁ ହରିସାହୁ ଧର୍ମରାଜ ଯୁଧିଷ୍ଠିରଙ୍କୁ ପ୍ରଦାନ କରିବା ନିମିତ୍ତ ମନଃସ୍ଥ କରିଛି । ତା'ର ଧାରଣା ହୋଇଛି ଯେ ଯୁଧିଷ୍ଠିରଙ୍କୁ ନିଜ କନ୍ୟା ବିବାହ ଦେଲେ ତା'ର ମୃତ୍ୟୁ ଦୋଷ ଖଣ୍ଡିତ ହୋଇଯିବ । ଏଣୁ ସେ ନିଜ ମନକଥା ଯୁଧିଷ୍ଠିରଙ୍କୁ କହିଛି । ଯୁଧିଷ୍ଠିର ଏଥିରେ ଅସମ୍ମତି ପ୍ରକାଶ କରିଛନ୍ତି । ଜୀବନର ଶେଷ ସୋପାନରେ ପୁନଶ୍ଚ ତୀର୍ଥ କରି ବାହାରିଥିବା ଅବସରରେ ତାଙ୍କର ବିବାହ କରିବା ଉଚିତ ହେବ ନାହିଁ ବୋଲି ସେ ପ୍ରକାଶ କରିଛନ୍ତି । ଅନ୍ୟାନ୍ୟ ଭାଇମାନେ ଯୁଧିଷ୍ଠିରଙ୍କୁ ଏହି କନ୍ୟାର ପାଣି ଗ୍ରହଣ କରିବା ନିମନ୍ତେ ଅନୁରୋଧ କରିଛନ୍ତି । ସହଦେବ କହିଛନ୍ତି—

"ସହଦେବ କହିଲେ ଯେହ୍ନା ନ କର ବିରୋଧି
ଯାଚିଲ୍ଲ କନ୍ୟା ବିଭା ହୋଇବା ଯୋଗାଇ ଯେ ବିଧି ।
ଯାଚିଲ୍ଲ କନ୍ୟା ଯେ ଅଚିଲ୍ଲ ଭୋଜନ
ଯେହ୍ନା ଉପେକ୍ଷିଲେ ଦେବ କୁଳକଇଂ ଦୂଷଣ ।"
(ସ୍ୱର୍ଗାରୋହଣ ପର୍ବ-ପୃ: ୧୪)

ପୁନଶ୍ଚ ଆଦି ପର୍ବରେ ଭୀମଙ୍କୁ ପାତାଳପୁରରେ ନାଗରାଜା ନିଜର କନ୍ୟା ବେଲ୍ଲବାଳୀକୁ ପ୍ରଦାନ କରିବାକୁ ଚାହିଁଛନ୍ତି । ଏ ପ୍ରସ୍ତାବରେ ରାଜି ହୋଇ ଭୀମ କହିଛନ୍ତି—

"ଯାଚିଲର କନ୍ୟା ଯେ ଯାଚିଲର ଅନ୍ନ
ଯେହ୍ନା ଉପେକ୍ଷିଲେ ନାଶଯାଇ ଧର୍ମ ।" (ପୃ-୪୧୬)

## ନୀତିବାକ୍ୟ

ନୀତି ଜୀବନର ଏକମାତ୍ର ସମ୍ବଳ ଏବଂ ନୀତି-ବିବର୍ଜିତ ଜୀବନ, ଜୀବନ ପଦବାଚ୍ୟ ନୁହେଁ—ଏ ସତ୍ୟରେ ସାରଳା ଦାସ ସର୍ବଦା ଆସ୍ଥା ସ୍ଥାପନ କରି

ଆସିଛନ୍ତି । ଏଣୁ ତାଙ୍କ ବିରଚିତ ମହାଭାରତରେ ମୂଳଗ୍ରନ୍ଥରେ ସନ୍ନିବେଶିତ ସମସ୍ତ ନୀତିବାକ୍ୟଗୁଡ଼ିକୁ ନିଜ ଗ୍ରନ୍ଥରେ ସ୍ଥାନ ଦେଇ ନ ଥିଲେ ମଧ୍ୟ ଯେଉଁଠି କିଛି ନୀତି ଶୁଣାଇବା ଦ୍ୱାରା ଜନ ସମାଜର ମଙ୍ଗଳ ହେବ ବୋଲି ସେ ଚିନ୍ତା କରିଛନ୍ତି, ସେଠାରେ ସେ ନୀତିଗର୍ଭିତ ବିଭିନ୍ନ ଉଦାହରଣ ଦେଇଅଛନ୍ତି । ସେ ବିଭିନ୍ନ ଚରିତ୍ର ମୁଖରେ ମଧ୍ୟ ନାନା ନୀତିବାକ୍ୟ ଏବଂ ଉପଦେଶ ବାଣୀ ଶୁଣାଇଛନ୍ତି । ଉଦ୍ଦେଶ୍ୟ – ସାଧାରଣ ଜନତାର ଚରିତ୍ର ଗଠନ ଏବଂ ନୈତିକ ଚେତନାର ଜାଗରଣ । ବ୍ୟାସଦେବଙ୍କ ଉପଦେଶାବଳୀରେ ପୂର୍ଣ୍ଣ ମହାଭାରତ ଦ୍ୱାରା ଭାରତୀୟ ଜନତା ଯୁଗ ଯୁଗ ଧରି ଉଦ୍‌ବୁଦ୍ଧ ହୋଇ ଆସୁଥିବା ଭଳି ଉତ୍କଳବ୍ୟାସ ସାରଳାଙ୍କ ମହାଭାରତ ଅନ୍ତର୍ଗତ ନୀତିବାକ୍ୟ ଦ୍ୱାରା ଉତ୍କଳୀୟ ଜନତା କାଳ କାଳ ଧରି ଉଦ୍‌ବୁଦ୍ଧ ହୋଇଆସୁଅଛି । ସୁତରାଂ ସାରଳା ଦାସଙ୍କୁ ଜଣେ ଉପଯୁକ୍ତ 'ଲୋକଶିକ୍ଷକ' କୁହାଯାଇପାରେ । ସାରଳାଙ୍କ ଗ୍ରନ୍ଥର ପ୍ରତି ସର୍ଗରେ ପ୍ରାୟ କିଛି ନା କିଛି ନୀତିବାକ୍ୟ ଏବଂ ଉପଦେଶ ପରିଦୃଷ୍ଟ ହୁଏ । ତାହାର କେତୋଟି ଉଦାହରଣ ନିମ୍ନରେ ଦିଆଯାଇପାରେ ।

ଧୃତରାଷ୍ଟ୍ର ନିଜ କନିଷ୍ଠ ଭ୍ରାତା ପାଣ୍ଡୁଙ୍କୁ ରାଜ୍ୟ ସିଂହାସନରେ ଅଭିଷିକ୍ତ କରିଛନ୍ତି । ଅଳ୍ପ ଦିନ ମଧ୍ୟରେ ପାଣ୍ଡୁ ନିଜକୁ ଜଣେ ସୁଶାସକ ହିସାବରେ ପରିଚିତ କରାଇପାରିଛନ୍ତି । ତାଙ୍କ ଲୋକପ୍ରିୟତାରେ ଈର୍ଷାନ୍ୱିତ ହୋଇ ଧୃତରାଷ୍ଟ୍ର ତ୍ରିବେଣୀ ସଂଗମରେ ଝାସ ଦେବା ନିମିତ୍ତ ସ୍ଥିର କରିଛନ୍ତି ଏବଂ ଏକଥା ଗାନ୍ଧାରୀଙ୍କ ଆଗରେ ପ୍ରକାଶ କରିଛନ୍ତି । ଗାନ୍ଧାରୀ ଅତି ବୁଦ୍ଧିମତୀ । ଏଣୁ ସେ ସ୍ୱାମୀଙ୍କୁ ଈର୍ଷାଭାବ ତ୍ୟାଗ କରିବା ନିମନ୍ତେ ଅନୁରୋଧ କରି କହିଛନ୍ତି —

"ପରନିନ୍ଦା ପରହିଂସା ପରମାଦ ଛାଡ଼ ହୋ ଧୃତରାଷ୍ଟ୍ର
ଅନିତ୍ୟ ସଂସାର ସ୍ନେହ ମାୟା ଚିତ୍ରପଟ ।
ଲୋଭ ମୋହ କାମ କ୍ରୋଧ ଅହଂକାର ହିଂସା
ସ୍ନେହା ଦୂର କରି ନାଥ ଥିର କର ମନାଶା ।"

(ଆଦିପର୍ବ-ପୃ: ୧୩୯)

ପୂଜ୍ୟପୂଜାର ବ୍ୟତିକ୍ରମ ନ କରିବା ନିମନ୍ତେ କବି ବାରମ୍ବାର ନିଜ ଗ୍ରନ୍ଥରେ ଚେତାବନୀ ଶୁଣାଇ ଅଛନ୍ତି । ଏହି ପ୍ରସଙ୍ଗରେ କାହାକୁ ନିନ୍ଦା କଲେ କି କି ଫଳ ମିଳେ କବି ତାହାର ସୂଚନା ଦେଇ ଜନସମାଜକୁ ସତର୍କ କରି ଦେଇଛନ୍ତି । କବିଙ୍କ ସତର୍କ ବାଣୀ ହେଉଛି—

ଦେବତାଙ୍କ ନିନ୍ଦା କଲେ ନର୍କେ ହୋଇଥାଇ ଜାତ
ବ୍ରାହ୍ମଣ ନିନ୍ଦା କଲେ ବଂଶ ହୋଇଥାଇ ନିପାତ ।

ତପୀ ନିନ୍ଦା କଲେ ଶରୀର ହୋଏ କ୍ଷତ
ନପୁଂସକ ହୋଇ ପୁରୁଷ ନିନ୍ଦା କଲେ ଦଣ୍ଡ ।
ଗୁରୁ ନିନ୍ଦା କଲେ ହୋଅଇ ଶିରଚ୍ଛେଦ
ମାତା ପିତା ନିନ୍ଦା କଲେ ପଡ଼ଇ ପରମାଦ ।
ପାଠ ଗୁରୁ ନିନ୍ଦା କଲେ ପ୍ରାପତ ନୋହଇ ବିଦ୍ୟା
ବାତୁଳ ହୋଇ ବୁଲଇ ଯେ ନିନ୍ଦଇ ଯୋଗସିଦ୍ଧା ।
ନ ଜାଣି ନିନ୍ଦା କରନ୍ତି ଯେ ବଇଦ ଯୋଗୀ
ଜନ୍ମେ ଜନ୍ମେଣ ସେ ହୋଇଥାଇ ସଦା ରୋଗୀ ।

× × ×

ଲକ୍ଷ୍ମୀ ନିନ୍ଦା କଲେ ଦରିଦ୍ର ହୁଅଇ ଜନ୍ମେ ଜନ୍ମେ
ଭାରତୀ ନିନ୍ଦା କଲେ ଗଜମୂର୍ଖ ଜନ୍ମ ଅନୁକ୍ରମେ
ମନ୍ତ୍ର ନିନ୍ଦା କଲେ ହୁଅନ୍ତି ବଧିର
ଔଷଧ ନିନ୍ଦା କଲେ ରୋଗ ହୁଅଇ ଅପାର ।
ଗୋରୁ ନିନ୍ଦା କଲେ ହାନି ହୋଅଇଟି କୃଷି
ପୁତ୍ର ନିନ୍ଦା କଲେ ଯେ ହୁଅନ୍ତି ନିଅଂଶୀ ।
ସ୍ତ୍ରୀ ନିନ୍ଦା କଲେ ନୋହଇ ଗୃହବାସ
ମହନ୍ତ ନିନ୍ଦା କଲେ ଅପ୍ରମିତ ଦୋଷ ।"

( ଆଦିପର୍ବ ପୃ-୧୦୪-୧୦୫ )

ପୁନଶ୍ଚ କେଉଁ ଯେଉଁ ଗୁରୁଜନମାନଙ୍କର ବଚନ ଲଙ୍ଘନ କଲେ ବା ଖଣ୍ଡନ କଲେ କି କି ଦୋଷ ହୁଏ, ତାହାର ବିବରଣୀ ମଧ୍ୟ ଆଲୋଚ୍ୟ ଗ୍ରନ୍ଥରେ ମଧ୍ୟପର୍ବରେ ଦେଖିବାକୁ ମିଳେ ।

"ପିତାର ବଚନ ଯେବେ ଖଣ୍ଡନ କରଇ ପୁତ୍ର
ଆୟୁଷ ଛିନ୍ନ ଯେ ହୁଅଇ ନିଶ୍ଚନ୍ତ ।
ଶଶୁର ବଚନ ଯେବେ ମେଣ୍ଟଇ କୁଳବଧୂ
ସନ୍ତାନ ହାନି ହୁଅଇ ଜନମୁଖେ ଅସାଧୁ ।

× × ×

ଗୁରୁ ବଚନ ଯେବେ ମେଣ୍ଟଣ କରେ ଶିଷ୍ୟ
ହତ ମୂର୍ଖ ହୁଅଇ ବିଦ୍ୟା ନୁହଇ ପ୍ରାପତ ।"

ସମାଜରେ ସମସ୍ତେ ଲଜ୍ଜାହୀନ ନୁହନ୍ତି । ସୁଭଦ୍ରା ଓ ଅର୍ଜୁନଙ୍କ ପ୍ରେମ ପ୍ରସଙ୍ଗରେ କବି ଲଜ୍ଜାହୀନମାନଙ୍କୁ ଚିହ୍ନଟ କରିଅଛନ୍ତି ।

"ଚାତୁର୍ଯ୍ୟ କଲା ଲୋକର ଲାଜଇଂ ଯେ ନାହିଁ
ମାଗି ଯେ ବଞ୍ଚନ୍ତି ତାଂକର ସଂକୋଚ ଅବା କାହିଂ ।

ପର ଅନ୍ନ ଭୋଜନକୁ ସଖୀ ଗୋ ଯେ ନତ୍ୟେ କରଇ ଆଶ
ସେହି ଜନମାନଙ୍କର ଲଜ୍ଜା ଆଉ କସ ।

ପରଦାରେ ପ୍ରବୃତ୍ତ ଯେବଣ ଜନେ ଚନ୍ତନ୍ତି
ତାହାଙ୍କର ଥାଇ କି ଗୋ ଲଜ୍ଜା କହିଁ ଖ୍ୟାତି ।

ଯେଉଣ ପ୍ରାଣୀ ସଖୀ ଗୋ ହୁଅନ୍ତି ଭିକ୍ଷାଶୀ
ତାହାଙ୍କର ଲଜ୍ଜା ଆବର କସ ପରକାଶି ।"

× × ×

ସଖୀ ଧନହିନ୍ନ ଅଟନ୍ତି ଯେଉଣ ପୁରୁଷ
ସେ ଜନଂକର ଲଜ୍ଜା ଥାଇ ଆଉ କସ ।" (ମଧ୍ୟପର୍ବ—ପୃ-୨୧୩)

କେଉଁ କାର୍ଯ୍ୟ ଘର ନଷ୍ଟ କପରି, ଏ ବିଷୟ କବି ସୁନ୍ଦର ଭାବେ ବର୍ଣ୍ଣନ କରିଅଛନ୍ତି । ଏହି ପ୍ରସଙ୍ଗରେ କବି କୃଷି, ଭୋଜନ ଶୃଙ୍ଗାର, ବାଣିଜ୍ୟ, କୌତୁକ, ନୃତ୍ୟ, କଳହ, କ୍ଷତ୍ରିୟ, ଓ ସଭାର ମର୍ଯ୍ୟାଦା ବିଗ୍ରହ କରିଅଛନ୍ତି ।

"ପରମ ନଷ୍ଟ ଯେବେ ହୋଅଇ ପରମ ଯୋଗୀ
ରୂକ୍ଷଣ ନଷ୍ଟ ଯେ ଅଟଇ ବଇରାଗୀ

ଭୋଜନ ନଷ୍ଟ ଯେ କ୍ଷୁଧା ବେଳେ ମିଳଇ
ଶୃଙ୍ଗାର ନଷ୍ଟ ଯେବେ ଚନ୍ଦ୍ରକଳା ଗଳଇ ।

ବଣିଜ ନଷ୍ଟ ଯେବେ ବିକାଯାଇ ଭୁଲେ
କଉତୁକ ନଷ୍ଟ ଯେବେ ହାଥ ଗଳଇ ଭଲେ ।

ନୃତ୍ୟର ନଷ୍ଟ ଯେବେ ନାଚଇ ଗୁଣ୍ଡକେଶ
କଳର ନଷ୍ଟ ଯେବେ ହୋଅନ୍ତି ମରମର ।

କ୍ଷତ୍ରୀର ନଷ୍ଟ ଯେବେ ଆଗଭର ଯୁଝଇ
କହିବାର ନଷ୍ଟ ଯେବେ ଶୁଣିବାର ଲୋକ ବୁଝଇ ।"

( ମଧ୍ୟପର୍ବ—ପୃ-୨୬୦ )

ଧର୍ମର ଜୟ ଓ ପାପର ପରାଜୟ ଅବଶ୍ୟମ୍ଭାବୀ । ଏହି କଥା ପ୍ରସଙ୍ଗ ଭେଦରେ ପ୍ରଦର୍ଶନ କରିବା ପାଇଁ ମହାକବି ସାରଳା ଦାସ ସର୍ବଦା ବ୍ୟାକୁଳ ଥିବା

ଭଲ ଜଣାଯାଏ । ତେଣୁ କବି ଧୌମ୍ୟ ପୁରୋହିତଙ୍କ ମୁଖରେ ଦୁର୍ଯ୍ୟୋଧନଙ୍କୁ ଦେଇଥିବା ଏହିପରି ଉପଦେଶପୂର୍ଣ୍ଣ ବାକ୍ୟମାନଙ୍କରୁ କେତୋଟି ହେଲା—

"ବାବୁ ଅମୃତ ବୃକ୍ଷ ଆଇଛି ସ୍ନେହ କରିବା
ସଦ୍‌ବୃକ୍ଷଙ୍କି ଆଉଂ ଆଉଂ ଅସଦ୍‌ବୃକ୍ଷଙ୍କି କେମନ୍ତେ ଦେବା ।

ବାବୁ ଧର୍ମେ ଆଶ୍ରେ କଣ୍ଠଧଲେ ହୋ ମାନଗୋବିନ୍ଦ
କଦାଚରେ ପ୍ରାଣୀଙ୍କଟି ନ ପଡ଼ଇ ପ୍ରମାଦ ।"

( ଉଦ୍‌ଯୋଗ ପର୍ବ—ପୃ-୧୦ )

ପ୍ରତ୍ୟୁପକାର ଆଶାରେ କେହି ଅନ୍ୟକୁ ସାହାଯ୍ୟ କରେ ନାହିଁ ସତ; କିନ୍ତୁ ଉପକାରୀର ଗୁଣ କୀର୍ତ୍ତନ କରିବା ଏବଂ ତାକୁ ବିପଦ ବେଳେ ସାହାଯ୍ୟ କରିବା ହେଉଛି ସାହାଯ୍ୟପ୍ରାପ୍ତ ବ୍ୟକ୍ତିର କର୍ତ୍ତବ୍ୟ । ଯେଉଁ ବ୍ୟକ୍ତି ଉପକାରୀର ଉପକାର ଭୁଲିଯାଏ, ସେ ନିର୍ଲଜ ଅଟେ ଏବଂ ତା ଜୀବନ ଧିକ୍ ଅଟେ । ଏହି କଥା କବି ତ୍ରିଗର୍ତ୍ତ ରାଜା ଦ୍ୱାରା ବନ୍ଦୀ ହୋଇଥିବା ପାଣ୍ଡବମାନଙ୍କର ପରମ ଉପକାରୀ ବିରାଟ ରାଜାଙ୍କ ପ୍ରସଙ୍ଗରେ ଯୁଧିଷ୍ଠିରଙ୍କ ମୁଖରେ ଭୀମଙ୍କୁ କହୁଅଛନ୍ତି—

"ବାବୁ ଯେବଣ ବୃକ୍ଷତଳେ ଦଗଧ ବେଳେ ବସି
ତାହା ଗୁଣ ସୁମରଣା କରନ୍ତି ଦିବା ନିଶି ।

× × ×

ବାବୁ ଯାହାର ଅନ୍ନ ଖାଇ ତାହାର କାର୍ଯ୍ୟ କରି
କଲାର ଉପକାର ବାବୁ କେବେ ହେଁ ନ ପାସୋରି ।"

( ବିରାଟ ପର୍ବ ପୃ-୩୯୭)

ଭାଇ ଭାଇ ମଧ୍ୟରେ ଯେତେ ଘୋର ଶତ୍ରୁତା ଥାଉନା କାହିଁକି, ବିପଦବେଳେ ଭାଇକୁ ଭାଇ ସାହାଯ୍ୟ କରିବା ହେଉଛି ପରମ କର୍ତ୍ତବ୍ୟ । ଦୁର୍ଯ୍ୟୋଧନ ଚିତ୍ରସେନ ଗନ୍ଧର୍ବ ଦ୍ୱାରା ପରାଜିତ ହେବା ଫଳରେ ଗନ୍ଧର୍ବମାନେ ତାଙ୍କୁ ନାନା ଭାବରେ ଅପମାନିତ କରୁଥିଲେ । ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କର ଏ ପ୍ରକାର ଅବସ୍ଥା ଦେଖି ଭୀମଙ୍କୁ ପୂର୍ବର ସମସ୍ତ ରାଗ ଭୁଲିଯାଇ ଏ ସମୟରେ ସାହାଯ୍ୟ କରିବା ନିମନ୍ତେ ଉପଦେଶ ଦେଇଅଛନ୍ତି—

"ସୋଦରୋନ୍ତ ମନ୍ତ୍ରାଳଲେ ବହୁତ ଅଛୁ ଧର୍ମେ
ତାଙ୍କୁ ରଖିଲେ କଥା ରହିବ ଜନ୍ମେ ଜନ୍ମେ ।"

( ବନ ପର୍ବ—ପୃ-୧୯ )

ମିଥ୍ୟା କହିବା ମହାପାପ, ଏଣୁ ସତ୍ୟ କହିବା ଫଳରେ ଯେତେବଡ଼ ବିପଦ ଆସୁଥିଲେ ହେଁ ମିଥ୍ୟା କୁହାଯାଏ ନାହିଁ । ପୁଣି କେଉଁମାନଙ୍କୁ ମିଥ୍ୟା କହିଲେ, ତା'ର ପରିଣତି କ'ଣ ହୁଏ, ତାହାର ସୂଚନା ସାରଳା ନିଜ ଗ୍ରନ୍ଥରେ ଦେଇଛନ୍ତି । ଦ୍ରୋଣଙ୍କୁ 'ଅଶ୍ୱତ୍ଥାମା ହତ' ବୋଲି କହିବା ନିମନ୍ତେ ଯୁଧିଷ୍ଠିରଙ୍କୁ ଶ୍ରୀକୃଷ୍ଣ ପରାମର୍ଶ ଦେଇଛନ୍ତି; ମାତ୍ର ସତ୍ୟବାଦୀ ଯୁଧିଷ୍ଠିର ମିଥ୍ୟାର ଆଶ୍ରୟ ନ ନେବା ପାଇଁ କହିଛନ୍ତି । ଦ୍ରୋଣ ତାଙ୍କର ଗୁରୁ । ତେଣୁ ସେ ବା କପରି ତାଙ୍କୁ ମିଥ୍ୟା କହିବେ ? ଏହି ପ୍ରସଙ୍ଗରେ ଯୁଧିଷ୍ଠିର କହିଛନ୍ତି--

"ଈଶ୍ୱର ଦେବତା ଗୁରୁମୁରେ ମିଥ୍ୟା ଯେ କହିଲେ ।
ଗଳିତ କୁଷ୍ଠ ବ୍ୟାଧି ହୋଇଅଇ ଧର୍ମ ନନ୍ଦନ ବୋଇଲେ ।
ମାତା ପିତାଙ୍କ ଗୁରୁମୁରେ ମିଥ୍ୟା କହନ୍ତି ଯେ ଜନ
ଇହଲୋକେ ରୋଗୀ ହୋଅନ୍ତି ମଲେ ନରକେ ପତନ ।"

( ଦ୍ରୋଣପର୍ବ—ପୃ-୩୯୩ )

ଶରଶଯ୍ୟାରେ ଶୟନ କରି ମହାଗୁରୁ ମହାରଥୀ ଭୀଷ୍ମ ନୈତିକ ଜୀବନରେ ଶୁଦ୍ଧ ପରମ୍ପରା ରକ୍ଷା କରିବା ନିମନ୍ତେ ଏବଂ ସୁଶାସନର ବାସ୍ତବତା ଉପଲବ୍ଧି କରିବା ନିମନ୍ତେ 'ଶାନ୍ତିପର୍ବ'ରେ ଯୁଧିଷ୍ଠିରଙ୍କୁ ରାଜନୀତି, ଅର୍ଥନୀତି; ଧର୍ମନୀତି, ସମ୍ପର୍କୀୟ ଉପଦେଶମାନ ଦେଇଅଛନ୍ତି—

ରାଜନୀତି -

ରାଜ୍ୟକର ଏବେ ବାବୁ ଧର୍ମ ପ୍ରତିପାଳି ।
ଅଧର୍ମ କ୍ଷଣହେଁ ନ ସହିବଟି ମହୀଆଳୀ ।

ପରଜା ପାଳିବୁ କେହି ନୋହିବେଟି ଦୁଃଖୀ
ପ୍ରଜାଙ୍କ ରକ୍ଷଣେ ସିନା ରାଜା ହୋଇନ୍ତି ସୁଖୀ ।

ନ୍ୟାୟେ ପ୍ରଜାନ୍ତ ପାଳିଲେ ଇନ୍ଦ୍ରକରେ ବୃଷ୍ଟି
ରାଜ୍ୟ ପ୍ରତି ଥାନିଲେ ପରଜା ଙ୍କୁ ପଡ଼ଇ ଅରିଷ୍ଟି ।

× × ×

ରାଜ୍ୟ ଦଣ୍ଡ ବରଗିବୁ ଧାର୍ମିକ ଲୋକ ଦେଖି
ତେବେ ସେ କନ ପରଜା ହୋଇବେ ବଡ଼ ସୁଖୀ ।

ଗୁରୁ ବରଗି ଦେଖିବୁ ବଧ୍ୟ ଯେ ଅବଧ୍ୟ
ଦଣ୍ଡ ଅବଧ୍ୟ କଲେ ତୁ ପକାଇବୁଟି ଛେଦ ।

ଅଜ୍ଞାତ ବ୍ୟାପାରେ ଦଣ୍ଡିଲେ ଯେ ନାହିଂ ଦୋଷ
ଦୋଷ ଜାଣିଣ ଶାସ୍ତି ଦେବୁ ରୁ ପଣ୍ଡ୍ରିତ ।"

(ପୃଷ୍ଠା-୨)

ଅର୍ଥନୀତି—

"କୋଡ଼ିଏ ହାଥ ଗୁହି କରବୁ ନଲ କାଠି
ପଞ୍ଚବଂଶ ନଲରେ ମାଣେକ ପ୍ରଜାଟି ।
ବଂଶ ମାଣରେ ଯେ କରବୁ ଏକ ବାଟି ।
ବାଟିକେ ଟନୋଏ କର ଯେନଥିବୁ ସସ୍ତା
ଆମ୍ଭର ଆଜ୍ଞାଷ ଯେନ ବୃଦ୍ଧିଥିବୁ ରଜା ।"

(ପୃ-୩)

ଧର୍ମନୀତି—

"ଠାବେ ଠାବେ ରଜା ଯେ କରବୁ ଜଲକୀର୍ତ୍ତି
ଇନ୍ଦ୍ର ବୃଷ୍ଟି ନ କଲେ କ୍ଷେତ ଯେହ୍ନେ ବ୍ରତି ।

ଅଲପ ଦୋଷକୁ ବାବୁ ନ କରବୁ ରୋଷ
ନିରେଖ ଜନଂକୁ ଦେବୁ ପ୍ରାସାଦ ମୃତ୍ତିକାସ ।

ବ୍ରାହ୍ମଣେ ଦାନ ଦେବୁ ନ କର କପଟ
ଶିବଆଲେ ଗୋଦୋହନ କରବୁ ଧର୍ମଗୃହ ।

ନଦୀମାନଙ୍କରେ ଶଙ୍ଖ ଆବର ନାବ ଥିବ
ଶୀତକାଲେ ଦକ୍ଷିଣ ମେଲି ତୋଳାଇବ ।

ଅନଲ ଦାନ ତହିଂ ଦେବ ଠାବେ ଠାବେ
ପଥଶ୍ରାନ୍ତ ଜନେ ଯେହ୍ନେ କ୍ଳେଶ ନ ପାଇବେ ।

ଗ୍ରୀଷ୍ମକାଲେ ଦେବୁଟି ପାଣିପଣା ଦାନ
ଛତା ପାଣ୍ଡୋଇ ଶୀତଲ ସଞ୍ଚା [redacted] ବସ୍ତ୍ରମାନ ।"

(ପୃଷ୍ଠା-୩)

ବ୍ରାହ୍ମଣ, ପଣ୍ଡିତ ଓ ଦେବତାଙ୍କୁ ଭକ୍ତି କରିବା ପାଇଁ ପରଦ୍ରବ୍ୟ ବଳପ୍ରୟୋଗ ପୂର୍ବକ ହରଣ ନ କରିବା ପାଇଁ, ଶରଣାର୍ଥୀକୁ ସବୁ ପ୍ରକାରେ ରକ୍ଷା କରିବା ପାଇଁ ଏବଂ ଗୁଣୀଜନ ଓ ପଣ୍ଡିତମାନେ ନିଜ ନିଜର ପ୍ରଶଂସା ନ କରିବା ପାଇଁ ସାରଳା ଦାସ ନିଜ ଢଙ୍ଗରେ ବିଭିନ୍ନ ସ୍ଥାନରେ ଉପଦେଶ ଦେଇଅଛନ୍ତି । ସମାଜର ପ୍ରତି ସ୍ତରର

ଲୋକଙ୍କ ପାଇଁ ଏଥିରେ ନୀତିଗର୍ଭିତ ଉପଦେଶାବଳୀ ରହିଅଛି । ଏହି କାରଣରୁ ସାରଳା ଦାସ ପ୍ରଭାବ ପରବର୍ତ୍ତୀ ସମାଜ ଓ ସାହିତ୍ୟ ଉପରେ ବହୁକାଳ ପର୍ଯ୍ୟନ୍ତ ଅପ୍ରତିହତ ରହି ଆସିଅଛି ।

## ଲୋକକଥା

ପୂର୍ବରୁ କୁହାଯାଇଛି, ସାରଳା ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ କିମ୍ବା ଗ୍ରନ୍ଥାକାରରେ ଲିଖିତ ନୁହେଁ । ମହାଭାରତର ବିଷୟବସ୍ତୁକୁ ସ୍ଥୂଳଭାବରେ ଗ୍ରହଣ କରି ଅର୍ଥାତ୍ ଆଦ୍ୟ ଓ ପ୍ରାନ୍ତ ଦୁଇଟି ବିନ୍ଦୁକୁ ଅପରିବର୍ତ୍ତିତ ରଖି ମଧ୍ୟଭାଗରେ ସେ ନିଜ ଇଚ୍ଛା ଅନୁଯାୟୀ ବିଷୟ ବସ୍ତୁର ପରିବର୍ତ୍ତନ କରିଅଛନ୍ତି । ମୂଳ ମହାଭାରତରେ ନାୟକ ନାୟିକାମାନଙ୍କୁ ନିଜ ପ୍ରୟୋଜନାନୁଯାୟୀ ସେ ପରିବର୍ତ୍ତନ କରିଅଛନ୍ତି । କବି ଗ୍ରାମ୍ୟ ସଭ୍ୟତା ମଧ୍ୟରେ ଜନ୍ମ ଗ୍ରହଣ କରିଥିଲେ ଏବଂ ପରିପାଳିତ ହୋଇଥିଲେ । ଏଣୁ ମହାଭାରତରେ ଯେଉଁଠି ସୁବିଧା ପାଇଛନ୍ତି ସେଠାରେ ସେ ଗ୍ରାମ୍ୟ ସଭ୍ୟତାର ଓ ଲୋକ ଚରିତ୍ରର ଚିତ୍ର ପ୍ରଦାନ କରିଛନ୍ତି । ଏଣୁ ସାରଳା ମହାଭାରତରେ ଗାଉଁଲି ଲୋକ ଚରିତ୍ର ପୂରି ରହିଛି ଏବଂ ଏହାକୁ ପାଠକଲେ ପାଠକର ସ୍ୱତଃ ମନକୁ ଆସେ ଯେ, ଏହା ହେଉଛି ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ଗାଉଁଲି କବି ସାରଳା ଦାସଙ୍କର ଏକ ସ୍ୱତନ୍ତ୍ର ମହାଭାରତ । ଏଥିପାଇଁ ସାରଳା ସାହିତ୍ୟକୁ ଓଡ଼ିଆ ସାହିତ୍ୟରେ ପ୍ରଥମ ଲିଖିତ ଲୋକ-ସାହିତ୍ୟ ଭାବରେ ଗ୍ରହଣ କରିବାରେ ଯଥାର୍ଥତା ରହିଛି ।

ସାରଳା ମହାଭାରତରେ ଆମେ ମୂଳ ଗ୍ରନ୍ଥର ଅନେକ ପ୍ରସିଦ୍ଧ ଗଳ୍ପ ଓ ଆଲୋଚନା ହରାଇଛୁ ସତ, କିନ୍ତୁ ତା ପରିବର୍ତ୍ତେ ଶତାଧିକ ପ୍ରବଚନ ଓ ଲୋକକଥା ପାଇଛୁ । ବର୍ତ୍ତମାନ ଦେଖିବା କଥା ଏହି ଲୋକକଥା ସାରଳାଙ୍କ ଗ୍ରନ୍ଥକୁ ଆସିଲା କିପରି ? ଏହି ଅବକାଶରେ ଏହା ସ୍ୱତଃ ମନକୁ ଆସେ ଯେ ତତ୍କାଳୀନ ସମାଜରେ ଆଦ୍ୟ କାଳରୁ ପ୍ରଚଳିତ ଥିବା ଲୋକକଥାକୁ ସାରଳା ଦାସ ପରିବର୍ତ୍ତିତ ରୂପରେ ବା ଅବିକଳ ଭାବରେ ନିଜ ଗ୍ରନ୍ଥରେ ଗ୍ରହଣ କରି ନେଇଅଛନ୍ତି ଏବଂ ନିଜ କଳ୍ପନାରୁ ପ୍ରସୂତ କିଛି ଲୋକକଥା ଏଥିରେ ଯୋଗ କରି ଦେଇଅଛନ୍ତି । ତାଙ୍କ ରଚନା ଯେ ଗ୍ରାମ୍ୟ ଜନଙ୍କ ପାଇଁ ଉଦ୍ଦିଷ୍ଟ, ଏହା ସେ କୌଣସି ମୁହୂର୍ତ୍ତରେ ଭୁଲିଯାଇ ନାହାନ୍ତି । ସାରଳା ମହାଭାରତର ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଏହି ଲୋକକଥାଗୁଡ଼ିକ । ଏହା ମଧ୍ୟରୁ ଅନେକ ଏବେ ମଧ୍ୟ ଓଡ଼ିଶାର ଲୋକମୁଖରେ ଶୁଣାଯାଉଛି, ଯାହା ସାରଳା ମହାଭାରତର ଲୋକପ୍ରିୟତା କ୍ଷେତ୍ରରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରେ ।

## ଭାରଣୀ ତରିରେ ଶଳାକୁ ନମସ୍କାର :

ମଧ୍ୟ ପର୍ବରେ ବର୍ଣ୍ଣିତ ଅଛି ଯେ ଯୁଧିଷ୍ଠିର ଯଜ୍ଞ ସ୍ଥଳରେ ଉପସ୍ଥିତ ଥିବା ସମୟରେ ଦ୍ରୌପଦୀଙ୍କ ବଡ଼ଭାଇ ଧୃଷ୍ଟଦ୍ୟୁମ୍ନ ଆସି ସେଠାରେ ପହଞ୍ଚିଛନ୍ତି । ତାଙ୍କୁ ଦେଖି

ଯୁଧିଷ୍ଠିର ନମସ୍କାର କରିଛନ୍ତି ଏବଂ ଧୃଷ୍ଟଦ୍ୟୁମ୍ନ ତାଙ୍କୁ କଲ୍ୟାଣ କରିଅଛନ୍ତି । ଏହା ଦେଖି ସେଠାରେ ଉପସ୍ଥିତ ଶ୍ରୀକୃଷ୍ଣ କ୍ରୋଧାନ୍ୱିତ ହୋଇଉଠିଛନ୍ତି । ଧୃଷ୍ଟଦ୍ୟୁମ୍ନଙ୍କୁ ସେ କାହିଁକି ନମସ୍କାର କଲେ ବୋଲି ଶ୍ରୀକୃଷ୍ଣ ପଚାରିବାରୁ ଯୁଧିଷ୍ଠିର ଉତ୍ତର ଦେଇଛନ୍ତି ଯେ ସେ ଦ୍ରୌପଦୀଙ୍କର ବଡ଼ଭାଇ; ଏଣୁ ନମସ୍କାର ପାଇବା ନିମନ୍ତେ ଯୋଗ୍ୟ । ଏହା ଶୁଣି ଭାରତୀର ଭାଇକୁ ନମସ୍କାର କରିବା ଶାସ୍ତ୍ରରେ ଅଛି କି ନାହିଁ ବୋଲି ଶ୍ରୀକୃଷ୍ଣ ଜାଣିବାକୁ ଚାହିଁଛନ୍ତି । ଶୁକ ବ୍ରହ୍ମାଙ୍କୁ ଡକାଯାଇଛି ଏବଂ ସେ କହୁଛନ୍ତି ଯେ ବ୍ୟାସଙ୍କ ଶାସ୍ତ୍ରରେ ଶଳା ଭୃତ୍ୟ ସମାନ ବୋଲି କୁହାଯାଇଅଛି । ଏହା ଶୁଣି ଶ୍ରୀକୃଷ୍ଣ କହୁଛନ୍ତି ଯେ ଯୁଧିଷ୍ଠିର ଧୃଷ୍ଟଦ୍ୟୁମ୍ନଙ୍କୁ କେବଳ ଭାର୍ଯ୍ୟା ତରଫରେ ନମସ୍କାର କରି-ଅଛନ୍ତି; କିନ୍ତୁ ତାଙ୍କର କଲ୍ୟାଣ କରିବା ବଧଯୋଗ୍ୟ ହୋଇନାହିଁ । ଶ୍ରୀକୃଷ୍ଣ କ୍ରୋଧ ବଶତଃ ଧୃଷ୍ଟଦ୍ୟୁମ୍ନଙ୍କୁ ଚକ୍ର ଦ୍ୱାରା ନିହତ କରିବାର ଆଶଙ୍କା କରି ଦ୍ରୌପଦୀ ବ୍ୟାସ-ଦେବଙ୍କୁ ପ୍ରାର୍ଥନା କରିଛନ୍ତି ନିଜ ଭାଇଙ୍କ ଜୀବନ ରକ୍ଷା କରିବା ନିମନ୍ତେ । ବ୍ୟାସଦେବ ଧୃଷ୍ଟଦ୍ୟୁମ୍ନଙ୍କ ପୂର୍ବ ଜନ୍ମବୃତ୍ତାନ୍ତ ବର୍ଣ୍ଣନ କରି ଶ୍ରୀକୃଷ୍ଣଙ୍କୁ ଶାନ୍ତ କରାଇଅଛନ୍ତି ।

## ସିଂହ ଶୃଗାଲ କଥା :

ଶକ୍ତିଶାଳୀ ଓ ଯୁଦ୍ଧବିଦ୍ୟାରେ ନିପୁଣ ପାଣ୍ଡବମାନଙ୍କ ରାଜ୍ୟ ଅପହରଣ କରିବା ମନୋବୃତ୍ତି ତ୍ୟାଗ କରିବା ନିମନ୍ତେ ଧୃତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କୁ ଉପଦେଶ ଦେଇଛନ୍ତି; କିନ୍ତୁ ପାଣ୍ଡବମାନେ ଯେତେ ଶକ୍ତିଶାଳୀ ହେଲେ ହେଁ କୌଶଳକ୍ରମେ ସେମାନଙ୍କ ସମ୍ପତ୍ତି କରାୟତ୍ତ କରିବା ତାଙ୍କ ପକ୍ଷରେ ଅସମ୍ଭବ ହେବ ନାହିଁ ବୋଲି ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କୁ କହୁଛନ୍ତି । ମହା ପରାକ୍ରମୀ ସିଂହକୁ କିପରି ଶୃଗାଲ କୂଟ-ବୁଦ୍ଧିରେ ବଳିଗଲା, ସେହି କଥା ଦୁର୍ଯ୍ୟୋଧନ ବଖାଣ କରିଛନ୍ତି । ସିଂହ, ଶୃଗାଲ, ବାଘ ଓ ନେଉଳ—ଏହି ଚାରିଜଣ ମିତ୍ର ଏକତ୍ର ବାସ କରୁଥିଲେ । ଏକଦା ଏମାନେ ଏକ ମୃଗ ଶିକାର କରିଛନ୍ତି । ମୃଗମାଂସ ଭକ୍ଷଣ କରିବାକୁ ଯିବା ପୂର୍ବରୁ ସ୍ନାନାଦି କର୍ମସାରି ଶୁଚିବନ୍ତ ହେବା ନିମନ୍ତେ ଶୃଗାଲ ପ୍ରସ୍ତାବ ଦେଇଛି । ସ୍ଥିର ହୋଇଛି, ଶୃଗାଲ ମୃଗମାଂସ ଜଗି ରହିବ ଏବଂ ଅନ୍ୟମାନେ ସ୍ନାନ କରିବାକୁ ଯିବେ । ସିଂହ, ବାଘ ଓ ନେଉଳ ସ୍ନାନ କରିବାକୁ ଯାଇଛନ୍ତି । ପ୍ରଥମେ ଫେରିଛି ସିଂହ । ସେ ବାଘ ଫେରିଲାଣି କି ନାହିଁ ଜାଣିବାକୁ ଚାହିଁଛି । ଚତୁର ଶୃଗାଲ କହୁଛି ଯେ ପ୍ରଥମେ ବାଘ ଆସି ବଳପ୍ରୟୋଗ ପୂର୍ବକ ମୃଗମାଂସ ଭକ୍ଷଣ କରି ଚାଲିଯାଇଛି । ବାଘ ପ୍ରଥମେ ଖାଇବା ଦ୍ୱାରା ଏହି ମାଂସ ଉଚ୍ଛିଷ୍ଟ ହୋଇଯାଇଥିବାରୁ କହି ସିଂହ ଅନ୍ୟ ମାଂସ ସନ୍ଧାନରେ ବନ ମଧ୍ୟକୁ ଚାଲିଯାଇଛି । ତାପରେ ଆସିଛି ବାଘ । ବାଘକୁ ଦେଖି ଶୃଗାଲ କହୁଛି ଯେ ବାଘ ଓ ଶୃଗାଲ ଏ ମାଂସ ସ୍ପର୍ଶ କରିଥିବାରୁ ସିଂହ କ୍ରୁଦ୍ଧ ହୋଇ ଏହା ଭକ୍ଷଣ କରିବା ନିମନ୍ତେ ନାସ୍ତି କରି ଚାଲିଗଲା । ସିଂହ କ୍ରୁଦ୍ଧ ହୋଇଥିବା ଜାଣି ଭୟରେ ବାଘ ମଧ୍ୟ ମୃଗ ମାଂସ ନ ଖାଇ ସେ ସ୍ଥାନ ପରିତ୍ୟାଗ କରିଛି । ତା

ପରେ ଆସିଛି ନେଉଳ । ନେଉଳକୁ ଦେଖି ଶୃଗାଳ ଭୟ ଦେଖାଇ ତାକୁ ଘଉଡ଼ାଇ ଦେଉଛି ଏବଂ ମୃଗମାଂସ ଏକାକୀ ମହା ଆନନ୍ଦରେ ଭକ୍ଷଣ କରୁଛି ।

( ସଭାପର୍ବ )

# ସିଂହ ଶଶା କଥା :

ପଶୁରାଜ ସିଂହକୁ ଶଶା ପରି ଏକ କ୍ଷୁଦ୍ର ଜୀବ କପରି ବୁଦ୍ଧି ବଳରେ ବିନାଶ କରି ପାରିଥିଲା, ସେହି କଥା ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କୁ କହୁଛନ୍ତି । କଥାଟି ହେଉଛି – ସିଂହ ମନଇଚ୍ଛା ଜୀବଜନ୍ତୁ ମାରି ଖାଉଥିବାରୁ ବଣର ଜୀବଜନ୍ତୁମାନେ ଏକଦା ତାକୁ ଏପରି ଅନ୍ୟାୟ ନ କରିବା ପାଇଁ ଅନୁରୋଧ କଲେ । ସେମାନେ କହିଲେ ଯେ ପ୍ରତିଦିନ ପାଳିକରି ସେମାନେ ତାକୁ ଗୋଟିଏ କରି ଜୀବ ଖାଇବାକୁ ଦେବେ । ବିନା ପରିଶ୍ରମରେ ଖାଦ୍ୟ ମିଳିଯିବ – ଏ ପ୍ରସ୍ତାବରେ ସିଂହ ବା କାହିଁକି ଅସମ୍ମତ ହୁଅନ୍ତା ? ସେ ତତ୍‌କ୍ଷଣାତ୍ ରାଜି ହୋଇଯାଇଛି । ପ୍ରତିଦିନ ପାଳି ଅନୁଯାୟୀ ସେ ଗୋଟିଏ ଗୋଟିଏ କରି ଜୀବ ଖାଇବାକୁ ପାଇଛି । ଏହିପରି କିଛି ଦିନ ଯିବା ପରେ ଗୋଟିଏ ବୃଦ୍ଧ ଶଶାର ବଂଶ ବୁଡ଼ିବାକୁ ବସିଛି । ସିଂହକୁ ମାରି କପରି ନିଜ ବଂଶ ରକ୍ଷା କରିବ, ଏହି କଥା ସେ ଚିନ୍ତା କରିବାରେ ଲାଗିଛି । ଶେଷରେ ଏକ ଉପାୟ ସ୍ଥିର କରିଛି । ତା'ର ଯେଉଁଦିନ ପାଳି ପଡ଼ିଛି, ସେଦିନ ସେ ଟିକିଏ ବିଳମ୍ବରେ ସିଂହ ପାଖରେ ପହଞ୍ଚିଛି । କ୍ଷୁଧାତୁର ସିଂହ -ତାକୁ ଦେଖି ଖୁବ୍ ରାଗିଯାଇଛି ଏବଂ ବିଳମ୍ବ ହେବାର କାରଣ ପଚାରିଛି । ଶଶା କହିଛି, "ବାଟରେ ମୋର ଅନ୍ୟ ଏକ ସିଂହ ସହିତ ଭେଟ ହେଲା । ସେ ମୋତେ ବଳାତ୍କାରରେ ଭକ୍ଷଣ କରିବାକୁ ବସିଥିଲା । କିନ୍ତୁ ତା ନିକଟକୁ ଅଳ୍ପ ସମୟ ପରେ ଫେରିଆସିବାର ବିଶ୍ୱାସ ତା ମନରେ ଜନ୍ମାଇ ମୁଁ ତମକୁ ଏକଥା ଜଣାଇବା ନିମନ୍ତେ ଧାଇଁ ଆସିଛି ।"

ସେହି ବିରାଟ ବନର ସେ ଏକମାତ୍ର ଅଧିକାରୀ ହୋଇଥିବାରୁ , ଆଉ ଏକ ସିଂହର ଉପସ୍ଥିତି ସେ ସହ୍ୟ କରିପାରିଲା ନାହିଁ । ନୂତନ ସିଂହର ପ୍ରାଣ ନାଶ କରିବା ନିମନ୍ତେ ସେ ତା'ର ବାସସ୍ଥାନ ଦେଖାଇ ଦେବାକୁ ଶଶାକୁ କହିଛି । ଶଶା ତାକୁ ଘୋର ଅରଣ୍ୟ ମଧ୍ୟକୁ ନେଇ ଏକ ବିରାଟ ବାପୀ ଦେଖାଇ କହିଛି ଯେ ଭିତରେ ନୂତନ ସିଂହ ଆତ୍ମଗୋପନ କରିଛି । ସିଂହ ଗର୍ଜନ କରି ବାପୀ ଭିତରକୁ ଚାହିଁବାରୁ ନିଜର ଛାଇ ଦେଖିଛି ଏବଂ ଏହାକୁ ଅନ୍ୟ ଏକ ସିଂହ ବୋଲି ଭାବିଛି । ପୁନଶ୍ଚ ତା'ର ଗର୍ଜନର ପ୍ରତିଧ୍ୱନି ତାକୁ ନୂତନ ସିଂହର ଗର୍ଜନ ଭଳି ଜଣାଯାଇଛି । ବର୍ତ୍ତମାନ ଶଶାର କଥାରେ ସନ୍ଦେହ ରହି ନାହିଁ । ରେ ରେ କାର କରି ସେ ବାପୀ ମଧ୍ୟକୁ ଲମ୍ଫ ପ୍ରଦାନ କରିଛି ଏବଂ ଅଗାଧ ଜଳରେ ପ୍ରାଣ ହରାଇଛି । କ୍ରୋଧାନ୍ଧ ହୋଇ ଭଲ ମନ୍ଦ ବିଚାର

ନ କରି ହଠାତ୍ କିଛି ଗୋଟାଏ କରି ବସିଲେ । ଅପରିଣାମଦର୍ଶୀ 'ସିଂହ ଭଳି ମୃତ୍ୟୁ ବରଣ କରିବାକୁ ପଡ଼ିଥାଏ । (ସଭାପର୍ବ)

## ଅଳସୁଆ ଚରିତ ବା ଅନନ୍ତା କଥା :

କୃଷ୍ଣାବେଣୀ ନଦୀ କୂଳରେ ଗୋଟିଏ ନଗର; ନାମ ତା'ର କାମପୁର । ମେଲକା ନାମରେ ଜଣେ ଶୂଦ୍ର ସେଠାରେ ବାସ କରୁଥାଏ । ସେ କପଟ ଅଳସୁଆ । ଜଙ୍ଗଲରୁ କିଛି ଶୁଖିଲା କାଠ ଭାଙ୍ଗି ଆଣିବା ଛଡ଼ା ତାକୁ ଆଉ କିଛି ଜଣା ନ ଥାଏ । ସେହି କାଠତକ ବିକି କରି ତା'ର ସ୍ତ୍ରୀ ଘର ଚଳାଏ । ଦିନେ ଝଡ଼ବର୍ଷାରେ ସ୍ତ୍ରୀ ଦ୍ୱାରା ଭର୍ତ୍ସିତ ସେହି ଅଳସୁଆ ନିଜ ଇଚ୍ଛା ବିରୁଦ୍ଧରେ ବଣକୁ କାଠ କାଟିବାକୁ ବାହାରିଅଛି । ଯାଉଯାଉ, ସେହି ଗ୍ରାମର ପୂର୍ବ ଭାଗରେ ଥିବା ଏକ ମନ୍ଦିରର ମଣ୍ଡପରେ ନିଦ୍ରାଳୁତା ବଶତଃ ସେ ଶୋଇପଡ଼ିଛି । ସନ୍ଧ୍ୟା ଆରଧନାର ଶଙ୍ଖ ଘଣ୍ଟାଧ୍ୱନିରେ ତା ନିଦ ଭାଙ୍ଗି ଯାଇଛି । ଏବେ କରିବ କ'ଣ ? କାଠ ନେଇ ନ ଗଲେ ଘରେ ସ୍ତ୍ରୀ ବିରକ୍ତ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଉପବାସ ରହିବାକୁ ପଡ଼ିବ । ସମସ୍ତେ ଚାଲିଯିବା ପରେ ସେ ମନ୍ଦିର ମଧ୍ୟରେ ପ୍ରବେଶ କରିଅଛି । ମନ୍ଦିରରେ ସାତହାତ ଉଚ୍ଚ ଓ ତିନିହାତ ମୋଟ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତିନି ଦାରୁମୂର୍ତ୍ତି ଥିବାର ସେ ଦେଖି-ଅଛି । ସେହି ମୂର୍ତ୍ତି ମଧ୍ୟରୁ ଗୋଟିଏ ହାଣି ସେଦିନର ଗୁଜୁରାଣ ମେଣ୍ଟାଇବା ନିମିତ୍ତ ସେ ସ୍ଥିର କରିଅଛି । ପ୍ରଥମେ ବିଷ୍ଣୁ ମୂର୍ତ୍ତିଟିକୁ ସେ ତଳେ ପକାଇ କୁରାଢ଼ୀରେ ହାଣିବା ନିମନ୍ତେ ଉଦ୍ୟତ ହୋଇଅଛି । ଏହି ସମୟରେ ମୂର୍ତ୍ତିରୁ ଜଗନ୍ନାଥ ବାହାରି ତା ହାତ ଧରି ପକାଇଛନ୍ତି ଏବଂ ଦେବତାଙ୍କୁ ହାଣିବା ଦ୍ୱାରା ଅପରାଧ ହେବ ବୋଲି ତାକୁ ବୁଝାଇ ଦେଇଅଛନ୍ତି । ମେଲକା ଅଳସୁଆ କହୁଛି ଯେ ସେ ମୂର୍ଖ ଏବଂ ଦରିଦ୍ର । ଏଣୁ ତା'ର ଦେବତା ବ୍ରାହ୍ମଣ ଜ୍ଞାନ ନାହିଁ । ଯଦି ତାକୁ ଝଡ଼ବର୍ଷା ସମୟରେ ଚଳିଯିବା ପାଇଁ ପାଞ୍ଚବୋଡ଼ି କଉଡ଼ି ଆଉ ପାଞ୍ଚମାଣ ଚାଉଳ ମିଳିଯିବ, ସେ ମୂର୍ତ୍ତିକୁ ହାଣିବ ନାହିଁ । ଜଗନ୍ନାଥ ତାକୁ ଦକ୍ଷିଣ ପାର୍ଶ୍ୱରେ ଥିବା ଗଣପତି ମନ୍ଦିରକୁ ଯାଇ ସେଠାରୁ ଚାଉଳ ଓ କଉଡ଼ି ନେଇଯିବା ପାଇଁ କହିବାରୁ ସେ ସେପରି କରିଅଛି । ଝଡ଼ ଛାଡ଼ିଯିବା ପରେ ସେ ଆଉ ବଣକୁ ନ ଯାଇ ଦେବ ପ୍ରତିମାକୁ ପୁଣି ହାଣିବାକୁ ବସିଅଛି । ଭୟରେ ଜଗନ୍ନାଥ ତାକୁ ହିଁ ପ୍ରତିଦିନ ଗଣେଶଙ୍କ ମନ୍ଦିରରୁ ଚାଉଳ ଓ କଉଡ଼ି ପାଇବାର ବ୍ୟବସ୍ଥା କରି ଦେଇଅଛନ୍ତି । ସେହିଦିନଠାରୁ ମେଲକା ତା ସ୍ତ୍ରୀ ସହିତ ସୁଖରେ ବାସ କରିଅଛି ।

ମେଲକା ଶୂଦ୍ରର ଅନନ୍ତା ନାମକ ଜଣେ ଶୂଦ୍ର ପଡ଼ୋଶୀ ଥାଏ । ସେ କର୍ମଠ ହେଲେ ହେଁ ଦରିଦ୍ର । ତା ସ୍ତ୍ରୀ ନୀଳାବତୀ ମେଲକା ସ୍ତ୍ରୀର ବାଲ୍ୟସାଥୀ । ମେଲକାର ସୁନ୍ଦର ସଂସାର ଦେଖି ନୀଳାବତୀ ତା'ର ସାଥୀଠାରୁ ସମସ୍ତ ବିଷୟ

ବୁଝିଅଛୁ ଏବଂ ଅନନ୍ୟାକୁ କହୁଅଛୁ । ଅଳସୁଆ ପଡ଼ୋଶୀ ଭଲ ବନା ପରିଶ୍ରମରେ ଚୁଡ଼ିଲ ଓ କଉଡ଼ି ରୋଜଗାର କରିବା ପାଇଁ ଇଚ୍ଛା କରି ଅନନ୍ୟା ବସ୍ତ୍ର ମୂର୍ତ୍ତିକୁ ହାଣିବାକୁ ଗଲବେଳେ ଜଗନ୍ନାଥ କରାଳ ମୂର୍ତ୍ତି ଧାରଣ କରି ତାକୁ ଦ୍ୱିଫାଳ କରିବାକୁ ଉଦ୍ୟତ ହୋଇଛନ୍ତି । ସମାନ ପ୍ରକାର କାର୍ଯ୍ୟ କରୁଥିଲେ ମଧ୍ୟ ଦେବତା ଅଳସୁଆ ପ୍ରତି ସଦୟ ଏବଂ ତା' ପ୍ରତି ନିର୍ଦ୍ଦୟ ହେଉଥିବାର କାରଣ ସେ ତାଙ୍କୁ ପଚାରିଛୁ । ଦେବତା କହିଛନ୍ତି ଯେ ସେ ଅଳସୁଆ ଜ୍ଞାନହୀନ, ମୂର୍ଖ ଏବଂ ଅସୁର ପ୍ରକୃତର । ଏଣୁ ତାକୁ ଦେବତା ଡରନ୍ତି; ମାତ୍ର ତା'ର (ଅନନ୍ୟାର) ଦେବତା, ବ୍ରାହ୍ମଣ ଓ ପାପପୁଣ୍ୟ ଜ୍ଞାନ ଅଛି । ଏଣୁ ତାକୁ ଦେବତା ଭୟ କରନ୍ତି ନାହିଁ ।

ଏହି ଉପାଖ୍ୟାନରୁ ଏହି ନୀତିଶିକ୍ଷା ମିଳିଲା ଯେ ଭଗବାନ ଅଳସୁଆ ଓ ଅଜ୍ଞାନ ଲୋକକୁ ଘୃଣା ଓ ଭୟ କରନ୍ତି; ମାତ୍ର କର୍ମଠ ଲୋକକୁ କାମ କରି ପେଟ ପୋଷିବାକୁ ଉପଦେଶ ଦିଅନ୍ତି । (ଉଦ୍‌ଯୋଗ ପର୍ବ)

## କଳି ଅବତରଣ ଉପାଖ୍ୟାନ :

ଧର୍ମରାଜ ଯୁଧିଷ୍ଠିର ସ୍ୱର୍ଗାରୋହଣ ନିମିତ୍ତ ପ୍ରସ୍ତୁତ ହେଉଥିବା ସମୟର ଏ ଘଟଣା । ତାଙ୍କ ରାଜ୍ୟର ଜନୈକ ବ୍ରାହ୍ମଣଙ୍କ ଜମିରେ ଥିବା ଢିପକୁ ତାଙ୍କର ଶୂଦ୍ର ଭୃତ୍ୟ ହାଣି ସମାନ କରୁଥିବା ସମୟରେ ଢିପ ତଳୁ ସେ ଏକ ମଣିମାଣିକ୍ୟଯୁକ୍ତ ସୁବର୍ଣ୍ଣ କଙ୍କଣ ପାଇଅଛି ଏବଂ ତାକୁ ନେଇ ବ୍ରାହ୍ମଣଙ୍କୁ ଦେଇଅଛି । ବ୍ରାହ୍ମଣ ଏହାକୁ ନେବା ପାଇଁ ରାଜି ହୋଇ ନାହାନ୍ତି । ତାଙ୍କର ଯୁକ୍ତି ହେଉଛି, ଜମିର ଶସ୍ୟରେ କେବଳ ତାଙ୍କର ଅଧିକାର; ମାତ୍ର ଜମି ତଳୁ ମିଳିଥିବା ସମ୍ପଦରେ ତାଙ୍କର ଅଧିକାର ନାହିଁ । ଏହା ବରଂ ଶୂଦ୍ରର ପ୍ରାପ୍ୟ; କାରଣ ସେ ଏହା ଭୂମି ତଳୁ ପାଇଅଛି । ଶୂଦ୍ର ଭୃତ୍ୟ; କିନ୍ତୁ ଏହାକୁ ଫେରାଇ ନେବାକୁ ରାଜି ହୋଇନାହିଁ । ସେ କହୁଛି ଯେ କାମ ପାଇଁ ମଜୁରି ତା'ର ପ୍ରାପ୍ୟ; କିନ୍ତୁ ରତ୍ନ ନୁହେଁ । ଏପରି କଲେ ତା'ର ପାପ ହେବ ।

ପ୍ରଭୁ ଓ ଭୃତ୍ୟ ଏହାର ସମାଧାନ କରି ନ ପାରି ଧର୍ମରାଜ ଯୁଧିଷ୍ଠିରଙ୍କ ପାଖରେ ପହଞ୍ଚିଛନ୍ତି । ଯୁଧିଷ୍ଠିର ଏ ପ୍ରକାର ବିଚିତ୍ର ଘଟଣା ଉପରେ ନିଜେ କିଛି ମନ୍ତବ୍ୟ ନ ଦେଇ ସହଦେବଙ୍କୁ ପଚାରିଅଛନ୍ତି । ବିଜ୍ଞ ମନ୍ତ୍ରୀ ସହଦେବ କହିଲେ ଯେ ଏହା ହେଉଛି ସତ୍ୟ ଯୁଗର ପ୍ରଭାବ । କଳିଯୁଗ ଆଗମନ କାଳରେ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସେ କଳିକୁ ଗୋଟିଏ ସ୍ତମ୍ଭରେ ବାନ୍ଧି ରଖିଛନ୍ତି । କାରଣ ଶ୍ରୀକୃଷ୍ଣ ଚାହିଁଥିଲେ ଯେ ଯୁଧିଷ୍ଠିରଙ୍କ ଶାସନର ଶେଷ ଦିନ ପର୍ଯ୍ୟନ୍ତ ସତ୍ୟଯୁଗ ଏ ଧରାରେ ବିରାଜମାନ ଥାଉ । ଯୁଧିଷ୍ଠିରଙ୍କ ଶାସନ ସେତେବେଳକୁ ଶେଷ ହୋଇ ସାରିଥିବାରୁ ସହଦେବ କଳିକୁ ବନ୍ଧନମୁକ୍ତ କରିଛନ୍ତି । ବର୍ତ୍ତମାନ ବ୍ରାହ୍ମଣ ଓ ଭୃତ୍ୟ ମଧ୍ୟରେ

ଥିବା ବିବାଦ ଭିନ୍ନ ରୂପ ଧାରଣ କରିଛି । ବ୍ରାହ୍ମଣ କହୁଛନ୍ତି ଯେ କଙ୍କଣଟି ତାଙ୍କ ଜମିରୁ ମିଳିଥିବାରୁ ଏଇଟି ତାଙ୍କର ପ୍ରାପ୍ୟ । ଭୃତ୍ୟ କହୁଛି ଯେ ବ୍ରାହ୍ମଣ ଜମିରେ ଉତ୍ପନ୍ନ ହେଉଥିବା ଶସ୍ୟରେ ଅଧିକାରୀ, ଜମି ତଳେ ଥିବା ସମ୍ପଦରେ ନୁହେଁ । ଏହା ବରଂ ତା'ର ପ୍ରାପ୍ୟ; କାରଣ ପରିଶ୍ରମ ବଳରେ ସେ ଏହା ପ୍ରାପ୍ତ ହୋଇଅଛି ।

ସେତେବେଳକୁ ଯୁଧିଷ୍ଠିର ପରୀକ୍ଷିତଙ୍କୁ ସିଂହାସନରେ ଅଭିଷିକ୍ତ କରି ସାରିଥାନ୍ତି । ଏଣୁ କଳିଯୁଗର ରାଜା ହିସାବରେ ସେ ବିଚାର କରି କହିଲେ ଯେ ମୃତ୍ତିକା ତଳେ ଥିବା ସମସ୍ତ ଦ୍ରବ୍ୟ ରାଜାଙ୍କର । ଏଣୁ ସେ କଙ୍କଣଟିକୁ ଗନ୍ତାଘରେ ରଖିଦେବା ନିମନ୍ତେ ଆଦେଶ ଦେଇଅଛନ୍ତି ।

ପରସ୍ୱ ଅପହରଣ କରିବାକୁ ତତ୍କାଳୀନ ରାଜାମାନେ କୁଣ୍ଠାବୋଧ କରୁ ନ ଥିଲେ ବୋଲି ଏହି ବର୍ଣ୍ଣନାରୁ ଜଣାଯାଏ । ଏହି ପ୍ରକାର ବିଚାର ବ୍ୟବସ୍ଥାର ନିନ୍ଦା ସାରଳା ଦାସ ଏଠାରେ କରିଥିବାର ଅନୁମାନ କରାଯାଏ । କାରଣ କବି କଳିଯୁଗର ଆଭାସ ଦେଇ କହୁଛନ୍ତି -

"ରାଜା ହୋଇବେ ଶାଗୁଣା ପରଜା ହୋଇବେ ମଡ଼ା ।"

( ସ୍ୱର୍ଗାରୋହଣ ପର୍ବ )

## ସୁହାଣୀ କନ୍ୟା ପ୍ରସଙ୍ଗ :

ସ୍ୱର୍ଗାରୋହଣ ପର୍ବର ଅନ୍ୟ ଏକ ସୁନ୍ଦର ଲୋକକଥା ହେଉଛି ଯୁଧିଷ୍ଠିରଙ୍କ ସୁହାଣୀ କନ୍ୟା ସହିତ ବିବାହ । ଅମରାବତୀ କଟକରେ ହରି ସାହୁ ବୈଶ୍ୟ ବାସ କରୁଥାଏ । ତା'ର ସୁହାଣୀ ନାମ୍ନୀ ଏକ କନ୍ୟା ଥାଏ । ଜାତକ ଗଣନାନୁସାରେ ସେ ଜାଣିବାକୁ ପାଇଛି ଯେ ତା କନ୍ୟା ବିବାହ କରିବା ମାତ୍ରେ ମୃତ୍ୟୁବରଣ କରିବ । ଏଥି ନିମନ୍ତେ ହରି ସାହୁ ଚିନ୍ତିତ ଥାଏ । ଏତିକିବେଳେ ଯୁଧିଷ୍ଠିର ଦ୍ରୌପଦୀ ଓ ଅନ୍ୟ ଭାଇମାନଙ୍କ ସହିତ ସେ ରାଜ୍ୟରେ ପ୍ରବେଶ କରିଅଛନ୍ତି । ତାଙ୍କୁ ଦେଖି ହରି ସାହୁ ତାଙ୍କର ଶରଣାଗତ ହୋଇଛି । ତା'ର ଧାରଣା ହୋଇଛି ଯେ ଯୁଧିଷ୍ଠିର ବୃଦ୍ଧ ହୁଅନ୍ତୁ ପଛେ, ସେ ଯଦି ସୁହାଣୀକି ବିବାହ କରନ୍ତି, ସୁହାଣୀ ମୃତ୍ୟୁ ମୁଖରୁ ରକ୍ଷା ପାଇଯିବ । ଏଣୁ ସେ ଯୁଧିଷ୍ଠିରଙ୍କୁ ସୁହାଣୀର ପାଣିଗ୍ରହଣ କରିବା ନିମନ୍ତେ ପ୍ରାର୍ଥନା କରିଅଛି । ସ୍ତ୍ରୀ ଓ ଭାଇମାନଙ୍କ ପରାମର୍ଶକ୍ରମେ ଯୁଧିଷ୍ଠିର ସୁହାଣୀକୁ ବିବାହ କରିବା ନିମନ୍ତେ ସ୍ଥିର କରିଅଛନ୍ତି; ମାତ୍ର ପ୍ରଶ୍ନ ଉଠିଛି, ଯମରାଜାଙ୍କ କବଳରୁ ସେ କନ୍ୟା କିପରି ରକ୍ଷା ପାଇବ ? ଅର୍ଜୁନ କହୁଛନ୍ତି ଯେ ଧର୍ମଦେବତାଙ୍କ ସହିତ ତାଙ୍କର ମିତ୍ରତା ଅଛି; ତେଣୁ ତା'ର ଜୀବନ ରକ୍ଷା କରିବା ଦାୟିତ୍ୱ ତାଙ୍କୁ ଛାଡ଼ି ଦିଆଯାଉ । ବିବାହ କାର୍ଯ୍ୟ ସମ୍ପାଦିତ ହୋଇଛି ଏବଂ ପରେ ପରେ ଯମଦୂତଗଣ ସେ କନ୍ୟାକୁ

ନେବାକୁ ଆସିଛନ୍ତି । ଅର୍ଜୁନ ଧନୁଶର ଧରି ସେମାନଙ୍କୁ ଗୋଡ଼ାଇବା ଫଳରେ ସେମାନେ ଫେରିଯାଇ ଯମଙ୍କୁ ଏ ବିଷୟ ଜଣାଇଛନ୍ତି । ନିଜେ ଯମରାଜା ସେଠାରେ ପହଞ୍ଚିଛନ୍ତି ଏବଂ ସୁହାଣୀକୁ ଛାଡ଼ିଦେବା ନିମନ୍ତେ ରାଜି ହୋଇନାହାନ୍ତି । ଏଣୁ ତାଙ୍କୁ ଗୁମ୍ଫା ମଣ୍ଡପ ସ୍ତମ୍ଭରେ ବାନ୍ଧି ଦିଆଯାଇଛି । ହରି ସାହୁର ପ୍ରାର୍ଥନା ଫଳରେ ଯମରାଜାଙ୍କୁ ମୁକ୍ତ କରାଯାଇଛି; ମାତ୍ର ଗୋଟିଏ ସର୍ତ୍ତ ରହିଛି । ସର୍ତ୍ତଟି ହେଉଛି – ଯୁଧିଷ୍ଠିର ଉପସ୍ଥିତ ଥିଲା ପର୍ଯ୍ୟନ୍ତ ସେ ରାଜ୍ୟରେ ଯମ ପଶିପାରିବେ ନାହିଁ । କୃତଜ୍ଞତା ପ୍ରକାଶ କରି ଯମ ହରି ସାହୁଙ୍କୁ ବର ଦେଇଅଛନ୍ତି ଯେ ବୈଶ୍ୟ ଜାତିର କୌଣସି ବ୍ୟକ୍ତି ଯମଦଣ୍ଡ ଭୋଗିବ ନାହିଁ ।

[ ଏହି ପୁସ୍ତକରେ ଅନ୍ୟ ପ୍ରସଙ୍ଗରେ ଆଲୋଚିତ ସିନ୍ଧୁ ଅସୁର ଜନ୍ମବୃତ୍ତାନ୍ତ, ବୈଦୁର୍ଯ୍ୟ ପର୍ବତ ବର୍ଣ୍ଣନା, ବାବନାଭୂତ କାହାଣୀ, ତୁଳସୀବଣ ବାଘ ଉପାଖ୍ୟାନ, ତୁଳାମୁହାଁ କାଙ୍କ ଉପାଖ୍ୟାନ, ଭ୍ରମର ଓଡ଼ାଢ଼ ଶିବପୁରରେ ଅଭିଷେକ, ସତ୍ୟାମ୍ବ କଥା, ଭଣ୍ଡେଶ୍ୱର ରାଜା ଉପାଖ୍ୟାନ ( କୋକୁଆ ଭୟ ) ପ୍ରଭୃତି କାହାଣୀକୁ ମଧ୍ୟ ଏହି ଆଲୋଚନାର ପରିସରଭୁକ୍ତ କରାଯାଇପାରେ । ]

ଏତଦ୍‌ଭିନ୍ନ ଆହୁରି ଅନେକ ଉପାଖ୍ୟାନ, ଲୋକକଥା ଆଦି ସାରଳା ମହାଭାରତର ପୃଷ୍ଠା ମଣ୍ଡନ କରି ଏହାକୁ ଏକ ସ୍ୱତନ୍ତ୍ର ଏବଂ ନୂତନ ମହାଭାରତରେ ପରିଣତ କରିଅଛି । ସେ ସମସ୍ତର ଆଲୋଚନା ଏଠାରେ ହେଲେ ଏକ ସ୍ୱତନ୍ତ୍ର ଏବଂ ବିରାଟ ଗ୍ରନ୍ଥର ସୃଷ୍ଟି ହେବ । ଦିଗ୍‌ଦର୍ଶନ କ୍ରମରେ ଏଠାରେ ଏକ ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହୋଇଛି ମାତ୍ର ।

## ମୌଳିକତା

[ ପୂର୍ବେ ଆଲୋଚିତ ପ୍ରବଚନ ଓ ଲୋକକଥାଗୁଡ଼ିକ ସାରଳା ଦାସଙ୍କ ମୌଳିକ ସୃଷ୍ଟି । ପୁନଶ୍ଚ 'ସଂସ୍କୃତ ମହାଭାରତ ଓ ସାରଳା ମହାଭାରତ' ପରିଚ୍ଛେଦର 'ଅନୁକ୍ତପ୍ରକ୍ଷେପ' ଅନ୍ତର୍ଗତ ବିଷୟବସ୍ତୁ ମଧ୍ୟ ସାରଳାଙ୍କ ମୌଳିକ ସୃଷ୍ଟି । ଏଣୁ ସେଗୁଡ଼ିକୁ ଏହି ପରିଚ୍ଛେଦରେ ଗ୍ରହଣ କରାଯାଇପାରେ । ତତ୍‌ସହିତ ଯୋଗ କରିବା ନିମନ୍ତେ ଆଲୋଚିତ ହୋଇ ନ ଥିବା ଆଉ କେତୋଟି ମୌଳିକ ସୃଷ୍ଟି ମଧ୍ୟ ଏଠାରେ ପ୍ରଦତ୍ତ ହେଲା । ]

ଧୃତରାଷ୍ଟ୍ରଙ୍କର ପୁତ୍ରଲାଭ ବିଷୟ ମୂଳ ମହାଭାରତରେ ଅଛି; ମାତ୍ର ଏ ସମ୍ପର୍କରେ ସଂକ୍ଷିପ୍ତ ଭାବରେ କୁହାଯାଇଛି ଯେ ଦୁଇ ବର୍ଷ ଗର୍ଭଧାରଣ କରିବା ପରେ ଗାନ୍ଧାରୀ ଏକ ମାଂସ ପିଣ୍ଡୁଳା ଜନ୍ମ କରିଛନ୍ତି ଏବଂ ଏହି ମାଂସ ପିଣ୍ଡୁଳାଗୁଡ଼ିକୁ ଏକଶତ ଖଣ୍ଡରେ ପରିଣତ କରି ଘୃତ କୁଣ୍ଡରେ ନିକ୍ଷେପ କରାଯାଇଛି । ଏକଶହ ଦିନ ପରେ

ସେଥିରୁ ଏକ ଶହ ପୁତ୍ର ଏବଂ ଏକମାତ୍ର କନ୍ୟା ଜାତ ହୋଇଛନ୍ତି । ମାତ୍ର ଏ ପ୍ରସଙ୍ଗ ଉପସ୍ଥାପନା କରିବାରେ ସାରଳା ଦାସଙ୍କ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ସାରଳା ମହାଭାରତ ଆଖ୍ୟାନ ଅନୁଯାୟୀ ପୁତ୍ରପ୍ରାପ୍ତି ନିମନ୍ତେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ବ୍ୟାସ ମହାମୁନିଙ୍କୁ ପ୍ରାର୍ଥନା କରିଅଛନ୍ତି । ବ୍ୟାସ ଧ୍ୟାନ ବଳରେ ଜାଣିପାରିଛନ୍ତି ଯେ ସେମାନଙ୍କ ଭାଗ୍ୟରେ ସନ୍ତାନ ନାହିଁ । କାରଣ ସେମାନେ ସନ୍ତାନ ଉତ୍ପାଦନ ଶକ୍ତିରହିତ । ପୁତ୍ରବିନା ବଂଶରକ୍ଷା ଅସମ୍ଭବ । ଏଣୁ ବଂଶରକ୍ଷା କରିବା ନିମିତ୍ତ ପୁତ୍ର ସନ୍ତାନ ଲାଭର ଉପାୟ କରିବା ନିମନ୍ତେ ଧୃତରାଷ୍ଟ୍ର ବ୍ୟାସଙ୍କୁ ପୁନର୍ବାର ପ୍ରାର୍ଥନା କରିଅଛନ୍ତି । ଏଥି ନିମନ୍ତେ ଏକ ମହାଯଜ୍ଞ ଅନୁଷ୍ଠାନ କରିବା ପାଇଁ ବ୍ୟାସ ଉପଦେଶ ଦେଇଅଛନ୍ତି । ତାଙ୍କ ନିର୍ଦ୍ଦେଶ ମୁତାବକ ମହାଯଜ୍ଞର ଆୟୋଜନ ହୋଇଅଛି । ବଶିଷ୍ଠ, ମାର୍କଣ୍ଡେୟ, ଦୁର୍ବାସା ପ୍ରମୁଖ ମହର୍ଷିଗଣଙ୍କ ସମେତ ଲକ୍ଷେ ଚତୁର୍ବେଦୀ ବ୍ରାହ୍ମଣ ନିମନ୍ତ୍ରିତ ହୋଇ ଆସିଛନ୍ତି । ଯଜ୍ଞରେ ପାଞ୍ଚଦିନ ଧରି ଆହୁତି ଦେବା ପରେ ଅଗ୍ନି ଦେବତା ସନ୍ତୁଷ୍ଟ ହୋଇଅଛନ୍ତି । ବ୍ୟାସ ମହାମୁନି ଏକ ସୁବର୍ଣ୍ଣ ପାତ୍ରରେ ଘୃତ ଓ ତଣ୍ଡୁଳ ରଖି ଅଗ୍ନିରେ ବସାଇଛନ୍ତି । ଗାନ୍ଧାରୀ ସ୍ନାନାଦି କର୍ମସାରି ଶୁଦ୍ଧ ପୂତ ଭାବରେ ସେଠାରେ ପହଞ୍ଚିଛନ୍ତି । ବ୍ୟାସ ସୁବର୍ଣ୍ଣ ପାତ୍ରରୁ ଅନ୍ନ କାଢ଼ିଛନ୍ତି । ଦେଖାଯାଇଛି ଯେ ପାତ୍ରରେ ମାତ୍ର ଏକଶହ ଗୋଟି ତଣ୍ଡୁଳ ଅନ୍ନରେ ପରିଣତ ହୋଇଅଛି । ଗାନ୍ଧାରୀଙ୍କୁ ବର ମାଗିବା ନିମନ୍ତେ କୁହାଯାଇଛି । ଗାନ୍ଧାରୀ ଏକଶତ ଗୋଟି ପୁତ୍ର ପ୍ରାର୍ଥନା କରିଛନ୍ତି । ମହାମୁନି ତାଙ୍କୁ ସେହି ଶହେଗୋଟି ଚରୁଅନ୍ନ ଖାଇବାକୁ ଦେଇ ଯଜ୍ଞର ପରିସମାପ୍ତି ଘଟାଇଛନ୍ତି ଓ ଋଷିମାନେ ତାଙ୍କୁ କଲ୍ୟାଣ କରି ଫେରିଯାଇଛନ୍ତି । ସେହିଦିନଠାରୁ ରାଜା ଧୃତରାଷ୍ଟ୍ର ନାନା ଦାନ ଧର୍ମ ଆରମ୍ଭ କରି ଦେଇଛନ୍ତି ।

ଚରୁ ଅନ୍ନ ବଳରେ ଗାନ୍ଧାରୀ ଗର୍ଭ ଧାରଣ କରିଛନ୍ତି । ଏକଶତ ପୁତ୍ରର ଗର୍ଭ ଧାରଣ କରିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଛି । ଏକଦା ବୈଶାଖ ମାସର ଏକ ଗ୍ରୀଷ୍ମ ମଧ୍ୟାହ୍ନରେ ଗାନ୍ଧାରୀ ଗଙ୍ଗା ସ୍ନାନ କରିବା ନିମନ୍ତେ ରଥ ଆରୋହଣ କରି ଯାଇଛନ୍ତି । ଗର୍ଭର ବେଦନା ସହ୍ୟ ନ କରିପାରି ସେ ରଥରୁ ଓହ୍ଲାଇ ଗଙ୍ଗା କୂଳରେ ବସି ପଡ଼ିଛନ୍ତି । ବେଦନା ବୃଦ୍ଧି ପାଇବାରୁ ସେ ଯଜ୍ଞ ଚରୁ ଉଦ୍‌ଗାର କରିଦେଇଛନ୍ତି ଏବଂ ପରେ ପରେ ତାଙ୍କର ଚେତନା ଲୋପ ପାଇଛି । ଯଜ୍ଞ ଚରୁଅନ୍ନ ଗଙ୍ଗା ଜଳରେ ପଡ଼ି ସୁବର୍ଣ୍ଣ ଭଳି ଉଜ୍ଜ୍ୱଳ ଦିଶିଛି । ଏହି ସମୟରେ ବ୍ୟାସ ମହାମୁନି ଗଙ୍ଗା ସ୍ନାନ କରିବାକୁ ସେଠାରେ ଆସି ପହଞ୍ଚିଛନ୍ତି । ମୂର୍ଚ୍ଛିତ ଗାନ୍ଧାରୀଙ୍କୁ ସେ ମନ୍ତ୍ରଜଳ ଛିଟାଇ ସଚେତ କରାଇଛନ୍ତି । ପୁତ୍ରଲାଭରୁ ବଞ୍ଚିତ ହୋଇଥିବାରୁ ଗାନ୍ଧାରୀ ବ୍ୟାକୁଳିତ ହୋଇ ପଡ଼ିଛନ୍ତି । ଏହା ଦେଖି ବିକ୍ଷିପ୍ତ ଭାବରେ ଜଳରେ ପଡ଼ିଥିବା ସମସ୍ତ ଚରୁ ଅନ୍ନକୁ ଏକତ୍ରିତ କରି ବ୍ୟାସ ଜୀବନ୍ୟାସ ଦେଇଛନ୍ତି । ଫଳରେ

ମହାପର୍ବଂମୀ ଏକଶତ ପୁତ୍ରଙ୍କର ଉତ୍ପତ୍ତି ହୋଇଛି ଏବଂ ସେମାନଙ୍କୁ ରଥରେ ଶୁଆଇ ଗାନ୍ଧାରୀ ଫେରିଛନ୍ତି । ଗାନ୍ଧାରୀ ଶତପୁତ୍ର ଧରି ଫେରି ଆସିଥିବା କଥା ଧୃତରାଷ୍ଟ୍ର ଜାଣି ପାରି ଆନନ୍ଦରେ ଆତ୍ମହରା ହୋଇପଡ଼ିଛନ୍ତି । ଚକ୍ଷୁହୀନ ଯୋଗୁଁ ଦେଖି ପାରୁ ନ ଥିଲେ ହେଁ ପୁତ୍ରମାନଙ୍କୁ କୋଳରେ ଧରି ସେ ପିତୃତ୍ୱର ଚରମ ତୃପ୍ତି ଲାଭ କରିଛନ୍ତି ।

ଏ ପ୍ରକାର ବିଷୟ ସଂଯୋଜନା କେବଳ ଗଳ୍ପ-କଳ୍ପ-କଳ୍ପତରୁ ସାରଳାଙ୍କ ମୌଳିକତାର ପରିଚୟ ଦିଏ ନାହିଁ; ଏହାର ଅନ୍ତରାଳରେ ପ୍ରଚ୍ଛନ୍ନ ଥିବା କବିଙ୍କ ମାର୍ଜିତ ଦୃଷ୍ଟିଭଙ୍ଗୀ ଓ ଉନ୍ନତ ଚିନ୍ତାଧାରାର ପରିଚୟ ମଧ୍ୟ ମିଳେ । ସମକାଳୀନ ସମାଜରେ ରାମାୟଣଚର୍ଚ୍ଚା ବହୁଳ ଥିଲା । ରାମାୟଣରେ ଯଜ୍ଞ ଚରୁ ସେବନ କରି ଦଶରଥଙ୍କ ରାଣୀମାନେ ପୁତ୍ର ସନ୍ତାନ ଲାଭ କରିଥିଲେ । ଏଠାରେ ସାରଳା ଦାସ ମଧ୍ୟ ଅନୁରୂପ ଭାବେ ଗାନ୍ଧାରୀଙ୍କୁ ଯଜ୍ଞ ଚରୁ ଅନ୍ନ ଖୁଆଇଛନ୍ତି; ଫଳକେ ଗାନ୍ଧାରୀ ଶତ ପୁତ୍ରର ଜନନୀ ହୋଇଛନ୍ତି । ଗାନ୍ଧାରୀଙ୍କ ସନ୍ତାନ ଲାଭ ପ୍ରସଙ୍ଗଟି ଏଭଳି ଅବତାରଣା କରିବା ଫଳରେ ଏହା ଖୁବ୍ ବାସ୍ତବଧର୍ମୀ ହୋଇଅଛି ଏବଂ ଲୋକ ସମାଜର ପ୍ରତ୍ୟୟ ମଧ୍ୟ ଆସିଛି । କାରଣ ସେତେବେଳେ ରାମାୟଣ ପ୍ରଭାବରେ ଯଜ୍ଞ ଚରୁ ଅନ୍ନର ସନ୍ତାନ ସୃଷ୍ଟି ଶକ୍ତି ଉପରେ ସମସ୍ତେ ନିଃସନ୍ଦେହ ଥିଲେ ।

ପୁନଶ୍ଚ ଧୃତରାଷ୍ଟ୍ରଙ୍କ ଶତପୁତ୍ରଙ୍କ ନାମକରଣରେ ସାରଳା ଦାସ ଅପୂର୍ବ ମୌଳିକତା ପ୍ରଦର୍ଶନ କରିଛନ୍ତି । ପରବର୍ତ୍ତୀ କାଳରେ ଏମାନେ ସତ୍ୟସନ୍ଧ ପାଣ୍ଡବ-ମାନଙ୍କୁ ଅନ୍ୟାୟ ଭାବେ ଉତ୍ପୀଡ଼ିତ କରିଥିଲେ ଏବଂ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ମଧ୍ୟ କରିଥିଲେ । ଏଥିରୁ ସେମାନେ ଯେ ମନ୍ଦ ପ୍ରକୃତିର ଏବଂ ଦୁଷ୍ଟବୁଦ୍ଧି-ସମ୍ପନ୍ନ ଥିଲେ ଏହା ପ୍ରମାଣିତ । ସେମାନଙ୍କ ନାମ ଶ୍ରବଣ ମାତ୍ରେ ସେମାନେ ଯେ ଅତ୍ୟାଚାରୀ, ପରସ୍ୱାପହାରୀ ଏବଂ ଅନ୍ୟାୟ ଆଚରଣକାରୀ ଭାବେ ପରିଚିତ ହେବେ, ଏହି ଉଦ୍ଦେଶ୍ୟ ମନ ମଧ୍ୟରେ ସ୍ଥାନ ଦେଇ ସାରଳା ଦାସ ସେମାନଙ୍କ ନାମର ପ୍ରଥମ ଅକ୍ଷର 'ଦୁଃ' ରଖିଛନ୍ତି । ଯଥା—ଦୁର୍ଯ୍ୟୋଧନ, ଦୁଃଶାସନ, ଦୁର୍ଦ୍ଦମ, ଦୁଃଶୀଳ ଇତ୍ୟାଦି । ଏପରି ନାମକରଣ ମୂଳ ସଂସ୍କୃତ ମହାଭାରତରେ ଦେଖିବାକୁ ମିଳେ ନାହିଁ । ସାରଳା ଦାସଙ୍କ ଏପରି ପରିକଳ୍ପନା ନିଜସ୍ୱ ।

କୌରବ ଶହେ ଭାଇଙ୍କ ନାମ ଏହିଭଳି ସାରଳା ମହାଭାରତରେ ପ୍ରଦତ୍ତ ହୋଇଅଛି—ଦୁର୍ଯ୍ୟୋଧନ, ଦୁଃଶାସନ, ଦୁର୍ମ୍ମନ, ଦୁର୍ବାଳ, ଦୁର୍ଜ୍ଜନ, ଦୁର୍ବୀର, ଦୁରାନ୍ତକ, ଦୁର୍ବ୍ବନ୍ଦ, ଦୁରନ୍ତ, ଦୁଃସହ, ଦୁରାମ, ଦୁଃସମ, ଦୁଷ୍କମ, ଦୁର୍ମ୍ମାଳୀ, ଦୁଷ୍କୁଳ, ଦୁଃକଣ୍ଠ, ଦୁର୍ହ୍ଣଣ, ଦୁର୍ଦ୍ଦକ୍ଷ, ଦୁର୍ଗ୍ଗମ, ଦୁରାଷ୍ଟ, ଦୁର୍ବଳ, ଦୁଃପକ, ଦୁର୍ଭ୍ଭର, ଦୁର୍ଭ୍ଭମ, ଦୁର୍ନ୍ନାମ, ଦୁରାଣ, ଦୁର୍ଦ୍ଧ୍ୱଂସ,

ଦୁସନ, ଦୂଷଣ, ଦୁଷ୍ଟ, ଦୁରାନ୍ତନ, ଦୁର୍ଦ୍ଦଣ୍ଡ, ଦୁରାଜ, ଦୁର୍ଦ୍ଦାନ, ଦୁର୍ଭାନୁ, ଦୁରାଷ, ଦୁରାସନ, ଦୁଃଶାସ୍ତ, ଦୁସନ୍ତେକ, ଦୁସ୍ତର, ଦୁବହଣ, ଦୁର୍ମୀଳ, ଦୁରାନନ୍ଦ, ଦୁର୍ଦ୍ଧର, ଦୁର୍ମର୍ଷଣ, ଦୁରାପଦ, ଦୁରକ. ଦୁର୍ଦ୍ଦାମ, ଦୁଃକାଳ, ଦୁରାସ୍ତ ଦୁରାନନ, ଦୁର୍ଗତ, ଦୁଷ୍ଟାପ, ଦୁରାଳାସ୍ତ, ଦୁର୍ମତ, ଦୁରଙ୍ଗ, ଦୁର୍ଜୟ. ଦୁର୍ନିଧି, ଦୁର୍ଦ୍ଧାର, ଦୁରାକଣ୍ଠ, ଦୁର୍ଭାଷ, ଦୁର୍ଭାବ, ଦୁଶିବ, ଦୁର୍ମୋହ, ଦୁର୍ଭଗ, ଦୁର୍ଲୟ, ଦୁର୍ଭୟ, ଦୁରାମୟ, ଦୁଃକେତୁ, ଦୁରାସ୍ତନ; ଦୁସିଙ୍ଗି ଦୁତନୁ, ଦୁସିଂହ, ଦୁରାଶୟ, ଦୁର୍ବାହୁ, ଦୁର୍ନିରୀକ୍ଷ, ଦୁର୍ବହ, ଦୁର୍ମଦ, ଦୁରାତ୍ମା, ଦୁରାଗ୍ରର, ଦୁସ୍ତେଜ, ଦୁରାସଦ, ଦୁର୍ମୋକ, ଦୁର୍ମୁଖ, ଦୁର୍ଦ୍ଧାନ୍ତ, ଦୁଃଶଳ, ଦୁର୍ବାକ, ଦୁର୍ବିଗାହ, ଦୁର୍ବିନୀତ, ଦୁରାଧ, ଦୂରକ୍ଷକ, ଦୂରଭିସନ୍ଧି, ଦୁର୍ଦ୍ଧର୍ଷ. ଦୁରୂହ, ଦୁର୍ମେଧ, ଦୁର୍ଦ୍ଧର୍ଷ, ଦୁର୍ବିମୋଚନ, ଦୁର୍ଭେଦ୍ୟ ଏବଂ ଦୁଃସାଧ ।

ଭୀମଙ୍କ ଜନ୍ମ ସମ୍ପର୍କରେ ସାରଳା ଦାସ ଯେଉଁ ବିବରଣୀ ଦେଇଛନ୍ତି ତାହା ହାସ୍ୟରସ ସୃଷ୍ଟି କରେ । ପୁନଶ୍ଚ ଭୀମଙ୍କର ବାଲ୍ୟକାଳରେ ତାଙ୍କର ଅସାଧାରଣ ଭୋଜନ ଶକ୍ତି ପ୍ରସଙ୍ଗ ବର୍ଣ୍ଣନାରେ ମଧ୍ୟ ସାରଳା ଦାସ ଯେଉଁ ପ୍ରକାର ମୌଳିକତା ଏବଂ ହାସ୍ୟ-ଅବତାରଣା କରିଛନ୍ତି, ସେଥିପାଇଁ ସେ ପ୍ରଶଂସାର ପାତ୍ର । ଅଳ୍ପ ବୟସର ଭୀମସେନ ମାଆ ରାନ୍ଧିବାଢ଼ି ସାରିବା ପରେ ଗୋପନରେ ଯାଇ ସେସବୁ ଖାଇଦେବା ଏବଂ ଏକଥା ଜାଣିବାପରେ ପିତା ପାଣ୍ଡୁ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାଙ୍କର ଜୀବନ ନାଶ ନିମନ୍ତେ ଖଡ୍ଗ ଧରି ତାଙ୍କୁ ଗୋଡ଼ାଇବା ଭଳି ଅନେକ ଉଦ୍ଭଟ ପରିକଳ୍ପନା ମଧ୍ୟ ସାରଳାଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ ।

## ମୂଳ ସାରଳା ମହାଭାରତ ଏବଂ ମୁଦ୍ରିତ ସାରଳା ମହାଭାରତ

ସାରଳା ମହାଭାରତ ସଂସ୍କୃତ ମହାଭାରତର ଅବିକଳ ଅନୁବାଦ ହୋଇ ନ ଥିବାରୁ ଏବଂ ତତ୍କାଳୀନ ଗ୍ରାମ୍ୟ ଜନତାଙ୍କ ପାଇଁ ଉପଯୋଗୀ ହେଲଭଳି ଗ୍ରନ୍ଥ ହୋଇଥିବାରୁ ଏହାର ଲୋକପ୍ରିୟତା ବଢ଼ିଗଲା । ପୋଥି ଆକାରରେ ବା ତାଳ ପତ୍ରରେ ଲିଖିତ ମହାଭାରତ ଜନସାଧାରଣଙ୍କ ସମ୍ବର୍ଦ୍ଧିଷ୍ଣୁ ଚାହିଦା ମେଣ୍ଟାଇବା ନିମନ୍ତେ ଯଥେଷ୍ଟ ନ ହେବାରୁ ଏହାର ମୁଦ୍ରଣର ଆବଶ୍ୟକତା ପଡ଼ିଲା । ମୁଦ୍ରା ଯନ୍ତ୍ରର ପ୍ରଚଳନ ପରେ ହିଁ କେବଳ ଏହି ଗ୍ରନ୍ଥକୁ ପର୍ଯ୍ୟାପ୍ତ ପରିମାଣରେ ଲୋକଙ୍କୁ ଯୋଗାଇ ଦେବା ସମ୍ଭବ ହେଲା । ଏହି ମୁଦ୍ରଣ କାର୍ଯ୍ୟ ନିମନ୍ତେ କେତେକ ପୁରୁଣ ପ୍ରକାଶକ ସଂସ୍ଥା ଗଢ଼ି ଉଠିଲା । ଏହି ସଂସ୍ଥାଗୁଡ଼ିକ ତାଙ୍କି ବୃତ୍ତର ପ୍ରତି ଧାଡ଼ିର ଅକ୍ଷର ସଂଖ୍ୟା ଚଉଦ

ମନେକର ମୂଳ ସାରଳା ମହାଭାରତକୁ ଚଉଦ ଅକ୍ଷରୀ ବୃତ୍ତରେ ପରିଣତ କରିଦେଲେ । ଏଣୁ ମୁଦ୍ରିତ ଗ୍ରନ୍ଥ ଅନେକ ସ୍ଥଳରେ ଭିନ୍ନାକୃତି ଧାରଣକଲା ।

ଏ ସମ୍ବନ୍ଧରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ମହୋଦୟଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ କହନ୍ତି "ଅର୍ଥ ଗଢ଼ୁ ଗଢ଼ୁ କେତେକ ସ୍ଥଳେ ମାଙ୍କଡ଼ ହୋଇଯାଇଅଛି । ପରିଶୋଧନ ଦ୍ୱାରା ବହୁସ୍ଥଳ କବି ଦତ୍ତ ସ୍ୱାଭାବିକ ସୌନ୍ଦର୍ଯ୍ୟରୁ ବଞ୍ଚିତ ହୋଇ ବହୁ ଦୂରରେ ନିକ୍ଷିପ୍ତ ହୋଇଅଛି । ପୁଣି ଅନେକ ସ୍ଥଳରେ ଅସାବଧାନତା ଦୋଷରେ ଦୂଷିତ ହୋଇଅଛି ।" (୧) ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଏ ସମ୍ବନ୍ଧୀୟ ମନ୍ତବ୍ୟ ହେଲା —"ବଜାରରେ ଯେ ଗ୍ରନ୍ଥ ମିଳେ, ସେ ଗ୍ରନ୍ଥରେ ସାରଳାଙ୍କ ଅସ୍ତିତ୍ୱ ୮।୧୦ ପଣ ଅଛି । ସାରଳା ଦାସ ନିଜ ମହାଭାରତକୁ ଦାଣ୍ଡି ବୃତ୍ତରେ ଲେଖିଥିଲେ । ସେହି ଦାଣ୍ଡି ବୃତ୍ତକୁ ଆମ ଦେଶର ପ୍ରାରମ୍ଭିକ ଲେଖକ କାଟିକୁଟି, ଗ୍ରଣ୍ଠିକୁଣ୍ଠି, ମାଠିମୁଠି ଏକ ଅଦ୍ଭୁତ କୌଶଳ ପ୍ରଦର୍ଶନ କରିଛନ୍ତି ।" (୨) ଡଃ ବଂଶୀଧର ମହାନ୍ତିଙ୍କ ମନ୍ତବ୍ୟ ଏହିପରି —"ପୁରାଣ ପ୍ରକାଶିକା ବା କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଅଜ୍ଞାତା ତଥା କାଗଜ ଓ ଛାପା ଦୃଷ୍ଟିରୁ କେତେଗୁଡ଼ିଏ ନୂଆ ସାରଳା ଦାସ ନିଯୁକ୍ତ ହୋଇ ଯେଉଁ ମହାଭାରତ ସୃଷ୍ଟି କଲେ ତହିଁରେ ସାରଳାଙ୍କ ମହତ୍ତ୍ୱ ପୂର୍ଣ୍ଣ ଭାବରେ ନଷ୍ଟ ପାଇଗଲା ।" (୩)

କେତେକ ଅନଭିଜ୍ଞ ବ୍ୟକ୍ତିଙ୍କ ଦ୍ୱାରା ସାରଳା ମହାଭାରତର ଏହି ପ୍ରକାର ସଂଶୋଧନ ଫଳରେ ଉପୁଜି ଥିବା ବିଭିନ୍ନ ପ୍ରକାର ଦୋଷଗୁଡ଼ିକ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ସ୍ୱରଚିତ 'ଶ୍ରୀଭାରତ ଦର୍ପଣ' ସମାଲୋଚନା ପୁସ୍ତକରେ ଦର୍ଶାଇ ଦେଇଅଛନ୍ତି । ସେ ମଧ୍ୟରୁ କେତେକ ଏଠାରେ ପ୍ରଦାନ କରାଯାଇପାରେ ।

୧ । ଅସାବଧାନତା ହେତୁ ଏବଂ ଅଜ୍ଞତା ବଶତଃ ମୁଦ୍ରିତ ପୁସ୍ତକରେ ଦେଖାଦେଇଥିବା ପ୍ରମାଦ--

(କ) ଏଣେ ଭିଆଇଲେ ସେହି ଗ୍ରାମକେ ସୀମାଏ । (ଆଦିପର୍ବ)

ଛାପା ପୁସ୍ତକରେ ଏହିପରି ବିକୃତ ରୂପ ନେଇଛି—

ଏଣେ ଭିଆଇଲେ ସେହି ଗ୍ରାମ କେଶୀମାସ୍ୱେ ।

(ଖ) ମା ଗୋ ଗତ ଆଗତ ସମସ୍ତ ବୁଝି କହି,

ରାଜ୍ୟ ଭ୍ରଷ୍ଟ ହେଲି କଥା ଲଗିଲା ସନ୍ଦେହ । (ଆଦିପର୍ବ)

---

(୧) ଶ୍ରୀଭାରତ ଦର୍ପଣ—ପୃ. ୪

(୨) ସାରଳା ସ୍ମରଣିକା—ପୃ : ୩

(୩) ଏଜନ—ପୃ · ୮୧-୮୨

ଛାପା ପୁସ୍ତକରେ ଏହା ଏହିପରି ଅର୍ଥଶୂନ୍ୟ ହୋଇଛି—

ମା ଗୋ ଲଜ୍ୟାମାନ ଭଗ୍ନ ଛାଡ଼ିଣ ସନେହ
ସତ୍ୟ ଭଗ୍ନ ହେବାଲାଗି ଲାଗଇ ସନ୍ଦେହ ।

୨। ଉଭୟ ଚରଣ (ପାଦ, ପଙ୍କ୍ତି) କୁ ନିର୍ଦ୍ଦିଷ୍ଟାରର ବର୍ଣ୍ଣିଷ୍ଟ କରିବାକୁ ଯିବା ଫଳରେ ମୁଦ୍ରିତ ପୁସ୍ତକରେ ଦେଖା ଦେଇଥିବା ପ୍ରମାଦ—

ଆମ୍ଭେ ମହାବୃଷ୍ଟି କଲୁ ଯେତେ ଯେତେବେଳେ
ତୋହାଯାକ ଶରପୀଡ଼ା କଲ ଗଗନ ମଣ୍ଡଳେ । (ମଧ୍ୟପର୍ବ)

ଛାପା ପୁସ୍ତକରେ ଏ ପଦଟି ନିମ୍ନ ପ୍ରକାରେ ରହିଅଛି—

ମହାଘୋର ବୃଷ୍ଟି କଲୁଁ ଯେତେବେଳେ
ତୋହାଯାକ ଶରପୀଡ଼ା କଲ ଖମଣ୍ଡଳେ ।

୩—ପରିଶୋଧନ କରାଯିବା ଫଳରେ ଦେଖାଦେଇଥିବା ଅନ୍ୟ ପ୍ରମାଦଟି ହେଲା କବିଙ୍କ ବାକ୍ୟର ମୌଳିକତା ଓ ମନୋହାରିତା ଛପା ପୁସ୍ତକରେ ଅନେକାଂଶ ନଷ୍ଟ ହୋଇଯାଇଛି । ଏ ସମ୍ବନ୍ଧରେ ନନ୍ଦ ମହାଶୟ ଲେଖିଛନ୍ତି—"କବିଙ୍କର ସୁମଧୁର ଲଳିତ ପଦ ବିଶିଷ୍ଟ ଏହି ମହା ଉପାଖ୍ୟାନ ବା ମହାକାବ୍ୟ ଖଣ୍ଡିକ ପ୍ରଥମରୁ ମୂର୍ଖଙ୍କ ହାତରେ ପଡ଼ିବାରୁ ମହତ୍ତ୍ୱ ଓ ଗୌରବ ମଧ୍ୟ ହରିଇଛି ଏବଂ ଛାପା ପୁସ୍ତକରେ ଏପରି କେତେକ ସ୍ଥଳେ ଦେଖାଯାଏ ଯେ, ସେଗୁଡ଼ିକ ଛାପାକାରଙ୍କ ପ୍ରଦତ୍ତ ସଂଗାଦ ଶବ୍ଦରେ ବିକୃତ ହୋଇଯାଇଅଛି ।" (୪) ଏ ସମ୍ପର୍କୀୟ କେତୋଟି ଉଦାହରଣ ମଧ୍ୟ ସେ ପ୍ରଦାନ କରିଛନ୍ତି ଏବଂ ବିଶେଷତଃ ଆଦିପର୍ବରେ କର୍ଣ୍ଣ ନୃପତିଙ୍କ ଜନ୍ମସ୍ଥଳ ଦେଖିବା ନିମନ୍ତେ ସୂଚନା ଦେଇଛନ୍ତି ।

ଛାପା ପୁସ୍ତକମାନଙ୍କରେ କରାଯାଇଥିବା ପରିଶୋଧନର ଯେ କିଛି ଉପକାରିତା ନାହିଁ, ଏକଥା କହିହେବ ନାହିଁ । ଏହାର ଉପାଦେୟତା ସମ୍ବନ୍ଧରେ ନନ୍ଦ ମହୋଦୟଙ୍କ ଉକ୍ତି ଉଦ୍ଧାର କରାଯାଇପାରେ—"ଛାପା ପୁସ୍ତକମାନଙ୍କରେ ମୁଦ୍ରଣକାଳୀନ ପରିଶୋଧନ ପ୍ରଣାଳୀ ଦ୍ୱାରା କବିଙ୍କର ପଦସଂଘଟନାକ୍ରମ ପ୍ରଭୃତି ବହୁ ସ୍ଥଳରେ ଲୁପ୍ତ ଓ ଅଯଥାଯଥ ହୋଇଛି ସତ୍ୟ, ତଥାପି ଅନେକ ସ୍ଥଳରେ ତାଳପତ୍ର ପୁସ୍ତକ ପାଠ ସମୟରେ ଛାପା ପୁସ୍ତକ ଉପକାରଜନକ ମଧ୍ୟ ହେଉଅଛି, କାରଣ ତାଳପତ୍ର ପୁସ୍ତକର କେତେକ ସ୍ଥଳାଙ୍କ ଲେଖକଙ୍କ ଲେଖାରେ ଏପରି ବିକୃତ ଓ ଅର୍ଥଶୂନ୍ୟ ହୋଇପଡ଼ିଛି ଯେ, ସେ ସ୍ଥଳମାନଙ୍କରେ ଛାପା ପୁସ୍ତକ ବିନା ଅର୍ଥାବଗତ ସମ୍ଭବ ପାରେ ନାହିଁ । ଅନଭିଜ୍ଞ ଆଦର୍ଶ ଲେଖକମାନଙ୍କର ଅଜ୍ଞାତକାଳମାରେ ଦୂଷିତ

(୪) ଶ୍ରୀ ଭାରତ ଦର୍ପଣ—ପୃ : ୭-୮

କେତେକ ଅର୍ଥଶୂନ୍ୟ ସ୍ଥଳରେ ଗ୍ରୁପାରେ ଗ୍ରୁପାକାରଙ୍କଦ୍ୱାରା ପଦବନ୍ୟାସ ଭିନ୍ନ ପ୍ରକାର ହେଲେ ପଛକେ ବହୁ ପୁସ୍ତକାବଲୋକନ ଓ ବିଚାର ବଶରୁ ଅର୍ଥତଃ ପରିଶୋଧିତଃ ହୋଇଅଛି ।"

ସୁଖର କଥା; ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଆନୁକୂଲ୍ୟରେ ଓ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦନାରେ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ଏ ମଧ୍ୟରେ ପ୍ରକାଶ ପାଇଛି । ଅଠର ଗୋଟି ପର୍ବ ପନ୍ଦର ଖଣ୍ଡ ପୁସ୍ତକରେ ପ୍ରକାଶିତ ହୋଇଛି । ଏହା ଫଳରେ ବହୁ ଦିନର ଏକ ଅଭାବ ବର୍ତ୍ତମାନ ଦୂର ହୋଇଅଛି । ଏହି ପରିପ୍ରେକ୍ଷୀରେ ପୁରୁଣା ପ୍ରକାଶିକା କୋମ୍ପାନୀମାନଙ୍କ ଦ୍ୱାରା ପ୍ରକାଶିତ ଅସାରଳା ମହାଭାରତକୁ ସାରଳା ମହାଭାରତଭାବେ ଗ୍ରହଣ କରିବାର ଅବକାଶ ଆଉ ନାହିଁ ।

## ଦାଣ୍ଡି ବୃତ୍ତ

ସାରଳା ମହାଭାରତ ରଚନା କ୍ଷେତ୍ରରେ କୌଣସି ପ୍ରକାର ଶୃଙ୍ଖଳା ପରିଲକ୍ଷିତ ହୁଏ ନାହିଁ । ଏହାର ପ୍ରତି ପାଦ, ଚରଣ ବା ଦଳର ଅକ୍ଷରସଂଖ୍ୟା ସମାନ ନୁହେଁ । ଏପରିକି ସ୍ଥଳ ବିଶେଷରେ ଏହାର ଦୀର୍ଘତମ ପାଦ ୩୨ ଅକ୍ଷର ବିଶିଷ୍ଟ ଏବଂ ଏହି କ୍ଷୁଦ୍ରତମ ପାଦ ୯ ଅକ୍ଷର ବିଶିଷ୍ଟ । ଏହାର ପ୍ରତ୍ୟେକ ପଦ ଦୁଇ ପାଦ ବିଶିଷ୍ଟ ଏବଂ ଏହି ଦୁଇ ପାଦର ଶେଷାକ୍ଷରର ମିଳନ ଦେଖାଯାଏ । ଏଥିରେ ସମାନ ଅକ୍ଷର ବିଶିଷ୍ଟ ପାଦ ବେଶୀ ସଂଖ୍ୟାରେ ଦେଖାଯାଏ, ଯାହାର ଅକ୍ଷର ସଂଖ୍ୟା ୧୪ । ଏହି ବୃତ୍ତକୁ 'ଦାଣ୍ଡି ବୃତ୍ତ' ବୋଲି କୁହାଯାଏ । ନିମ୍ନରେ ଏହି 'ଦାଣ୍ଡି ବୃତ୍ତ'ରେ ରଚିତ ଏକ ପଦ ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା, ଯାହାର ପ୍ରଥମ ପାଦର ଅକ୍ଷର ସଂଖ୍ୟା ୧୩ ଏବଂ ଦ୍ୱିତୀୟ ପାଦର ଅକ୍ଷର ସଂଖ୍ୟା ୩୨ ।

ଖଦାଡ଼ ସେନର ଯେ ନୋହିଲ ସନ୍ତୋଷ, (୧୩)
ସମୁଦ୍ର କୂଳେ ତପ କରଇ ରାଜ୍ୟେ ନିତ୍ୟାସି ଥିଲା
ନଗ ସମୁଦ୍ର ଦଶ ଯୋଜନ ପରିଯନ୍ତ । (୩୨ ମଧ୍ୟପର୍ବ) ✻

ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଦାଣ୍ଡି ବୃତ୍ତ । ପୁନଶ୍ଚ ଏହି ବୃତ୍ତର ଆଦି ପ୍ରବର୍ତ୍ତକ ହିସାବରେ ସାରଳା ଦାସଙ୍କୁ ସମ୍ମାନ ଦିଆଯାଏ । ସାରଳା ମହାଭାରତକୁ ସାଧାରଣତଃ ପୁରାଣପଣ୍ଡାମାନେ ଗାନକରି ନିରକ୍ଷର ଜନସାଧାରଣଙ୍କୁ ବୁଝାଉଥିଲେ । ମାତ୍ର ପ୍ରଶ୍ନ ଉଠେ, ଏପରି ଏକ ଅକ୍ଷର ନିୟମ ଅନୁସୃତ ହୋଇ ନ ଥିବା ପଦ୍ୟାବଳୀକୁ କିପରି ଲୟରେ ବୋଲିଯାଇ ଶ୍ରୋତାକୁ ଆନନ୍ଦ

✻ ସାରଳା ସ୍ମରଣିକା (୧୯୬୪)—ପୃ: ୮୧

ଦିଆଯାଇପାରେ । ଏ ସଂପର୍କରେ କୁହାଯାଇପାରେ ଯେ ଅଳ୍ପାକ୍ଷର ବିଶିଷ୍ଟ ପଦଗୁଡ଼ିକର ଆବୃତ୍ତି କାଳରେ ଗାୟକଙ୍କୁ କୌଣସି ଅକ୍ଷରରେ ପ୍ରୟୋଜନାନୁସାରେ ସ୍ୱରକୁ ଦୀର୍ଘ ଉଚ୍ଚାରଣ କରି ବିଳମ୍ବିତ ଲୟର ଆଶ୍ରୟ ନେବାକୁ ପଡ଼େ ଓ ବହ୍ୱକ୍ଷର ବିଶିଷ୍ଟ ପାଦଗୁଡ଼ିକର ଆବୃତ୍ତି ସମୟରେ ଅତି ଦ୍ରୁତ ଲୟ ଅବଲମ୍ବନ କରିବାକୁ ପଡ଼େ । ଅନ୍ୟ ଭାଷାରେ, ଧାଡ଼ିଗୁଡ଼ିକର ଅକ୍ଷର ସଂଖ୍ୟା ସମାନ ନ ଥିଲେ ମଧ୍ୟ ଗାନ କରିବା ସମୟରେ ସ୍ୱରର ଆରୋହ ଓ ଅବରୋହ ଦ୍ୱାରା ପ୍ରତିଧାଡ଼ିକୁ ଏପରି ପଢ଼ାଯାଏ ଯେ ପ୍ରତିପାଦ ସମାନ ସଂଖ୍ୟକ ଅକ୍ଷର ବିଶିଷ୍ଟ ଭଳି ଜଣାଯାଏ ।

ପୁନଶ୍ଚ ପ୍ରଶ୍ନ ଉଠିପାରେ, ଏ ପ୍ରକାର ଛନ୍ଦ ବା ରଚନା ରୀତି ସାରଳା ଦାସ କେଉଁଠାରୁ ପାଇଲେ ? ଉତ୍ତରରେ କୁହାଯାଇପାରେ ଯେ ସାରଳା ଦାସଙ୍କ ସମ୍ମୁଖରେ ସେପରି କୌଣସି ବିଧିବଦ୍ଧ ଆଦର୍ଶ ନ ଥିଲା, ଯାହାର ଅନୁସରଣରେ ସେ ଏପରି ବର୍ଣ୍ଣ-ବ୍ୟତିକ୍ରମ-ଛନ୍ଦର ସୃଷ୍ଟି କଲେ । ତତ୍କାଳୀନ ସମାଜରେ ପ୍ରଚଳିତ ଥିବା ଓଡ଼ିଆ ଢଗ ଢମାଳି ତାଙ୍କର ଆଦର୍ଶ ଥିଲା ବୋଲି ଅନୁମାନ କରିବା ଆଦୌ ଅଯୌକ୍ତିକ ହେବ ନାହିଁ । କାରଣ କେବଳ ତତ୍କାଳୀନ ସମାଜ ନୁହେଁ, ସାଂପ୍ରତିକ ସମାଜରେ ମଧ୍ୟ କେତେକ ଢଗ ଢମାଳି ପ୍ରଚଳିତ । ଯାହାର ଅନ୍ତ୍ୟମେଳ ଦେଖାଗଲେ ସୁଦ୍ଧା ଅକ୍ଷର-ନିୟମ ଦେଖାଯାଏ ନାହିଁ । ଯଥା -

(କ) ଘରର ଉପରେ ଘର,
ସୁନା କୁମ୍ଭପରି ଗୃହ ଦିଅର ଲୋ ଚନ୍ଦର ଉଦିଆ ବର ।

(ଖ) ଜଗନ୍ନାଥଙ୍କର ବଡ଼େଇ,
କାହାକୁ ଦିଅନ୍ତି ପାଟ ପୀତାମ୍ବରୀ କାହାକୁ ଦିଅନ୍ତି ସଢ଼େଇ ।

(ଗ) ଲାଜ ନାହି ନିର୍ଲଜକୁ ,
ଶୁଖିଲା ଭୂଇଁରେ କଠଉ ମାଡ଼ିଛୁ ଠକ ଠକ ଶୁଭିବାକୁ । *

ଏ ସମ୍ବନ୍ଧରେ ଡଃ ବଂଶୀଧର ମହାନ୍ତି କହନ୍ତି ଯେ ପ୍ରାକୃତ ପିଙ୍ଗଳ ଛନ୍ଦ ଗ୍ରନ୍ଥରେ ମଧ୍ୟ 'ଦଣ୍ଡି' ନାମକ ବୃତ୍ତ ଥିବାର ଲକ୍ଷ୍ୟ କରାଯାଏ । ଏହାଛଡ଼ା ଅପଭ୍ରଂଶ ଭାଷାରେ 'ଦାଣ୍ଡି' ନାମକ ବୃତ୍ତ ମଧ୍ୟ ଏକ ସମୟରେ ବିଶେଷ ଭାବରେ ପ୍ରଚଳିତ ଥିଲା । କ୍ରମେ ଅପଭ୍ରଂଶରେ ବ୍ୟବହୃତ ଏହି ଦାଣ୍ଡି ବୃତ୍ତ ପରବର୍ତ୍ତୀ ସାହିତ୍ୟ ଯୁଗରେ ଭିନ୍ନ ଭିନ୍ନ ରୂପରେ ବ୍ୟବହୃତ ହେଲା । ସେ ପୁଣି ମତ ଦିଅନ୍ତି ଯେ ସାରଳାଙ୍କଠାରୁ ଏହି ଦାଣ୍ଡି ବୃତ୍ତ ବିଶେଷ ଭାବରେ ପୁଷ୍ଟି ଲାଭ କରି ଦେଶର ପରବର୍ତ୍ତୀ କବିଙ୍କର ଲେଖାମାନରେ ବିଶେଷ ଲୋକପ୍ରିୟ ହେଲା । ଚୈତନ୍ୟ ଦାସଙ୍କର 'ବିଷ୍ଣୁଗର୍ଭ ପୁରାଣ', ବଳରାମ

---

* ଉତ୍କଳ ଗାଉଁଲି ଗୀତ   ଶ୍ରୀ ଚକ୍ରଧର ମହାପାତ୍ର

ଦାସଙ୍କର 'ଦାଣ୍ଡି ରାମାୟଣ', ଅଚ୍ୟୁତାନନ୍ଦଙ୍କର 'ହରିବଂଶ' ଓ ଅନ୍ୟାନ୍ୟ ଅନେକ ଅପ୍ରକାଶିତ ଗ୍ରନ୍ଥ ଦାଣ୍ଡି ବୃତ୍ତରେ ରଚିତ ହୋଇଅଛି ।

ଡଃ ମହାନ୍ତିଙ୍କ ମତାମତ ସତ୍ୟର ନିକଟତମ ପରି ମନେହୁଏ । ନିଶ୍ଚିତ ଭାବେ ଏହି ଦାଣ୍ଡି ବୃତ୍ତ ସମକାଳୀନ ପ୍ରାକୃତ ସାହିତ୍ୟରେ ଅନୁସୃତ ହେଉଥିଲା ଏବଂ ପରବର୍ତ୍ତୀ କାଳରେ ଏହା ମାର୍ଜିତ ରୂପ ଗ୍ରହଣ କଲା । କାରଣ ପ୍ରାଚୀନ ବଙ୍ଗ ସାହିତ୍ୟରେ ରାମାୟଣ ରଚନା କରିଥିବା କୃତ୍ତିବାସ, ଓଡ଼ିଆ ସାହିତ୍ୟର କୃଷକ କବି ସାରଳା ଦାସଙ୍କର ପ୍ରାୟ ସମସାମୟିକ ଥିଲେ । ସେ ମଧ୍ୟ ସାରଳାଙ୍କ ପରି ସ୍ୱଚ୍ଛନ୍ଦ ରୀତିରେ ରାମାୟଣ ରଚନା କରିଥିଲେ । ତାଙ୍କ ଗ୍ରନ୍ଥ ଏହି ପ୍ରକାର ବର୍ଣ୍ଣ ନିୟମ ନ ଥିବା ଏବଂ ପ୍ରାନ୍ତ ମେଳ ଥିବା ରୀତିରେ ରଚିତ । ଓଡ଼ିଆ ଭାଷାର ଆଦି ରଚନା ଚର୍ଯ୍ୟା-ଗୀତିକାରେ ମଧ୍ୟ ପ୍ରାନ୍ତାନୁପ୍ରାସ ସମ ଥିବା ସ୍ଥଳେ ଅକ୍ଷର ସଂଖ୍ୟା ବିଷମ ଥିବାର ଦେଖାଯାଏ ।

ଡଃ ମାୟାଧର ମାନସିଂହ ମତ ଦିଅନ୍ତି -- "କୃଷକ କବିଙ୍କ ସମୟକୁ, ଆଜକୁ ଛଅ ଶହ ବର୍ଷତଳେ ଅପଭ୍ରଂଶ—ରଚିତ ଚର୍ଯ୍ୟାପଦାବଳୀ ଉତ୍କଳୀୟ ସମାଜରେ ସୁପରିଚିତ ଓ ସୁପ୍ରଚଳିତ ଥିଲା । ରତ୍ନଗିରି ମହାବିହାର କବିଙ୍କ ଅଞ୍ଚଳରୁ ବେଶୀ ଦୂର ନୁହେଁ କହିଲେ ଚଳେ । ଖୁବ୍ ସମ୍ଭବତଃ କୃଷକ କବି ରତ୍ନଗିରି ମହାବିହାରର ଭ୍ରାମ୍ୟମାଣ ମହାଯାନୀ ବୌଦ୍ଧ ଭିକ୍ଷୁମାନେ ଚର୍ଯ୍ୟାପଦ ଗାଉଥିବାର ଶୁଣିଥିବେ ଓ ଶୁଣିଥିବା ପଦ୍ୟରୀତିର ଅନୁକରଣରେ ହିଁ ସେ ନିଜ ଗ୍ରନ୍ଥ ରଚନା କରିବାର ଚେଷ୍ଟା କରିଥିବେ, ଅକ୍ଷର ବୈଷମ୍ୟ ପ୍ରତି ଧ୍ୟାନ ନ ଦେଇ ।" ❋

ଏ ସମ୍ପର୍କରେ ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଏକ ଅଭିନବ ମତ ପୋଷଣ କରନ୍ତି, ଯାହା ଅଧିକ ସଙ୍ଗତ ମନେହୁଏ । ତାଙ୍କ ମତାମତ ନିମ୍ନରେ ଉଦ୍ଧାର କରାଗଲା ।

"ଅକ୍ଷର ଅସମାନତା ମଧ୍ୟରେ ସ୍ୱର ଓ ବିରାମ ସ୍ଥାନରେ ପ୍ରାଧାନ୍ୟ ଦେଇ ଦାଣ୍ଡି ବୃତ୍ତର ଅନର୍ଗଳ ସ୍ୱର-ଲହରୀ-ସୃଷ୍ଟି ଶ୍ରୋତାକୁ ମୁଗ୍ଧ କରେ । ସେଥିଲାଗି କେହି କେହି ମନେକରନ୍ତି ଦଣ୍ଡେ ମାତ୍ର ବିଳମ୍ବ ନ କରି ଅନର୍ଗଳ ଯାହା ଏକା 'ଦାଣ୍ଡି'ରେ ଅବୃତ୍ତି କରାଯାଏ, ତାହାହିଁ ସାରଳାଙ୍କର ଦାଣ୍ଡି ବୃତ୍ତ । ଆଉ କେହି କେହି କହନ୍ତି - ସଂସ୍କୃତ 'ଦଣ୍ଡକ' ବୃତ୍ତରୁ ବା ପ୍ରାକୃତ 'ଦାଣ୍ଡି' ବୃତ୍ତରୁ ସାରଳା 'ଦାଣ୍ଡି ବୃତ୍ତ' ଆହରଣ କରିଅଛନ୍ତି ; ମାତ୍ର ଦାଣ୍ଡେ ଦାଣ୍ଡେ ଏ ଦେଶର ଗ୍ରାମୀଣ ଜନତା ଯେଉଁ ଭାବରେ କଥା କହୁଥିଲେ ବା ବୋଲୁଥିଲେ, ସେଥିରୁ ହିଁ ସାରଳାଦାସ

❋ ଓଡ଼ିଆ ସାହିତ୍ୟର ଇତିହାସ ( ଜୁଲାଇ, ୧୯୭୭ ) — ପୃ: ୮୯

ଡାଣ୍ଡିବୃତ୍ତ ଆହରଣ କରିଅଛନ୍ତି ବୋଲି ମନେ କରିବା ଯଥାର୍ଥ ବୋଧହୁଏ । ତେଣୁ 'ଦାଣ୍ଡି' ଏକ ଛନ୍ଦ ନୁହେଁ— ସାରଳାଙ୍କର ଏହା ଏକ 'ଗୀତ' ବା 'ଭଙ୍ଗୀ' ।" *

ଉପସଂହାରରେ କୁହାଯାଇପାରେ ଯେ ସାରଳା ମହାଭାରତରେ ପରିଦୃଷ୍ଟ 'ଦାଣ୍ଡିବୃତ୍ତ' ତତ୍କାଳୀନ ସମାଜରେ ପ୍ରଚଳିତ ଛଗଡ଼ମାଳି, ବୌଦ୍ଧ ଚର୍ଯ୍ୟାଗୀତ-ଗୁଡ଼ିକର ରଚନା ଓ ଗାୟନ ରୀତି ଏବଂ ସାରଳାଦାସଙ୍କ ମୌଳିକତାର ଏକ ଅପୂର୍ବ ସମନ୍ୱୟ ।

## ବିଭିନ୍ନ ପଦର ବ୍ୟୁତ୍ପତ୍ତି କ୍ରମ

ସଂସ୍କୃତ ପୁରାଣ ପ୍ରଣେତାଗଣ ନିଜ ନିଜ ପୁରାଣମାନଙ୍କର ଚରିତ ପ୍ରବାହ ମଧ୍ୟରେ ପ୍ରସଙ୍ଗକ୍ରମେ କେତେକ ଆଖ୍ୟାନ ପୁରୁଷ, ପ୍ରସିଦ୍ଧ ନଦୀ, ନଗର, କାନନ ପ୍ରଭୃତିର ନାମ ବ୍ୟୁତ୍ପତ୍ତି ଦେଇଥାନ୍ତି । ତଦ୍ଦ୍ୱାରା ସେହି ନାମକରଣର ଐତିହାସିକ ବିବରଣ ସ୍ପଷ୍ଟତଃ ପ୍ରତିପନ୍ନ ହୋଇଥାଏ । ସେହିପରି ସାରଳାଦାସ ମଧ୍ୟ ନିଜ ମହାଭାରତର ଅନେକ ସ୍ଥଳରେ ପ୍ରସଙ୍ଗକ୍ରମେ ଅନେକଗୁଡ଼ିଏ ପଦର ବ୍ୟୁତ୍ପତ୍ତିକ୍ରମ ଦେଇଅଛନ୍ତି । ତାଙ୍କ ପ୍ରଦତ୍ତ ବ୍ୟୁତ୍ପତ୍ତିଗୁଡ଼ିକ ଅନୁଧ୍ୟାନ କଲେ ଦେଖାଯାଏ ଯେ ସେଥିମଧ୍ୟରୁ କେତେକ ସଂସ୍କୃତ ମହାଭାରତରେ ପ୍ରଦତ୍ତ ବ୍ୟୁତ୍ପତ୍ତିର ଅନୁରୂପ, କେତେକ ମୂଳ ଗ୍ରନ୍ଥରେ ଥିବା ବ୍ୟୁତ୍ପତ୍ତିଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର, କେତେକ ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ଓ ସ୍ୱକଳ୍ପନାଜାତ ଏବଂ କେତେକ ବିଭିନ୍ନ ପୁରାଣ ଓ ଗ୍ରନ୍ଥରୁ ଆନୀତ ହୋଇ ପ୍ରସଙ୍ଗାନୁଯାୟୀ ଭିନ୍ନ ଭାବରେ ପରିବେଷିତ । ଏହିପରି ଅଳ୍ପ କେତୋଟି ପଦର ବ୍ୟୁତ୍ପତ୍ତିକ୍ରମ ଆଲୋଚନା କରାଯାଇପାରେ ।

### ମହାଭାରତ :

ଆଦିପର୍ବର ପ୍ରାରମ୍ଭରେ ସାରଳା ଦାସ ଏହି ପଦର ବ୍ୟୁତ୍ପତ୍ତି ଲେଖିଛନ୍ତି କି ଦେବତାମାନେ ମହାଭାରତର ସାରବସ୍ତୁ ନିରୂପଣ କରିବା ନିମନ୍ତେ ତୁଳାଦଣ୍ଡର ଏକ ପାର୍ଶ୍ୱରେ ଜଗତର ସମସ୍ତ ପୁରାଣ ଓ ବେଦାଦିଶାସ୍ତ୍ର ଏବଂ ଅପର ପାର୍ଶ୍ୱରେ ଏହି ଗ୍ରନ୍ଥକୁ ରଖିଲେ । ଏହି ଗ୍ରନ୍ଥର ଭାର ଅଧିକ ହେବାରୁ ତାହାର ନାମ 'ମହାଭାରତ' ରଖାଗଲା । ସଂସ୍କୃତ ମହାଭାରତରେ ପ୍ରଦତ୍ତ ବ୍ୟୁତ୍ପତ୍ତିର ଏହା ଅନୁରୂପ ।
ମୂଳଗ୍ରନ୍ଥରେ ଅଛି —

"ପୁରାକିଲ ସୁରୈଃ ସର୍ବୈଃ ସମେତ୍ୟ ତୁଲୟାଧୃତଂ ।
ଚତୁର୍ଭ୍ୟଃ ସରହସ୍ୟେଭ୍ୟୋ ବେଦେଭ୍ୟୋଽପ୍ୟଧିକଂ ଯଦା ।
ତଦା ପ୍ରଭୃତି ଲୋକେଽସ୍ମିନ୍ ମହାଭାରତ ମୁଚ୍ୟତେ ।
ମହତ୍ତ୍ୱେ ଚ ଗୁରୁତ୍ୱେ ଚ ଧ୍ରିୟମାଣଂ ଯତୋଽଧିକଂ
ମହତ୍ତ୍ୱାତ୍ ଭାରବତ୍ତ୍ୱାଚ୍ଚ ମହାଭାରତ ମୁଚ୍ୟତେ ।"

---

* ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ - ( ଅଗଷ୍ଟ, ୧୯୭୧ ) — ପୃ: ୮୩

ମୂଳଗ୍ରନ୍ଥ ଭଳି ସାରଳା ମହାଭାରତରେ ଅଛି

"ଆରକ୍ତ କଛେ ଭାରତ ଅଷ୍ଟାଦଶ ହୋଇଲେ
ସମସ୍ତ ଶାହାସ୍ର ଗ୍ରନ୍ଥୁଂ ସେହୁ ମହାଖାରୁ ହୋଇଲେ ।

ଯୁଗଢେ ସେ ସନ୍ଥୁଂ ହୋଇଲା ମହାଭାର
ତହୁଂ ମହାଭାରଥ ନାମ ଦଲେ କଶ୍ୟପ ଅର୍ଙ୍ଗିର ।

ତେଣୁକର ହୋଇଲା ସେ ମହାଭାରଥ ନାମ
ତୁଳନ୍ତେ ସନ୍ଥୁଂ ହୋଇଲା ସେହୁ ମହା ଅସମ ।"

( ଆଦ୍ୟପର୍ବ )—ପୃ: ୭ )

## ଜନାର୍ଦ୍ଦନ :

"ଦୈତ୍ୟପାଳ ବଦାରଣେ ନାମ ଜନାର୍ଦ୍ଦନ ।" ( ବିରାଟପର୍ବ )
"ଦସ୍ୟୁନାସାଜ୍ଜନାର୍ଦ୍ଦନଃ ।"

## ଓଡ଼ିଶା :

ଆଦ୍ୟପର୍ବରେ କବି ସୋମବଂଶର କ୍ରମୋତ୍ପତ୍ତି ବିବରଣୀ କହି ସେଥି ମଧ୍ୟରେ ଲେଖିଛନ୍ତି ଯେ ସୋମବଂଶଜାତ ପୁରୁ ନାମକ ନୃପତିଙ୍କ ଭାର୍ଯ୍ୟା ଓଡ଼ଣୀ (ଓଡ଼ଦେଶ ସ୍ତ୍ରୀ) ଥିବାରୁ ଓଡ଼ିଶାର ନାମ ଓଡ଼ରାଷ୍ଟ୍ର ହୋଇଅଛି । ଏହା ଅକୃତ୍ରିମ ଓ ସଂସ୍କୃତ କ୍ରମାନୁରୂପ ନ ହେଲେ ସୁଦ୍ଧା ବ୍ୟୁତ୍ପତ୍ତିକ୍ରମର ସଙ୍ଘଟନା ସେପରି ଅସଙ୍ଗତ ବୋଧହୁଏ ନାହିଁ । ଯେ ଯାହାହେଉ ଓଡ଼ିଶା ଆଦିମ ଓଡ଼୍ରଆମାନଙ୍କର ଦେଶ ହୋଇଥିବାରୁ ଓଡ଼ରାଷ୍ଟ୍ର ନାମରେ ଅଭିହିତ ହେଲା ।

"ତାହାର ଜ୍ୟେଷ୍ଠପୁତ୍ର ନାମ ପୁରୁ ମହୀପତି
ଓଡ଼ସ୍ତ୍ରୀଣୀ ଭାରଯାର ସେ ଅଟଇ ସନ୍ତତି ।
ମାତାଙ୍କର ଭାଗ ଯେ ଓଡ଼ରାଷ୍ଟ୍ର ମଣ୍ଡଳେ
ତହୁଂ ସେ ଓଡ଼ରାଷ୍ଟ୍ର ଭୂଅଖଣ୍ଡ ସର୍ବକାଳେ ।" ଆଦ୍ୟପର୍ବ—ପୃ: ୧୦)

## କୋଣାର୍କ :

'କୋଣ' ଓ 'ଅର୍କ'—ଏହି ଶବ୍ଦ ଦ୍ୱୟ ସାହାଯ୍ୟରେ ଐତିହାସିକ ପ୍ରଥାନୁସାରେ ସାରଳା ଦାସ କୋଣାର୍କ ଶବ୍ଦର ବ୍ୟୁତ୍ପତ୍ତି ସ୍ଥିର କରିଛନ୍ତି । ଏହା ଖୁବ୍ ସଂଗତ ବୋଧହୁଏ । କାରଣ ସୂର୍ଯ୍ୟଦେବ ଚନ୍ଦ୍ରଭାଗା ନଦୀର ଏକ କୋଣରେ ଅର୍କଦୈତ୍ୟକୁ ନିହତ କରିଥିବାରୁ ପ୍ରୋକ୍ତ ସ୍ଥାନର ନାମ 'କୋଣାର୍କ' ହେଲା ବୋଲି ସେ ଅନେକାନ୍ତ ସିଦ୍ଧାନ୍ତ କରିଛନ୍ତି ।

"ଚନ୍ଦ୍ରଭାଗେ ବାଲୁକାଧ୍ୟ ଅଗ୍ନିକୋଣ ଆଡ଼େ
ଅର୍କ ଦଇତକୁ ମାଡ଼ ବସିଲେ ମଉଦଧି ପଶ୍ଚିମ କୂଳରୁଡ଼େ ।
ପୃଥ୍ୱୀର ଅଗ୍ନିକୋଣେ ବନସ୍ତ୍ରେ ନଗର ଜ୍ୟୋତ
ତେଣୁ ସେ କୋଣାର୍କ ତୀର୍ଥ ଜଗତେ ବିଖ୍ୟାତ ।"

( ବନପର୍ବ ୨ୟ—ପୃ: ୯୯-୧୦୦)

ପୁନଶ୍ଚ "ପୃଥ୍ୱୀର ଅଗ୍ନିକୋଣେ ଯେହୁ ଅର୍କ ଦଇତକୁ ଧ୍ୱଂସି
ତେଣୁକରି କୋଣାର୍କ ନାମ ହେଲେ ଅମର ସ୍ୱର୍ଗବାସୀ ।

( ଶାନ୍ତିପର୍ବ—ପୃ: ୩୩ )

## ପରୀକ୍ଷ :

ପରୀକ୍ଷିତ ରାଜାଙ୍କୁ ପରୀକ୍ଷ ବୋଲି ସାରଳା ଦାସ ଲେଖିଅଛନ୍ତି ଏବଂ ପରୀକ୍ଷା ଦ୍ୱାରା ଏ ରକ୍ଷିତ ହୋଇଥିବାରୁ ଏପରି ନାମ ପାଇଥିଲେ ବୋଲି କହିଅଛନ୍ତି । ପୁନଶ୍ଚ ଶ୍ରୀକୃଷ୍ଣ ସମସ୍ତଙ୍କ ସମ୍ମୁଖରେ ନିଜ ମହିମାର ପରୀକ୍ଷା ପ୍ରଦର୍ଶନ କରି ଏହାଙ୍କୁ ପୁନର୍ଜୀବନ ଦେବାରୁ ଏହାଙ୍କ ନାମ ପରୀକ୍ଷ ହୋଇଅଛି ।

"ମୃତ୍ତପିଣ୍ଡ ବୁଡ଼ଲି ସେ ସୋମବଂଶ ହେବ ମୋକ୍ଷ
ପରୀକ୍ଷାରୁ ଉଦ୍ଧରିଲି ଏହାର ନାମ ଯେ ପରୀକ୍ଷ ।
ଅହୋ ଅନେକ ପରୀକ୍ଷ ଯହୁଂ କହିଲେ ଶ୍ରୀବତ୍ସ
ସେ ପୁତ୍ରର ହରି, ନାମ ଦଲେକ ପରୀକ୍ଷ ।"

( କାର୍ତ୍ତିକା ପର୍ବ - ପୃ : ୧୯ )

## ମଲ୍ଲିକାର୍ଜୁନ :

ଦକ୍ଷିଣ ଭାରତର ଶ୍ରୀ ପର୍ବତରେ ମଲ୍ଲିକାର୍ଜୁନ ଶିବ ମୂର୍ତ୍ତି ସର୍ବତ୍ର ସୁବିଖ୍ୟାତ । ଏ ସମ୍ବନ୍ଧରେ ସାରଳା ଦାସ ନକୁଳଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ କହନ୍ତି ଯେ ଶ୍ରୀପର୍ବତରେ ଶ୍ରୀରାମଚନ୍ଦ୍ର ସୁଷେଣଙ୍କୁ ରାଜା କରିବାକୁ ମନସ୍ଥ କରିଥିଲେ ; ମାତ୍ର ସୁଷେଣଙ୍କର ଅକାଳ ବିୟୋଗ ହେବାରୁ ହନୁମାନ କେତେଗୁଡ଼ିଏ ମଲ୍ଲିକାପୁଷ୍ପ ଓ କୃଷ୍ଣାର୍ଜୁନରେ ପୋତାଯାଇଥିବା ଶରୀରକୁ ଆଚ୍ଛାଦନ କରିରଖିଲେ । ପରେ ରାମଚନ୍ଦ୍ର ଆସି ଏହି ଆଚ୍ଛାଦନକୁ ଉନ୍ମୋଚନ କଲାବେଳେ ଦେଖାଗଲା ଯେ ମୃତକଳେବରଟି ଗୋଟିଏ ସ୍ୱୟମ୍ଭୁଲିଙ୍ଗରେ ପରିଣତ ହୋଇଯାଇଛି । ଅତଏବ ମଲ୍ଲିକା ଓ ଅର୍ଜୁନ ନାମ ନେଇ ଆବିର୍ଭୂତ ଲିଙ୍ଗକୁ ମଲ୍ଲିକାର୍ଜୁନ ନାମରେ ନାମିତ କରାଗଲା ।

"ହନୁମାନ ଘୋଡ଼ାଇଲେ ମଲ୍ଲୀ ଫୁଲ ଗୁଡ଼ାଏ
ଉପରେ ଦଲେ ସେ କୃଷ୍ଣାଜନ ଗ୍ଭଲ ଗୋଟିଏ ।
ମଲ୍ଲିକା ଅଞ୍ଜନ ସେ ଲଙ୍କେକ ଉତ୍ପତ୍ତି
ମଲ୍ଲିକା ଅଞ୍ଜନ ନାଥ ନାମ ତାଂକୁ ଦଲେକ ଦାଶରଥି ।"

( ସଭାପର୍ବ—୧ମ ଖଣ୍ଡ ପୃ-୬୪୮)

## ଅଙ୍ଗାରପନ୍ନଗ :

ଆଦି ପର୍ବରେ ଅଙ୍ଗାରପର୍ଣ୍ଣ ଗନ୍ଧର୍ବଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ଏହି ଅଙ୍ଗାରପର୍ଣ୍ଣ ପଦକୁ ସାରଳା ଦାସ ଅଙ୍ଗାର ପନ୍ନଗ ବା ଅଙ୍ଗାର ପନଙ୍ଗ ବୋଲି ଲେଖିଛନ୍ତି । ଏ ପଦର ବ୍ୟୁତ୍ପତ୍ତି ଦର୍ଶାଇ କବି କହନ୍ତି ଯେ ଗରୁଡ଼ଙ୍କ ଭୟରେ ସର୍ପମାନେ ଉକ୍ତ ଗନ୍ଧର୍ବଙ୍କ ଶରଣାପନ୍ନ ହେବାରୁ ତାଙ୍କର ନାମ ଅଙ୍ଗାରପନ୍ନଗ ବା ଅଙ୍ଗାରପନଙ୍ଗ ହୋଇଅଛି ।

"ସର୍ପମୟ ମୋର ହାଦେ ହୋଇଲେକ ଅଙ୍ଗ
ତେଣୁ ଯେ ନାମ ମୋହର ଅଙ୍ଗାରପନ୍ନଗ ।"

( ଆଦିପର୍ବ—ପୃ: ୭୫୭ )

## କେଉଁକା :

'କେ' 'ଉଁ'—ଏହିପରି ବର୍ଣ୍ଣ ବିଶ୍ଳେଷଣରେ ଦେଶୀୟ ଭାଷାନୁଗତ ଅର୍ଥକୁ ଗ୍ରହଣ କରି କବି 'କେଉଁକା' ପଦର ବ୍ୟୁତ୍ପତ୍ତିକ୍ରମ ଦର୍ଶାଇଛନ୍ତି ।

"କେ ଉଁ ବୋଲି ବୋଇଲେକ ଯହୁଂ ଆଦିନାଗ
କେଉଁକା ନାମ ଯେ ହୋଇଲା ତାହାର ।"

( ଆଦି ପର୍ବ —ପୃ-୯୧୭ )

## କର୍ଣ୍ଣ :

ସଂସ୍କୃତ ମହାଭାରତ ଅନୁଯାୟୀ ସମ୍ଭୋଗମାନେ କର୍ଣ୍ଣ ଜନ୍ମ ଲଭ କଲେ । ତାଙ୍କ କର୍ଣ୍ଣରେ ସହଜ କୁଣ୍ଡଳ ଥିଲା ଏବଂ ଏହା ସେ ଇନ୍ଦ୍ରଙ୍କୁ କର୍ଣ୍ଣରୁ ପୃଥକ କରି ଦେଇଥିବାରୁ ତାଙ୍କର ନାମ କର୍ଣ୍ଣ ରଖାଗଲା; କିନ୍ତୁ କର୍ଣ୍ଣବାଟେ ଜନ୍ମ ହୋଇଥିବାରୁ ଏହାଙ୍କର ନାମ କର୍ଣ୍ଣ ହେଲା ବୋଲି ସାରଳା ଦାସ ଲେଖିଛନ୍ତି ।

"କର୍ଣ୍ଣ ପଥେ ପୁତ୍ର ତୁ ଯେ ହୋଇଲୁ ଉତ୍ପନ୍ନ
କୋଳେ ଧରି ମାରତଣ୍ଡ ନାମ ଦଲେ କର୍ଣ୍ଣ ।"

( ଉଦ୍ଯୋଗପର୍ବ—ପୃ-୩୬୮ )

ପୁନଶ୍ଚ ଆଦିପର୍ବରେ କର୍ଣ୍ଣଙ୍କ ଜନ୍ମ ପ୍ରସଙ୍ଗରେ କବି ଲେଖିଛନ୍ତି –

ମହା ଅମୋଘ ରେତ ଅକ୍ଷୟ ସେ ବୀର୍ଯ୍ୟ
କର୍ଣ୍ଣ ବାଟେ ସଇନ୍ଦ୍ର ଉପୁଜିଲ ଆତ୍ମଜ ।
ଦେଖିଣ ପରମ ଆନନ୍ଦ ହୋଇଲେ କମଳଲୋଚନ
କୋଳ କରି ନାମ ଦିଲେ ତାହାର ବୀର କର୍ଣ୍ଣ ।"

( ପୃ—୧୬୭ )

## ଶିଖଣ୍ଡୀ :

ଶିଖଣ୍ଡୀ ପଦର ବ୍ୟୁତ୍ପତ୍ତିରେ ସାରଳା ଦାସ କହନ୍ତି ଯେ ଦ୍ରୁପଦରାଜ ଜନ୍ମମାତ୍ରେ ତାହାଙ୍କୁ ନପୁଂସକ ଦେଖି ଶିର ଖଣ୍ଡନ କରିଥିଲେ । ଅତଏବ ସେହି ସନ୍ତାନର ନାମ ଶିଖଣ୍ଡୀ ହେଲା ।

"ଶିର ଯେ ସେହିହାର ଖଣ୍ଡିଥିଲୁ ଯେବେ
ଶ୍ରୀଖଣ୍ଡୀ ନାମ ସେହିହାର ଦେଅସି ରାଜଦେବେ ।"

( ଆଦିପର୍ବ —ପୃ -୬୭୩ )

## ପାଣ୍ଡବ :

ପାଣ୍ଡୁଙ୍କ ପୁତ୍ରଗଣଙ୍କୁ ପାଣ୍ଡବ ( ପାଣ୍ଡୁ + ଅ ) ବୋଲି କୁହାଯାଏ; ମାତ୍ର ସାରଳା ଦାସ ଏ ପଦର ଭିନ୍ନ ବ୍ୟୁତ୍ପତ୍ତିକ୍ରମ ଦର୍ଶାଇଛନ୍ତି । ସେ କହନ୍ତି ଯେ ପାଣ୍ଡବାସୁରକୁ ବଧ କରିବାରୁ ଏହି ପାଞ୍ଚ ଭାଇଙ୍କୁ ପାଣ୍ଡବ ନାମରେ ନାମିତ କରାଗଲା ।

"ପାଣ୍ଡବାସୁରକୁ ଯହୁଂ ପାଣ୍ଡବେ ବଧ କଲେ
ତହୁଂ ସେ ପାଣ୍ଡବ ନାମ ପାଞ୍ଚହେଂ ବହିଲେ ।"

( ଆଦିପର୍ବ . ପୃ-୫୦୭ )

## ଅଶ୍ୱତ୍ଥାମା :

ଅଶ୍ୱତ୍ଥାମାଙ୍କ ଜନ୍ମକାଳରେ ତାଙ୍କ ମାତା ଅତିଶୟ କଷ୍ଟପାଇବାରୁ ଦ୍ରୋଣ ବଳପ୍ରୟୋଗ ପୂର୍ବକ ଗର୍ଭସ୍ଥ ସନ୍ତାନକୁ ଭୂମିଷ୍ଠ କରାଇବା ସମୟରେ ଗର୍ଭଧାରଣୀଙ୍କର ବିୟୋଗ ଘଟିଛି । ଏଣୁ ଏହି ସନ୍ତାନର ନାମ ଅଶ୍ୱତ୍ଥାମା ରଖାଯାଇଅଛି ।

"କୃପୀ ପେଟ ଶେ ପୁତ୍ର ବାହାର ଯେ କଲେ
ମାତା ହତ ହୋଇଲା ପୁତ୍ର ନାମ ଅଶ୍ୱତ୍ଥମା ଦିଲେ ।"

( କର୍ଣ୍ଣପର୍ବ—ପୃ-୬ )

## ନକୁଳ :

ଅଶ୍ୱିନୀ କୁମାରଙ୍କ ଔରସରେ ମାଦ୍ରୀଙ୍କ ଗର୍ଭରୁ ନକୁଳ ଜାତ ହୋଇଛନ୍ତି । ତାଙ୍କର ଏପରି ନାମ କରଣ ସମ୍ପର୍କରେ କବି ଲେଖିଛନ୍ତି —

"ନବଘନ ଅନ୍ଧାର ଯେ ବାହ୍ମଣୀ କୂଳ ଯେନ
ନବକୁଳ ସଙ୍ଗମ ଯେ କଇ କାମିନୀ ।
ନବନଦୀ କୂଳେ ଯେଣୁ କୁମାର ଉପୁଜିଲା
ତେଣୁ କରି ମହାତ୍ମା ନକୁଳ ନାମ ଦିଲା ।"

( ଆଦିପର୍ବ—ପୃ-୨୪୩ )

## ସହଦେବ :

ସହଦେବ ପଣ୍ଡୁଙ୍କ ଔରସରେ ଜନ୍ମି କ୍ଷୀର ଅଭାବରୁ ପ୍ରାଣତ୍ୟାଗ କରିଛନ୍ତି । ଅଶ୍ୱିନୀକୁମାର ସେଠାରେ ଉପସ୍ଥିତ ହୋଇ ନିଜ ଆତ୍ମାକୁ ମୃତପିଣ୍ଡରେ ସଂସ୍ଥାପନ କରି ଜୀବନ୍ୟାସ କରିଥିବାରୁ ଏହାଙ୍କ ନାମ ସହଦେବ ହୋଇଅଛି ।

"ଆପଣା ତନ୍ତୁଂ କାଢ଼ି ଭରିଦିଲେ ଯନ୍ତୁଂ ଜୀବ
ତେଣୁକରି ଅଶ୍ୱିନୀକୁମାରେ ନାମ ଦିଲେ ସହଦେବ ।"

( ଆଦିପର୍ବ—ପୃ-୨୪୮ )

## ଧନଞ୍ଜୟ :

ପ୍ରତିଦିନ କୁନ୍ତୀ ଓ ଗାନ୍ଧାରୀ ବିଶ୍ୱନାଥ ଦର୍ଶନ କରନ୍ତି । ଏକଦା ଏହି ବିଶ୍ୱନାଥଙ୍କୁ କେନ୍ଦ୍ର କରି ସେମାନଙ୍କ ମଧ୍ୟରେ କଳହର ସୂତ୍ରପାତ ହୋଇଛି । ପରଦିନ ପ୍ରଭାତରେ ଯେ ତାଙ୍କୁ ଏକଶତ ସୁବର୍ଣ୍ଣ ଚମ୍ପା ଦେଇ ପାରିବ, ସେ ତାର ହେବେ ବୋଲି ବିଶ୍ୱନାଥ ସେମାନଙ୍କୁ ଜଣାଇ ଦେଇଅଛନ୍ତି । ସୁବର୍ଣ୍ଣ ଚମ୍ପା ନିମନ୍ତେ କୁନ୍ତୀ ଓ ଗାନ୍ଧାରୀଙ୍କ ମଧ୍ୟରେ ଏକ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଅଛି । ଅର୍ଜୁନ ସ୍ୱବୀରତ୍ୱ ବଳରେ କୁଢ଼ କୁଢ଼ ସୁବର୍ଣ୍ଣ ଚମ୍ପାରେ ମନ୍ଦିର ପୂର୍ଣ୍ଣ କରି ଦେଇଅଛନ୍ତି । ଏହା ଦେଖି ଗାନ୍ଧାରୀ ଲଜ୍ଜିତା ହୋଇଅଛନ୍ତି । ଦେବତାମାନେ ଅର୍ଜୁନଙ୍କ ବୀରତ୍ୱରେ ମୁଗ୍ଧ ହୋଇ ତାହାଙ୍କୁ 'ଧନଞ୍ଜୟ' ବୋଲି ନାମ ଦେଇଅଛନ୍ତି ।

"ପୁର ପୁରେ ଶୃଙ୍ଖଳ ଜଂସ୍ୟେ ଜୟେ
ଦେବତାୟେ ନାମ ହଲେ ଯେ ଧନଞ୍ଜୟେ ।"

( ଆଦିପର୍ବ—ପୃ-୩୩୦ )

ଏତଦ୍‌ବ୍ୟତୀତ ଗଣ୍ଡକୀ; ଜମ୍ବୁଦ୍ୱୀପ, ପ୍ରମଦା, ଭରତଖଣ୍ଡ, ବା ଭାରତବର୍ଷ, ନୀଳକଣ୍ଠ, ହର, କାମ୍ୟବନ, ମଧୁସୂଦନ, ନାରାୟଣ, ଲକ୍ଷ୍ମଣ, ସ୍ୱୟମ୍ଭୂ, ଚନ୍ଦ୍ରାବତୀ, ଗାଣ୍ଡିବ, ଇଚ୍ଛାମୃତ୍ୟୁ, ବିରାଟ, ବୈତରଣୀ, ଯୁଧିଷ୍ଠିର, ଭୁଷଣ୍ଡ, ତ୍ର୍ୟମ୍ବକ, 'ଧୃଷ୍ଟଦ୍ୟୁମ୍ନ, ଶ୍ୱେତବାହନ, ପାର୍ଥ, ସବ୍ୟସାଚୀ ଇତ୍ୟାଦି ଅନେକ ପଦର ବ୍ୟୁତ୍ପତ୍ତିକ୍ରମ ମଧ୍ୟ ସାରଳା ମହାଭାରତରେ ଦେଖିବାକୁ ମିଳେ ।

ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କର 'ଶ୍ରୀଭାରତ ଦର୍ପଣ'ରେ ପ୍ରଦତ୍ତ ଏ ସମ୍ବନ୍ଧୀୟ ମତ ଏଠାରେ ଉଦ୍ଧାର କରାଯାଇ ଆଲୋଚନା ସମାପ୍ତ କରାଯାଇପାରେ । ସେ କହନ୍ତି "ପରନ୍ତୁ ଏ ମହାଶୟ ନିଜର ପ୍ରକୃତିସିଦ୍ଧ କାଳ୍ପନିକ ବୈଷମ୍ୟ-ପ୍ରିୟତାବଶରୁ କେତେକ ସ୍ଥଳରେ କାଳ୍ପନିକ ବିଲକ୍ଷଣ ବ୍ୟୁତ୍ପତ୍ତି ଦ୍ୱାରା ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ବୁଝାଇ ଅଛନ୍ତି । X X X ଏହାଙ୍କ ପ୍ରଦତ୍ତ ସମସ୍ତ ବ୍ୟୁତ୍ପତ୍ତି ପ୍ରକାଶନ କ୍ରମକୁ ସମ୍ୟକ୍ ବିଚାର କଲେ ଜଣାଯାଏ, କବି ମୂଳଗ୍ରନ୍ଥ ଓ ତଦିତର ଗ୍ରନ୍ଥମାନଙ୍କର ଶୁଶ୍ରୂଷାରେ ଯାହା ଯାହା ହୃଦୟଙ୍ଗମପୂର୍ବକ ସ୍ମୃତିଗର୍ଭରେ ସଯତ୍ନ ରଖିପାରିଥିଲେ ଅଥଚ ନିଜ ବୁଦ୍ଧିବଳରେ ସୁସମ୍ପନ୍ନ କରିପାରିଥିଲେ; ସେସବୁ ସଂଗତ ରୂପେ ପ୍ରଦର୍ଶନ କରିଅଛନ୍ତି । ଯାହା ଯାହା ସ୍ମୃତିକୋଷରୁ ବିଚ୍ୟୁତ କିମ୍ବା ବୁଦ୍ଧି ସମକ୍ଷରୁ ଅନ୍ତର୍ହିତ ହୋଇଯାଇଥିଲା, ସେସବୁ କାଳ୍ପନିକ ଜାଲରେ ପଡ଼ିବାରୁ ସ୍ଥାନେ ସ୍ଥାନେ ଅସଙ୍ଗତ ହୋଇଯାଇଅଛି । ସୁତରାଂ ବିଶ୍ୱାସ ହୁଏ; ଏଥି ମଧ୍ୟରେ କେତେକ ଅନଭିଜ୍ଞ ପ୍ରକ୍ଷେପକଙ୍କ ଅତ୍ୟାଗ୍ରହ ସୁଦ୍ଧା ମିଶିଯାଇଅଛି ।' ( ପୃ—୬୪୨ )

## ଚରିତ୍ର ଚିତ୍ରଣ

ଚରିତ୍ର ଚିତ୍ରଣରେ ସାରଳା ଦାସ ନିଜର ଦକ୍ଷତା ଓ ମୌଳିକତା ପ୍ରତ୍ୟେକ ଚରିତ୍ର ମାଧ୍ୟମରେ ପ୍ରଦର୍ଶନ କରିଅଛନ୍ତି । ତାଙ୍କ ଲେଖନୀରେ ରୂପାୟିତ ହୋଇଥିବା ଚରିତ୍ରଗୁଡ଼ିକ ସଂସ୍କୃତ ମହାଭାରତର ଚରିତ୍ରମାନଙ୍କ ସହିତ ସମାନ ନୁହନ୍ତି । ଅବଶ୍ୟ ଏପରି ହେବା ସ୍ୱାଭାବିକ । କାରଣ ସେ ସଂସ୍କୃତ ମହାଭାରତର ସରଣୀ ଅନୁସରଣ ନ କରି ସୃଷ୍ଟି କରିଥିଲେ ଏକ ସ୍ୱତନ୍ତ୍ର ଓ ନୂତନ ସରଣୀ ଏବଂ ନିଜ ଗ୍ରନ୍ଥକୁ ପୁଷ୍ଟ କରିଥିଲେ ମୌଳିକ ଚିନ୍ତାଧାରା ଓ ସ୍ୱକୀୟ କଳ୍ପନା ବଳାହରେ । ସେ ସଂସ୍କୃତ ମହାଭାରତର ବ୍ୟାଖ୍ୟା ଶୁଣିବା ପରେ ତହିଁରେ ଉଦ୍‌ବୁଦ୍ଧ ହୋଇ ନିଜ ମାତୃଭାଷାରେ ଏକ ଅନୁରୂପ ଗ୍ରନ୍ଥ ରଚନା କରିବାକୁ ମନସ୍ଥ କରିଥିବାର ସମ୍ଭାବନାରେ ସତ୍ୟତା ହୁଏତ ଥାଇପାରେ ; ମାତ୍ର ସଂସ୍କୃତ ମହାଭାରତର ସ୍ଥୂଳ କଥାବସ୍ତୁକୁ ଗ୍ରହଣ କରି ସେ

ଯେଉଁ ମହାଭାରତ ରଚନା କଲେ ତାହା ପଥର୍ଥରେ ହେଲା ଓଡ଼ିଶାର ବା ଓଡ଼ିଆ ଜାତିର ଗୌରବମୟ ଜାତୀୟ ଇତିହାସ । ଏଥିରେ ବର୍ଣ୍ଣିତ ସମସ୍ତ ବିଭାଗ ଓ ବିଭାବରେ ତାଙ୍କର ନିଜ ଅନୁଭୂତ ଓ ଅଭିଜ୍ଞତା ସୁସ୍ପଷ୍ଟ । ସେ ଥିଲେ ଜାତୀୟବାଦୀ । ଏଣୁ ଏଥିରେ ଉତ୍କଳୀୟ ଛାପ ବା ଓଡ଼ିଆତ୍ୱ ପୃଷ୍ଠାମାନଙ୍କରେ ଦେଖିବାକୁ ମିଳେ । ଏଥିରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ମଧ୍ୟ ଖାଣ୍ଟି ଓଡ଼ିଆ ଭଳି ଜଣାଯାଏ । ସେ ଜଣେ ସାଧାରଣ କୃଷକ ଥିଲେ ଏବଂ ନିଜ ଗ୍ରନ୍ଥର ବିଭିନ୍ନ ଚରିତ୍ରଗୁଡ଼ିକୁ ସେ ଚିତ୍ରଣ କରିଥିଲେ ସେ ସମୟର ସମାଜରେ ବାସକରୁଥିବା ସାଧାରଣ କୃଷକଙ୍କ ଭଳି । ସୁତରାଂ ତାଙ୍କ ବର୍ଣ୍ଣିତ ଦେବଦେବୀ ଏବଂ ଅଭିଜାତ ଚରିତ୍ରଗଣ ସାଧାରଣ ଗ୍ରାମବାସୀ ଭଳି ସରଳ । ଏମାନଙ୍କଠାରେ ଓଡ଼ିଆତ୍ୱ ଏତେ ବେଶୀ ପ୍ରକଟିତ ଯେ, ମନେହୁଏ ସତେ ଯେପରି ସେମାନେ ଆମ୍ଭମାନଙ୍କ ସହିତ ମିଳିମିଶି ବସବାସ କରୁଛନ୍ତି ।

ଏହି କୃଷକ କବି ଜୀବନକୁ ଯେପରି ଦେଖିଥିଲେ ଓ ଜାଣିଥିଲେ, ସେହିପରି ଶ୍ରୀକୃଷ୍ଣ, ରାଜର୍ଷି ଜନକ, ଧୃତରାଷ୍ଟ୍ର, ମହାରଥୀ ଭୀଷ୍ମ, ମହାବୀର ଦ୍ରୋଣ, ଧର୍ମବୀର ଯୁଧିଷ୍ଠିର, କର୍ମବୀର ଅର୍ଜ୍ଜୁନ, ଦାନବୀର କର୍ଣ୍ଣ, ମାନୀ ଦୁର୍ଯ୍ୟୋଧନ, ମଦୋଦ୍ଧତ ଦୁଃଶାସନ, ମଦମତ୍ତ ଶକୁନି ପ୍ରଭୃତି ପୁରୁଷ ଚରିତ୍ର ଏବଂ ଗଙ୍ଗା, କୁନ୍ତୀ, ଗାନ୍ଧାରୀ, ଦ୍ରୌପଦୀ, ସୁଭଦ୍ରା ପ୍ରଭୃତି ନାରୀ ଚରିତ୍ରଗୁଡ଼ିକର ସଫଳ ରୂପାୟନ ନିଜ ଗ୍ରନ୍ଥରେ କରିଅଛନ୍ତି । ସେମାନେ ପ୍ରତ୍ୟେକେ ତତ୍କାଳୀନ ଉତ୍କଳୀୟ ସମାଜର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ଚରିତ୍ରର ବାସ୍ତବ ପ୍ରତିନିଧି ଭଳି ମନେ ହୁଅନ୍ତି । ସେଥି ମଧ୍ୟରୁ କେତେକ ବିଶିଷ୍ଟ ଚରିତ୍ରର ବିଶ୍ଳେଷଣ ଏଠାରେ କରାଯାଇପାରେ ।

## ଶ୍ରୀକୃଷ୍ଣ :

ମହାଭାରତର ଶ୍ରୀକୃଷ୍ଣ ହିଁ ନୀଳାଚଳର ଜଗନ୍ନାଥ । ଏହି ଜଗନ୍ନାଥ ଜାରା ଶବର ଶରରେ ନିହତ ହେବାପରେ ତାଙ୍କର ମୃତପିଣ୍ଡ ପାଣ୍ଡବଙ୍କ ଦ୍ୱାରା ଦାହ କରାଯାଇଛି; ମାତ୍ର ନାଭି ଅଂଶ ଦଗ୍ଧିଭୂତ ନ ହେବାରୁ ତାହା ସମୁଦ୍ର ଗର୍ଭରେ ଭସାଇ ଦିଆଯାଇଛି । ଜାରା ଶବର, ଯିଏ ଶ୍ରୀକୃଷ୍ଣଙ୍କୁ ଶରବିଦ୍ଧ କରିଥିଲା ସେ ସେହି ପୋଡ଼ା ଅଂଶ ଉଦ୍ଧାର କରି ପୂଜା କରିଅଛି । ପରବର୍ତ୍ତୀ ଅବସ୍ଥାରେ ନୀଳାଚଳରେ ଏହା ଦାରୁବ୍ରହ୍ମ ରୂପେ ପୂଜା ପାଇଅଛି । ଏଥିରୁ ପ୍ରତିପାଦିତ ହୁଏ ଯେ, ମହାଭାରତର ଶ୍ରୀକୃଷ୍ଣ ନୀଳାଚଳର ଜଗନ୍ନାଥ ଅଟନ୍ତି ।

ସଂସ୍କୃତ ମହାଭାରତରେ ଶ୍ରୀକୃଷ୍ଣଙ୍କ ସାଧୁତା ତଥା ପାଣ୍ଡିତ୍ୟର ପରିଚୟ ମିଳେ । ସାରଳା ମହାଭାରତର ଶ୍ରୀକୃଷ୍ଣ ଐଶୀଶକ୍ତି ସମ୍ପନ୍ନ ହେଲେ ମଧ୍ୟ ଆଚରଣରେ ସେ ଜଣେ ସାଧାରଣ ମଣିଷ ଏବଂ ତାଙ୍କ ଚରିତ୍ରରେ ଲୌକିକତା ଫୁଟି ଉଠିଅଛି । ପ୍ରଖ୍ୟାତ ସମାଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ମତରେ ସଂସ୍କୃତ ମହାଭାରତର

ପରମଜ୍ଞାନୀ, ତତ୍ତ୍ୱଦର୍ଶୀ ଓ ଅନାସକ୍ତ କର୍ମଯୋଗର ମନ୍ତ୍ରଗୁରୁ ଶ୍ରୀକୃଷ୍ଣଙ୍କର ଏହା ଯେପରି ଏକ ବ୍ୟଙ୍ଗଚିତ୍ର । ବସ୍ତୁତଃ ସାରଳା ମହାଭାରତରେ ଶ୍ରୀକୃଷ୍ଣ ଏକ ସାଧନା-ଭ୍ରଷ୍ଟ ସହଜ ସିଦ୍ଧାଗୃହୀ ରୂପେ ଚିତ୍ରିତ ହୋଇ ଅଛନ୍ତି ।

ଶ୍ରୀକୃଷ୍ଣ ହେଉଛନ୍ତି ପାଣ୍ଡବମାନଙ୍କର ପରମ ସଖା । ସୁଖ-ଦୁଃଖ, ଭଲ-ମନ୍ଦ, ସୁଦିନ-ଦୁର୍ଦ୍ଦିନ ଆଦି ସବୁ ସମୟରେ ପାଣ୍ଡବମାନେ ତାଙ୍କର ସହାୟତା ଲୋଡ଼ିଛନ୍ତି । ସଭାପର୍ବର ରାଜସୂୟ ଯଜ୍ଞ ପ୍ରସଙ୍ଗରେ ଆମେ ଶ୍ରୀକୃଷ୍ଣଙ୍କୁ ପାଣ୍ଡବମାନଙ୍କର ଅଭିଭାବକ ଭାବେ ଦେଖିବାକୁ ପାଉ । ରାଜସୂୟ ଯଜ୍ଞର ସମସ୍ତ ଖବର ସେ ବୁଝିଛନ୍ତି । ପରିବାପତ୍ର କାଟିବାଠାରୁ ଆରମ୍ଭକରି ନିମନ୍ତ୍ରିତ ରାଜାମାନଙ୍କର ଖାଦ୍ୟ ପେୟ, ଶୟନ ଆଦି ସମସ୍ତ ପ୍ରକାର ବ୍ୟବସ୍ଥାର ସୁପରିଚାଳନା ଦାୟିତ୍ୱ ସେ ବହନ କରିଅଛନ୍ତି । ପାର୍ଥ ରଥରେ ସାରଥିର ଭୂମିକା ଗ୍ରହଣ କରିବା ଫଳରେ ତାଙ୍କ ବନ୍ଧୁବତ୍ସଳତା ଓ ଭକ୍ତବତ୍ସଳତାର ପ୍ରକୃଷ୍ଟ ରୂପ ପ୍ରକାଶିତ ହୋଇଅଛି ।

ଶ୍ରୀକୃଷ୍ଣ ଅତ୍ୟନ୍ତ କପଟୀ ଓ କୁଚକ୍ରୀ । କୁରୁ-ପାଣ୍ଡବ ଯୁଦ୍ଧର ଗୋଟିଏ କାରଣ ଯଦି ହୁଏ ଶକୁନି, ତେବେ ଅନ୍ୟ ପ୍ରଧାନ କାରଣ ହେଉଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ । ଉଦ୍‌ଯୋଗ ପର୍ବରେ ଶକୁନି ଶ୍ରୀକୃଷ୍ଣଙ୍କୁ କହନ୍ତି ଯେ କୁରୁପାଣ୍ଡବ ମଧ୍ୟରେ ଉତ୍ତମ ବୁଝାମଣା ରହିଲେ ପୃଥିବୀରୁ ଅନ୍ୟାୟ ଦୂର ହେବ ନାହିଁ; ଏଣୁ ଏମାନଙ୍କ ମଧ୍ୟରେ ଯୁଦ୍ଧର ସୂତ୍ରପାତ କରି କୌରବ ବଂଶର ଧ୍ୱଂସ ସାଧନ କରିବା ଏକାନ୍ତ ଆବଶ୍ୟକ । ଏହି ପରିପ୍ରେକ୍ଷୀରେ ପାଞ୍ଚ ଖଣ୍ଡ ପଡ଼ା ନିମନ୍ତେ ପାଣ୍ଡବଙ୍କର ଆକୁଳ ପ୍ରାର୍ଥନା ଏବଂ କୌରବଙ୍କ ଦ୍ୱାରା ତାହା ପ୍ରତ୍ୟାଖ୍ୟାନ ହେବା ଅନ୍ତରାଳରେ ଥିବା ପ୍ରଧାନ କାରଣ ହେଉଛି ଶ୍ରୀକୃଷ୍ଣଙ୍କ ଅନିଚ୍ଛାଜନିତ ଦୃଢ଼ୋକ୍ତି । କାରଣ ପାଣ୍ଡବମାନଙ୍କ ପ୍ରାର୍ଥନା ଶ୍ରୀକୃଷ୍ଣଙ୍କ ମୁଖରେ ଯେପରି ରୂପ ପାଇଥିଲା, ତାହା ଯଦି କାର୍ଯ୍ୟକାରୀ ହୋଇଥାନ୍ତା, ତେବେ ଦୁର୍ଯ୍ୟୋଧନଙ୍କୁ ମୁଣ୍ଡ ଗୁଞ୍ଜିବା ପାଇଁ ସ୍ଥାନ ମିଳି ନ ଥାନ୍ତା । କେବଳ ସେତିକି ନୁହେଁ, କୁରୁକୁଳ ନାଶ ନିମନ୍ତେ ସେ ଅନେକ ଅସତ୍ ଉପାୟ ଅବଲମ୍ବନ କରି ପାଣ୍ଡବମାନଙ୍କ ସହାୟତା ଲାଭ କରିଛନ୍ତି । ଯୁଦ୍ଧ ସମୟରେ ମଧ୍ୟ କେତେକ ଅନ୍ୟାୟ ଓ ଅନୀତିପୂର୍ଣ୍ଣ କାର୍ଯ୍ୟ କରିବାକୁ ସେ ପାଣ୍ଡବମାନଙ୍କୁ ପ୍ରେରଣା ଦେଇଅଛନ୍ତି । କୁରୁକୁଳର ବିନାଶ ଘଟିଛି ଏବଂ ଶାନ୍ତି ପ୍ରତିଷ୍ଠିତ ହୋଇଅଛି । କେବଳ ସେତିକି ନୁହେଁ, ଦ୍ୱାରକାରେ 'କୋକୁଆ ଭୟ' ସୃଷ୍ଟି କରି ସେ ଯଦୁବଂଶ ଧ୍ୱଂସ କରିଛନ୍ତି ।

ନାଗକନ୍ୟା ଓ ଭୀମସେନଙ୍କ ପୁତ୍ର ବେଲ୍ଲାଳସେନ, ଧନୁର୍ବିଦ୍ୟାରେ ଏତେ ସିଦ୍ଧହସ୍ତ ଥିଲେ ଯେ ସେ ଏକାକୀ ନିମିଷକ ମଧ୍ୟରେ କୁରୁକୁଳ ଧ୍ୱଂସ କରି ମହାଭାରତ ଯୁଦ୍ଧର ଅବସାନ ଘଟାଇ ପାରିଥାନ୍ତେ । ଏହାଫଳରେ ଶ୍ରୀକୃଷ୍ଣ ପୂରା ଅଠରଦିନ ଧରି ଯୁଦ୍ଧ କୌତୁକ ଦେଖିପାରି ନ ଥାନ୍ତେ କିମ୍ବା ନିଜ ହାଟତମାଟ ଦେଖାଇବାରୁ ବଞ୍ଚିତ ହୋଇଥାନ୍ତେ । ତେଣୁ କୌଶଳ ଅବଲମ୍ବନ କରି ସେ ବେଲ୍ଲାଳସେନଙ୍କୁ ପ୍ରଦକ୍ଷିଣବନ୍ଧ

କରାଇଛନ୍ତି ଏବଂ ତାଙ୍କର ମସ୍ତକ ଛେଦନ କରି ପକାଇଛନ୍ତି । ଏଠାରେ ଶ୍ରୀକୃଷ୍ଣଙ୍କ ହୀନ ଧୂର୍ତ୍ତତାର ପରିଚୟ ମିଳେ ।

ନିଜ ସ୍ୱାର୍ଥ ପାଇଁ ସେ କୌଣସି ପ୍ରକାରର ହୀନ କାର୍ଯ୍ୟ କରିବା ନିମନ୍ତେ ସେ କୁଣ୍ଠାବୋଧ କରି ନାହାନ୍ତି ଏବଂ ଆତ୍ମ ସମ୍ମାନରେ ଆଞ୍ଚ ଆସିଲାଭଳି କାର୍ଯ୍ୟ ବା ଯେ କୌଣସି ଅପମାନ ପ୍ରତି ଭ୍ରୂକ୍ଷେପ କରି ନାହାନ୍ତି । ଜରାସନ୍ଧ ବଧ ପ୍ରସଙ୍ଗରେ ପ୍ରହରୀ ଗୀଧର ପାଦ ଛୁଇଁବା ଭଳି ନୀଚ ଏବଂ ଅପମାନଜନକ କାର୍ଯ୍ୟ କରିବା ନିମନ୍ତେ ସେ ପଶ୍ଚାତ୍ପଦ ହୋଇ ନାହାନ୍ତି ।

କୁରୁବଂଶର ସର୍ବଶେଷ ପ୍ରଦୀପ ଦୁର୍ଯ୍ୟୋଧନର ମୃତ୍ୟୁ ସମୟରେ ଶ୍ରୀକୃଷ୍ଣଙ୍କ ନିଷ୍ଠୁରତା ଓ ବିଶ୍ୱାସଘାତକତାର ଚରମ ରୂପ ଦେଖିବାକୁ ମିଳେ । ଗାନ୍ଧାରୀ ଯୁଧିଷ୍ଠିରଙ୍କୁ ତାଙ୍କ ଆଖିରେ ପଟି ଖୋଲିବାକୁ କହିଛନ୍ତି । ତ୍ରିକାଳଦର୍ଶୀ ସହଦେବଙ୍କଠାରୁ ଶ୍ରୀକୃଷ୍ଣ ଜାଣିବାକୁ ପାଇଛନ୍ତି ଯେ ଆଖିର ପଟି ଖୋଲିବା ପରେ ଦୀର୍ଘଦିନ ଧରି ବନ୍ଦ ହୋଇରହିଥିବା ଆଖିରୁ ଯେଉଁ ତେଜ ବାହାରିବ, ସେଥିରେ ଆଗରେ ଥିବା ବ୍ୟକ୍ତି ଭସ୍ମୀଭୂତ ହେବ । ଏହି ପରିପ୍ରେକ୍ଷୀରେ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନକୁ ଡାକି କହିଛନ୍ତି ଯେ ସେ କେବଳ ପଟି ଖୋଲିବା ପାଇଁ ଉପଯୁକ୍ତ ; ଏଣୁ ସେ ଏ କାର୍ଯ୍ୟ କରନ୍ତୁ । ଏକାନ୍ତ ଅନୁଗତ ଦୁର୍ଯ୍ୟୋଧନ ଏ କାର୍ଯ୍ୟ କରି ଶେଷରେ ମୃତ୍ୟୁବରଣ କରିଅଛି ।

ସାରଳାଦାସ ଅନ୍ୟାନ୍ୟ ଚରିତ୍ରକୁ ଏଇ ଧରଣୀର ରକ୍ତମାଂସଧାରୀ ଜଣେ ଜଣେ ସାଧାରଣ ଉତ୍କଳୀୟ ରୂପେ ଚିତ୍ରଣ କରିଥିବା ପରି ଶ୍ରୀକୃଷ୍ଣଙ୍କୁ ମଧ୍ୟ ସେହିପରି ଚିତ୍ରଣ କରିଅଛନ୍ତି । ସେ ପଞ୍ଜିକଆ, କଡାଗଣ୍ଡା ପ୍ରଭୃତ ଓଡ଼ିଆ ପାଠ ପଢ଼ିଛନ୍ତି ଏବଂ ଏକ ନିଃଶ୍ୱାସକେ ବହୁବାଦୀ ଆବୃତ୍ତି କରିପାରିଛନ୍ତି । ଓଡ଼ିଶୀ ବୈଷ୍ଣବ ଧର୍ମର ସପ୍ତାଙ୍ଗ, ଅଷ୍ଟାଙ୍ଗ, ଯୋଗତନ୍ତ୍ର, ଇଅଁଳା, ପିଅଁଳା, ସୁଷୁମ୍ନା ନାଡ଼ିର ତତ୍ତ୍ୱରେ ସେ ପାରଙ୍ଗମ ହୋଇ ଜଣେ ବ୍ରହ୍ମଜ୍ଞାନୀର ଗୌରବ ଲଭ କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ଚରିତ୍ର ଅତ୍ୟନ୍ତ ବୈଚିତ୍ର୍ୟମୟ । ଯେଉଁ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ, ନିରାକାର ପୁରୁଷଙ୍କ ଅଂଶ ବିଶେଷ, ସେ ପୁଣି ସ୍ତମ୍ଭନ, ମୋହନ, ବଶ, ଉଚାଟନ ଇତ୍ୟାଦି ବିଦ୍ୟାରେ ନିପୁଣ ହୋଇ ନିଜ ବଂଶୀର ଯାଦୁକାରୀ ସ୍ୱନ ବଳରେ ଷୋଳ ସହସ୍ର ଗୋପନାରୀଙ୍କୁ ନିର୍ଜନ ସ୍ଥାନକୁ ଆଣି ସେମାନଙ୍କ ସତୀତ୍ୱ ଅପହରଣ କରିଛନ୍ତି, ଯାହାକି ଆର୍ଯ୍ୟ ଧର୍ମର ସମ୍ପୂର୍ଣ୍ଣ ପରିପନ୍ଥୀ । ଏଣୁ ସାରଳାଦାସ ତାଙ୍କୁ ପାପୀର ଆଖ୍ୟା ଦେଇଛନ୍ତି ।

ଉଦ୍‌ଯୋଗ ପର୍ବରେ ରାଧାକୃଷ୍ଣଙ୍କ ଶୃଙ୍ଗାର ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କୁ ଜଣେ କାମୁକ ଓ ନଷ୍ଟ ଚରିତ୍ର ପୁରୁଷ ଭାବେ ଚିତ୍ରଣ କରାଯାଇଛି । ଏହି ଶୃଙ୍ଗାର ଦେଖି ଚନ୍ଦ୍ରସେଣା ବାଧା ଦେବାରୁ ଶ୍ରୀକୃଷ୍ଣ ନିଜର ଅଲୌକିକ ଶକ୍ତି ବଳରେ ପଦାଘାତ

କରି ସହସ୍ର ଯୋଜନ ନିକ୍ଷେପ କରିଛନ୍ତି । ଜଣେ ସାଧାରଣ ମନୁଷ୍ୟ ଭଳି ସେ ରାଧାଙ୍କୁ ପାଇବା ନିମନ୍ତେ ଝୁଙ୍କ ଦ୍ୱାରରେ ମସ୍ତକ ପିଟି ରକ୍ତାକ୍ତ ହୋଇଛନ୍ତି । ପୁନଶ୍ଚ ଲକ୍ଷଣା ଅସ୍ତ୍ର ସାହାଯ୍ୟରେ ଅଷ୍ଟମ ବିଦ୍ୟା ନିପୁଣ ଶ୍ରୀକୃଷ୍ଣ 'ଲକ୍ଷେ ଶୃଙ୍ଗାର' ନିମିତ୍ତ ସମର୍ଥ ହୋଇଛନ୍ତି । ତାଙ୍କ ଚରିତ୍ରର ସବୁଠାରୁ କଳଙ୍କିତ ଅଧ୍ୟାୟ ହେଉଛି ସହଜ ସୁନ୍ଦରୀ ସହିତ ତାଙ୍କର ପ୍ରୀତି । ରାଧା ଭ୍ରମରେ ସେ ସହଜ ସୁନ୍ଦରୀ ନାମ୍ନୀ ଜଣେ ବୃଦ୍ଧା ଦୂତୀକୁ ବଳାତ୍କାର ପୂର୍ବକ ସମ୍ଭୋଗ କରିଛନ୍ତି ଏବଂ ଫଳତଃ ଝିନକାର ଜନ୍ମ ଲାଭ କରିଛି । ସାରଳା ଦାସ ସ୍ୱମତ ପ୍ରକାଶ କରି କହିଛନ୍ତି ଯେ ଏହିପରି ପରକୀୟା ପ୍ରୀତି ଦୋଷରେ ଦୂଷିତ ହୋଇଥିବାରୁ ଶ୍ରୀକୃଷ୍ଣ ଭଗବାନ ହୋଇଥିଲେ ମଧ୍ୟ ଜାରା ଶବର ଦ୍ୱାରା ନିହତ ହୋଇଛନ୍ତି ଏବଂ ତାଙ୍କର ପାପ ପିଣ୍ଡ ସମ୍ପୂର୍ଣ୍ଣ ଭାବେ ଭସ୍ମୀଭୂତ ନ ହୋଇ ଅର୍ଦ୍ଧ ଦଗ୍ଧ ଅବସ୍ଥାରେ ରହିଅଛି ।

ସାରଳାଙ୍କ ମହାଭାରତ ତତ୍କାଳୀନ ସାମାଜିକ ଜୀବନର ଏକ ନିଚ୍ଛକ ପ୍ରତିଛବି ହୋଇଥିବାରୁ ଏଥିରେ ଶ୍ରୀକୃଷ୍ଣଙ୍କୁ ଏକ ଅଶାନ୍ତ ଦେହ ଲାଳସାଗ୍ରସ୍ତ ଜୀବନ୍ତ ବିଗ୍ରହ ଭାବେ ଚିତ୍ରଣ କରାଯାଇଛି । କାରଣ ଯେଉଁ ସମୟରେ ସାରଳା ମହାଭାରତ ରଚିତ ହୋଇଥିଲା, ତାହା ଥିଲା ବୌଦ୍ଧ ଯୁଗର ବିଳୟକାଳ । ବଜ୍ରଯାନୀ ବୌଦ୍ଧଧର୍ମ ଅଭିଗୃରଂସ୍ପୃହା ଜନିତ ଯେଉଁ ଉଚ୍ଛୃଙ୍ଖଳତା ସାମାଜିକ ଜୀବନକୁ କଳୁଷିତ କରିଥିଲା, ତା'ର ପ୍ରତିଛବି ସାରଳାଙ୍କ ଲେଖନୀରେ କେବଳ ଫୁଟି ଉଠିଛି ।

ବ୍ୟାସଦେବଙ୍କ ଶ୍ରୀକୃଷ୍ଣ ଅପେକ୍ଷା ସାରଳାଙ୍କ ଶ୍ରୀକୃଷ୍ଣ ସ୍ୱଳ୍ପ ଦେବଭାବାପନ୍ନ । ଶ୍ରୀକୃଷ୍ଣଙ୍କୁ ଏପରି ପରିକଳ୍ପନା କରିବାର କାରଣ ସ୍ୱରୂପ କୁହାଯାଇପାରେ ଯେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ କଳହ, ତହିଁରୁ ଯୁଦ୍ଧର ସୂତ୍ରପାତ ଏବଂ ଶେଷରେ ପାଣ୍ଡବମାନଙ୍କର ବିଜୟ ହେଉଛି ମହାଭାରତର ମୁଖ୍ୟ କଥାବସ୍ତୁ । କୁଟନୀ ମନ୍ଦମତି ଶକୁନି ହେଉଛି କୌରବଙ୍କ ମନ୍ତ୍ରଣା ଦାତା । ସେହିପରି ପାଣ୍ଡବଙ୍କ ପରାମର୍ଶଦାତା ଥିବା ଶ୍ରୀକୃଷ୍ଣଙ୍କୁ କପଟୀ ଏବଂ କୁଟନୀ ଭାବେ ବର୍ଣ୍ଣନା ନ କଲେ ଦୁଇପକ୍ଷର ଭାରସାମ୍ୟ ହୁଏତ ରହି ନ ପାରେ । ସୁତରାଂ ଶକୁନି ଚରିତ୍ରର ପ୍ରତିଦ୍ୱନ୍ଦ୍ୱୀ ହିସାବରେ ସାରଳା ଦାସ ଏକ ସାର୍ଥକ ଶ୍ରୀକୃଷ୍ଣ ଚରିତ୍ରର ଅବତାରଣା କରିପାରିଛନ୍ତି ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ ।

## ଯୁଧିଷ୍ଠିର :

ପଞ୍ଚପାଣ୍ଡବଙ୍କ ମଧ୍ୟରେ ଯୁଧିଷ୍ଠିର ଜ୍ୟେଷ୍ଠ । ସେ କ୍ଷମାଶୀଳ, ଜ୍ଞାନୀ, ବିବେକୀ, ଧୀର ଓ ପରମଧାର୍ମିକ ମହାପୁରୁଷ ଭାବେ ପରିଚିତ । ସେ ଧର୍ମରାଜ ଯୁଧିଷ୍ଠିର ରୂପେ ପରିଚିତ । ବ୍ୟାସଦେବ ଯୁଧିଷ୍ଠିର ଚରିତ୍ରକୁ ଅତି ଆଦର୍ଶ ଚରିତ୍ର ଭାବେ ଚିତ୍ରଣ କରିଅଛନ୍ତି; ମାତ୍ର ସାରଳା ଦାସ ଉକ୍ତ ଚରିତ୍ରକୁ ବାସ୍ତବତାର ସୀମାରେଖା ମଧ୍ୟରେ ରଖିଛନ୍ତି ।

ଯୁଧିଷ୍ଠିର ଅତି ଅହିଂସ, ଏପରିକି ଅହିଂସା ଧର୍ମ ଦୃଷ୍ଟିରୁ ସେ ଯେ କୌଣସି ଜୈନ ସନ୍ୟାସୀଠାରୁ ବହୁ ଊର୍ଦ୍ଧ୍ୱରେ । ତାଙ୍କ ଦେହରେ ମଶା ବସିଲେ ସେ ତାକୁ ତଡ଼ି ନ ଦେଇ ରକ୍ତ ପିଆଇ ତୃପ୍ତି ଦେଇଥାନ୍ତି । ପୁନଶ୍ଚ ଅତି ନଗଣ୍ୟ ପିମ୍ପୁଡ଼ି ପ୍ରତି ମଧ୍ୟ ତାଙ୍କର ମମତା କିଛି ଊଣା ନୁହେଁ । ଏକଦା ଏକ ଝିଟିପିଟି ଅଚେତ ହୋଇ ପଡ଼ିଥିବାର ଦେଖି ସେ ତା ଉପରେ ପାଣି ଛିଞ୍ଚି, ତା'ର କାନ ଫୁଙ୍କି ତାକୁ ସାନ୍ତ୍ୱନା କରିଅଛନ୍ତି ।

ସାମାନ୍ୟ ଭୁଲ ବଶତଃ ପାଣ୍ଡବ ପାଞ୍ଚଭାଇ ରାଜ୍ୟ ହରାଇଛନ୍ତି, ନିଜ ସ୍ତ୍ରୀର ଲାଞ୍ଛନାକୁ ନୀରବରେ ସହ୍ୟ କରିଛନ୍ତି ଓ କଠୋର ବନବାସ ଦଣ୍ଡ ଭୋଗ କରିଛନ୍ତି । ସେଥିନିମନ୍ତେ ଯୁଧିଷ୍ଠିର କଦାପି ଚିନ୍ତିତ ହୋଇ ନାହାନ୍ତି । ନିଜ ଭାଇମାନଙ୍କ ପ୍ରତି ସେ କଦାପି କ୍ରୁଦ୍ଧ ହୋଇ ନାହାନ୍ତି ଏବଂ ଜ୍ୟେଷ୍ଠ ଭ୍ରାତାର ସ୍ନେହରୁ ବଞ୍ଚିତ କରି-ନାହାନ୍ତି । ନକୁଳ ଓ ସହଦେବ ବିମାତାର ସନ୍ତାନ ହେଲେ ମଧ୍ୟ ସେମାନଙ୍କ ପ୍ରତି ତାଙ୍କ ବ୍ୟବହାରରେ କୌଣସି ପ୍ରକାର କୃତ୍ରିମତା ପ୍ରକାଶ ପାଇନାହିଁ । କନିଷ୍ଠ ଭ୍ରାତୃବର୍ଗଙ୍କର ମଧ୍ୟ ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ଅଚଳା ଭକ୍ତି । ତାଙ୍କର ଆଦେଶକୁ ଅନ୍ୟ ଭାଇମାନେ ରାଜାଦେଶ ଭାବେ ପାଳନ କରନ୍ତି । ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଦୁର୍ଦ୍ଦଶାର ହେତୁ ହେଲେ ସୁଦ୍ଧା ତାଙ୍କ ପ୍ରତି ଯୁଧିଷ୍ଠିରଙ୍କର ଅନାବିଳ ଭ୍ରାତୃପ୍ରେମ ତାଙ୍କ ଚରିତ୍ରର ଅନ୍ୟତମ ବୈଶିଷ୍ଟ୍ୟ । ବନ ପର୍ବରେ ଚିତ୍ରସେନ ଗନ୍ଧର୍ବ ଦ୍ୱାରା ରଥରେ ବନ୍ଧା ହୋଇଥିବା ଦୁର୍ଯ୍ୟୋଧନର ଦୁରବସ୍ଥା ଦେଖି ତାଙ୍କୁ ରକ୍ଷା କରିବା ନିମନ୍ତେ ସେ ଅର୍ଜ୍ଜୁନଙ୍କୁ ଆଦେଶ ଦେଇ କହିଛନ୍ତି—

"ସୋଦର ସମ୍ପଦ ହେଲେ ବହୁତ ଅଛି ଧର୍ମେ
ଶତ୍ରୁକୁ ରଖିଲେ କଥା ରହିବ ଜନ୍ମେ ଜନ୍ମେ ।"

( ବନପର୍ବ—ପୃ-୧୯ )

ଆଦର୍ଶ ପତି ଭାବେ ଦ୍ରୌପଦୀଙ୍କ ପ୍ରତି ଯୁଧିଷ୍ଠିରଙ୍କ ବ୍ୟବହାରରେ ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ତାଙ୍କ ବ୍ୟବହାରରେ ଜ୍ୟେଷ୍ଠ ପତିର ମୁରବୀତ୍ୱ ଥିଲାଭଳି ମନେ ହୁଏ । ତାଙ୍କର ଆଦର୍ଶ ବ୍ୟକ୍ତିତ୍ୱ ଓ ବଳିଷ୍ଠ ଚରିତ୍ରବତ୍ତାରେ ଦ୍ରୌପଦୀ ଅତ୍ୟନ୍ତ ମୁଗ୍ଧା ଥିଲେ । ତାଙ୍କ ମନରେ ସର୍ବଦା ଯୁଧିଷ୍ଠିରଙ୍କ ପ୍ରତି ଭକ୍ତି ଥିଲା ।

ସାରଳା ଦାସଙ୍କ ଲେଖନୀରେ ଯୁଧିଷ୍ଠିର ଜଣେ ଗାଉଁଲି ବୈଷ୍ଣବ ଭାବେ ମଧ୍ୟ ଚିତ୍ରିତ ହୋଇଛନ୍ତି । ଅନ୍ୟ ଭାଇମାନେ ଆମିଷ ଭକ୍ଷଣ କରୁଥିଲେ ମଧ୍ୟ ଯୁଧିଷ୍ଠିର ନିରାମିଷାଶୀ ଥିବାର "ଯୁଧିଷ୍ଠି ଦେବ ମୃଗମାଂସ ନ ଭୁଞ୍ଜନ୍ତି" ( ବନପର୍ବ ) ପଙ୍‌କ୍ତିରୁ ଜଣାଯାଏ ।

ଯୁଧିଷ୍ଠିର ଦୟାର ଅବତାର । ସୁହାଣୀ କନ୍ୟାର ଜୀବନ ରକ୍ଷା କରିବାକୁ ଯାଇ ସେ ବାନପ୍ରସ୍ଥ ଜୀବନରେ ମଧ୍ୟ ତାର ପାଣିଗ୍ରହଣ କରିଛନ୍ତି । ଅବଶ୍ୟ ଏହା ପଛରେ ଅନ୍ୟ ଭାଇମାନଙ୍କର ସମ୍ମତି ରହିଛି । ସାରଳା ମହାଭାରତରେ ଯୁଧିଷ୍ଠିର ତ୍ୟାଗର ଶୀର୍ଷରେ ଉପନୀତ । ତାଙ୍କ ତ୍ୟାଗର ଚରମ ନିଷ୍ଠା ପ୍ରତିପାଦିତ ହୋଇଛି, ଯେତେବେଳେ ସେ ମୋହ ମାୟା ଇତ୍ୟାଦିର ଊର୍ଦ୍ଧ୍ୱରେ ରହି ରାଜ୍ୟ ତ୍ୟାଗ କରିବା ନିମନ୍ତେ ପ୍ରୟାସ କରିଛନ୍ତି ଏବଂ ରାଜ୍ୟ ଶାସନକୁ ଜଞ୍ଜାଳ ମନେ କରିଛନ୍ତି ।

ଯୁଧିଷ୍ଠିର ଏହିପରି ଏକ ଆଦର୍ଶ ଚରିତ୍ର ହୋଇଥିବାରୁ ତାଙ୍କୁ ମହାଭାରତର ଆଦର୍ଶ ନାୟକ ରୂପେ ସାଧାରଣତଃ ଗ୍ରହଣ କରାଯାଇଥାଏ ।

## ଭୀମ :

'ମହାଭାରତର ଭୀମ ଚରିତ୍ର ଓଡ଼ିଆ ଗାଁ ଗହଳରେ ଏକ ବପୁବନ୍ତ ଗୁଣ୍ଡାର ଚରିତ୍ର— ଆହାର, ବିହାର ମୈଥୁନରେ ସେ ଏକ ମନୁଷ୍ୟରୂପୀ ରାକ୍ଷସ ।" ବ୍ୟାସଦେବଙ୍କ ଭୀମସେନ ବୀର, ବିବେକୀ ଓ ଗମ୍ଭୀର ସ୍ୱଭାବ ସମ୍ପନ୍ନ; ମାତ୍ର ସାରଳା ଦାସ ନିଜ ଗ୍ରନ୍ଥରେ ଭୀମଙ୍କୁ ଏପରି ଏକ ଚରିତ୍ର ଭାବେ ଗ୍ରହଣ ନ କରି ଏକ ସ୍ୱତନ୍ତ୍ର ଚରିତ୍ର ରୂପେ ଗ୍ରହଣ କରିଛନ୍ତି । ତତ୍କାଳୀନ ପୁରପଲ୍ଲୀର ଶିକ୍ଷାଦୀକ୍ଷାହୀନ, ପ୍ରତିହିଂସା ପରାୟଣ ଏକ ଅତି ସାଧାରଣ ବ୍ୟକ୍ତି ସୃଷ୍ଟି ହିଁ ତାଙ୍କର ଲକ୍ଷ୍ୟ ଥିଲା । ତେଣୁ ଭୀମଙ୍କୁ ସାରଳା ଦାସ 'ଭୀମା' ଭାବେ ଚିତ୍ରଣ କରିଅଛନ୍ତି କହିଲେ ଅଯଥାର୍ଥ ହେବ ନାହିଁ ।

ଜନ୍ମ ସମୟରୁ ଭୀମର ବୀରତ୍ୱ ପ୍ରକାଶ ପାଇଅଛି । ବାଲ୍ୟକାଳରେ ପଦାଘାତରେ ବ୍ୟାଘ୍ରକୁ ଯମପୁର ପଠାଇବାରୁ ଆରମ୍ଭ କରି ଶତଶୃଙ୍ଗ ପର୍ବତର ଶୃଙ୍ଗ ଚୂର୍ଣ୍ଣ କରିବା ପର୍ଯ୍ୟନ୍ତ ବୃତ୍ତାନ୍ତ ଆଲୋଚ୍ୟ ଗ୍ରନ୍ଥରେ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଅଛି । ଶୃଙ୍ଗ ଭଗ୍ନ ହେବାରୁ ଶତଶୃଙ୍ଗ ଅଭିଶାପ ଦେଲେ— "ଆରେ ଆରେ ଭୀମା ତୁ ପ୍ରଥମ ଯୁଦ୍ଧେ ହାରି ।" କିନ୍ତୁ ଦ୍ୱିତୀୟ ଥର ଯୁଦ୍ଧ କରିବା ସମୟରେ ଶତଶୃଙ୍ଗଙ୍କୁ ସ୍ମରଣ କଲେ ଭୀମ ଶତ ସିଂହର ଶକ୍ତି ପାଇବ, ଏବଂ ତାକୁ କେହି ପରାସ୍ତ କରିପାରିବେ ନାହିଁ । ଯଥାର୍ଥରେ ଭୀମର ଜୀବନରେ ତାହାହିଁ ଘଟିଛି । ଯେଉଁଠି ଏବଂ ଯେତେବେଳେ ସେ ନିଜେ ବା ପାଞ୍ଚଭାଇ କୌଣସି ଦୁର୍ଦ୍ଦାନ୍ତ ରାକ୍ଷସର ସମ୍ମୁଖୀନ ହୋଇଛନ୍ତି ସେଠାରେ ସେ ରାକ୍ଷସକୁ ବଧ କରି ନିଜର ପରାକ୍ରମ ପ୍ରଦର୍ଶନ କରିଛି । କର୍ମୁଣୀ, କନ୍ଦଣୀ, ବକ, ପାଣ୍ଡବାସୁର, ଗୋସିଂହ, ମେରୁଶୈଳ, କପାସୁର ଆଦି ରାକ୍ଷସଙ୍କ ନିଧନରେ ଭୀମର ଅସୀମ ବୀରତ୍ୱ ପ୍ରଦର୍ଶିତ । ଦ୍ରୌପଦୀ ସ୍ୱୟମ୍ବର ପରେ ସେଠାରେ ସମବେତ ଅସଫଳ ଯୋଦ୍ଧା ଓ ରାଜାମାନେ ଭିକ୍ଷାର୍ଥୀ ବ୍ରାହ୍ମଣ (ପଞ୍ଚପାଣ୍ଡବ) ଙ୍କଠାରୁ ଦ୍ରୌପଦୀଙ୍କୁ ଛଡ଼ାଇ ନେବାକୁ ବସିଛନ୍ତି । ଏହା ଦେଖି ଭୀମ ରାଗରେ

ଗୋଟାଏ ତେନ୍ତୁଳି ଗଛ ଉପାଡ଼ି ଆକ୍ରମଣକାରୀଙ୍କୁ ମସ୍ତକ ପ୍ରହାର କରିଅଛି । ପ୍ରଦ୍ୱେଷୀ ମଲ୍ଲ ସହିତ ଯୁଦ୍ଧ, ବ୍ୟାଘ୍ର ସିଂହମାନଙ୍କ ସହିତ ଖେଳ କସରତ ଇତ୍ୟାଦି ବର୍ଣ୍ଣନାରେ ଭୀମର ବୀରତ୍ୱ ଫୁଟି ଉଠିଛି ।

ଯେତେ ଖାଇଲେ ମଧ୍ୟ ଭୀମର କ୍ଷୁଧା ମେଣ୍ଟେନା । ବାଲ୍ୟକାଳରେ ମାତାଙ୍କ ଅନୁପସ୍ଥିତିରେ ରୋଷେଇଘରେ ପଶି ଲୁଚେଇ ଖାଇବା ଅଭ୍ୟାସ ହେତୁ ପଣ୍ଡୁଙ୍କ ଦ୍ୱାରା ଭର୍ତ୍ସିତ ହୋଇଥିବା ଘଟଣା ପୂର୍ବରୁ ବର୍ଣ୍ଣିତ ହୋଇଅଛି । ଶାଳ ଗଛର ଗଣ୍ଡିକୁ ଯେ ଦାନ୍ତକାଠି ଭାବେ ବ୍ୟବହୃତ କରିପାରେ, ଷାଠିଏ ପଙ୍କତି ଖାଦ୍ୟରେ ତାର କ୍ଷୁଧାର ଅବସାନ ହେବା କ'ଣ ସମ୍ଭବ ? ଓଡ଼ିଶାର ସାଧାରଣ କୃଷକ ଭଳି ଭୀମର ସ୍ୱାଦୁ ଅସ୍ୱାଦୁର ବିଗ୍ଭର ନ ଥାଏ ।

ଭୀମ ହୁଣ୍ଡା, ଗୁଣ୍ଡା ଓ ହୁରୁମା । ଏଣୁ ତା'ର କଥାବାର୍ତ୍ତାରେ ଅସଂଯମତା ଲକ୍ଷ୍ୟ କରାଯିବା ସ୍ୱାଭାବିକ । ବହୁସ୍ଥଳରେ ଯୁଧିଷ୍ଠିର, ଅର୍ଜୁନ, ଶ୍ରୀକୃଷ୍ଣ, ଦ୍ରୌପଦୀ ଓ ମାତା କୁନ୍ତୀଙ୍କୁ ସେ ଭର୍ତ୍ସନା କରିଥିଲେ ମଧ୍ୟ ସେମାନେ ତାକୁ କ୍ଷମା ଦେଇଅଛନ୍ତି । କାରଣ ଭୀମର ନିର୍ବୋଧତା ବିଷୟରେ ସେମାନେ ସମ୍ପୂର୍ଣ୍ଣ ଅବଗତ ଥିଲେ । ଆଶ୍ରମିକ ପର୍ବରେ ପୁତ୍ରମାନଙ୍କ ମୃତ୍ୟୁରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଦୁଃଖରେ ଭାଙ୍ଗିପଡ଼ି ସେମାନଙ୍କର ଶ୍ରାଦ୍ଧ ନିମନ୍ତେ ଗୟା ଗମନ କରିଛନ୍ତି । ଶ୍ରାଦ୍ଧ ସମାପନ କରି ପରିଶେଷରେ ଧୃତରାଷ୍ଟ୍ର ସାଧୁବେଶ ଧାରଣପୂର୍ବକ ବନଗମନ କରିଛନ୍ତି । ଏହି ସମୟରେ ଭୀମ ତାଙ୍କୁ ତାଚ୍ଛଲ୍ୟ କରି କହିଛି—

"ଭୀମସେନ ବୋଲଇ ତାତ ବୃଦ୍ଧ ହଂସ ପ୍ରାୟେ
ବଂଶ ବର୍ଗ ଭକ୍ଷିଣ ତପୋଧନା ବେଶ ହୋୟେ ।"

( ପୃ-୨୭ )

ଭୀମ ପାଖରେ ସ୍ମରଣ ଶକ୍ତିର ଖୁବ୍ ଅଭାବ । ଦୁର୍ଯ୍ୟୋଧନଙ୍କୁ ଅପମାନିତ କରିବା ନିମନ୍ତେ ତାଙ୍କୁ 'ଗୋଳକପୁତ୍ର' ବୋଲି ସମ୍ବୋଧନ କରିବାକୁ ଶ୍ରୀକୃଷ୍ଣ ବାରମ୍ବାର ଭୀମକୁ ଶିଖାଇଛନ୍ତି; ମାତ୍ର ଭୀମ ଏହା ମନେ ରଖିପାରି ନାହିଁ । ପାହାନ୍ତା ପହରରୁ ଉଠି ଶ୍ରୀକୃଷ୍ଣଙ୍କ କହିଥିବା କଥା ମନେ ନ ପଡ଼ିବାରୁ ସହଦେବଙ୍କୁ ସ୍ମରଣ କରାଇଦେବା ନିମନ୍ତେ ସେ ବାରମ୍ବାର କହିଛି ଏବଂ ସହଦେବ 'ଗୋଳକ ପୁତ୍ର' ବୋଲି ମନେ ପକାଇ ଦେବାରୁ ସେ ବାରମ୍ବାର ଘୋଷିଛି ।

ଭୀମ ବିରାଟ କର୍ମଯୋଗୀ । ଧର୍ମ, ପୂଜା, ଆଗୃହିତ ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅଜ୍ଞ । ତା'ର ଅଜ୍ଞତାର ପରିଚୟ ମିଳେ ବନବାସ ସମୟରେ । ଗଣ୍ଡକୀ ନଦୀ ତୀରରେ ଶାଳଗ୍ରାମ ଶିଳାକୁ ପଥର ପରି ଧୋଇ ଗୋଡ଼ରେ ଗଡ଼ାଇ ଖେଳୁଥିବା ସମୟରେ

ଶ୍ରୀକୃଷ୍ଣ ବ୍ରହ୍ମଶିଳାକୁ ପାଦରେ ଗଡ଼ାଇବା ମହାପାପ ବୋଲି ଉପଦେଶ ଦେଇଛନ୍ତି । ଭୀମ ଏହା ଶୁଣି ଉତ୍ତର ଦେଇଛି –

"ଦୁଇଗୋଟା ପିଟିଲେ ସେଥୁଂ ବାହାର ହୋଇବ ଅଗ୍ନି
ପାଦରେ ଘଷିଲେ ଗୁଣ୍ଡ଼ଇ ଦେବ ମଳି ।"

( ବନପର୍ବ )

ଭୀମ ଶୃଙ୍ଗାର-ବିଶାରଦ ଭାବରେ ମଧ୍ୟ ସାରଳାଙ୍କ ଲେଖନୀରେ ବର୍ଣ୍ଣିତ । "ଆହାରେ, ସଂଗ୍ରାମେ, ଶୃଙ୍ଗାରେ ଅଟଇ ଅଦ୍ଭୁତ" ( ମ. ପ ପୃ-୧୫ ) ଭୀମ ଚରିତରେ ଫୁଟି ଉଠିଛି । ହିଡ଼ମ୍ବିକା ରାକ୍ଷସୀ ସହିତ ଭୀମର ସାତବର୍ଷ ଶୃଙ୍ଗାର ପରେ ଘଟୋତ୍କଚ ଜନ୍ମ ହୋଇଥିବା କଥା ସାରଳା ମହାଭାରତରେ ଅଛି । ଦ୍ରୌପଦୀ ସ୍ୱୟମ୍ବର କାଳରେ ତାଙ୍କୁ ଏକାକୀ ବିବାହ କରିବା ନିମନ୍ତେ ଭୀମ ମନସ୍ଥ କରିଛି ଏବଂ ଆବଶ୍ୟକ ହେଲେ ଅନ୍ୟଭାଇମାନଙ୍କୁ ଯୁଦ୍ଧରେ ନିହତ କରି ଦ୍ରୌପଦୀଙ୍କୁ ହିଡ଼ମ୍ବିକା ପୁରକୁ ନେଇ ରଖିବାର ଇଚ୍ଛା ପୋଷଣ କରିଛି । କାଳଷ୍ଠି ରାକ୍ଷସୀ ସହିତ ଭୀମର ଶୃଙ୍ଗାର ଅତି ଅଶ୍ଳୀଳ ଭାବେ କବି ବର୍ଣ୍ଣନା କରିଅଛନ୍ତି, ଯହିଁରୁ ଭୀମର ଶୃଙ୍ଗାର-ଲାଳସା ବେଶ୍ ଅନୁମିତ ।

ଶୃଙ୍ଗାର ରଚିଲି ଭୀମ ସେ ଦାନବୀର ତୁଲେ

× × ×

କାମେନୀ କଳଂକ ଛଡ଼ାଇଲି ନେଇ ଦୂରେ
ଅନ ଦନ୍ତ ରେଖନାକ ଟାଳିଲି କଟି ଗୃପିଲି ଗଭୀରେ ।

× × ×

ମହାରତି ଶାହାସ୍ରେ ଜିତା ସେ ପାଣ୍ଡବ ବୀର ଭୀମ
ତାହାଙ୍କ ଗର୍ବେ କରି ଟେକିଲି ମହାତମ ।

× × ×

ଆଧାରେ ଶୃଙ୍ଗାରେ ଯେ ଅଦ୍ଭୁତ ଭୀମା
ସମରେ ଅଦ୍ଭୁତ ଅଟଇ ଗାରମା ।"

( ବନପର୍ବ—ପୃ-୩୪୭-୩୪୮ )

ଭୀମ ଉଗ୍ର ସ୍ୱଭାବସମ୍ପନ୍ନ ଏବଂ ପ୍ରତିଶୋଧ ପରାୟଣ । ପ୍ରତିଶୋଧ ନେବା ନିମନ୍ତେ ତା'ର ହୃଦୟ ସର୍ବଦା ବ୍ୟାକୁଳ । କେବଳ ଶତ୍ରୁର ରକ୍ତ ତାର ଲକ୍ଷ୍ୟ । ଦ୍ରୌପଦୀ ବସ୍ତ୍ର ହରଣର ପ୍ରତିଶୋଧ ନେବା ପାଇଁ ସେ ମହାଭାରତ ଯୁଦ୍ଧରେ ଦୁଃଶାସନକୁ

ନିହତ କରି ତା'ର ରକ୍ତରେ ସେ ପର୍ଯ୍ୟନ୍ତ ମୁକୁଳିତ ଦ୍ରୌପଦୀଙ୍କର ବେଣୀ ବନ୍ଧନ କରିଛି । ଭୀମର ପ୍ରତିଶୋଧ ପରାୟଣତାର ଅନେକ ଦୃଷ୍ଟାନ୍ତ ମହାଭାରତରେ ଆମେ ଦେଖିବାକୁ ପାଉ ।

ଭୀମ କେବଳ ହୁଣ୍ଡା ଗୁଣ୍ଡା ଓ ପ୍ରବଳ ପରାକ୍ରମଶାଳୀ ନୁହେଁ, ସେ ଜଣେ ଭଲ ରାନ୍ଧୁଣିଆ ମଧ୍ୟ । ସଭାପର୍ବରେ ରାଜସୂୟ ଯଜ୍ଞରେ ଉପସ୍ଥିତ ସମସ୍ତ ଅତିଥିଙ୍କୁ ଭୀମ ଏକାକୀ ବୋଷେଇ କରି ପରଷିଛି । ତନ୍ତ୍ରବିଦ୍ୟା ସହ ଏହି ରନ୍ଧନ ବିଦ୍ୟା ସେ କାମାକ୍ଷୀ ଦେବୀଙ୍କଠାରୁ ପ୍ରାପ୍ତ ହୋଇଥିବା ବର୍ଣ୍ଣିତ ଅଛି ।

ଭୀମ କପଟ ଶୂନ୍ୟ ଓ ସରଳ ବିଶ୍ୱାସୀ । ନିଜର କାର୍ଯ୍ୟଦକ୍ଷତା ଉପରେ ତା'ର ଅଖଣ୍ଡ ବିଶ୍ୱାସ । ସେ ହୁଣ୍ଡା ହେଲେ ମଧ୍ୟ ବଡ଼ଭାଇ ଯୁଧିଷ୍ଠିରଙ୍କ ପ୍ରତି ତା'ର ଅଟଳ ଭକ୍ତି । ସେ ଶ୍ରୀକୃଷ୍ଣଙ୍କୁ ଅବଜ୍ଞା କରିପାରେ; ମାତ୍ର ଯୁଧିଷ୍ଠିରଙ୍କ ଆଦେଶ ତା'ର ଶିରୋଧାର୍ଯ୍ୟ । ତା ନିଜ ସମ୍ମୁଖରେ ଦୁଃଶାସନ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ସମୟରେ ସେ କ'ଣ କଦାପି ନୀରବ ରହି ପାରିଥା'ନ୍ତା ? ଏ ପ୍ରକାର ଆଚରଣର ବିରୋଧ କରିବା ପାଇଁ ଯୁଧିଷ୍ଠିରଙ୍କ ଆଦେଶ ନ ଥିବାରୁ ସେ ନିଜର ଅସହାୟତା ପ୍ରକାଶ କରି ନୀରବ ଦର୍ଶକ ସାଜିବାକୁ ବାଧ୍ୟ ହୋଇଛି । ଦୃଢ଼ମାନସିକ ଶକ୍ତିର ଅଧିକାରୀ ଏହି ଚରିତ୍ର ପୁଣି ସ୍ୱର୍ଗାରୋହଣ ପର୍ବରେ ଶେଷ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କ ସହିତ ସ୍ୱର୍ଗଦ୍ୱାର ମୁଖରେ ପ୍ରବେଶ କରିବା ନିମନ୍ତେ ସମର୍ଥ ହୋଇ ପାରିଛି ।

ଆଲୋଚ୍ୟ ଗୁଣଗୁଡ଼ିକର ଅଧିକାରୀ ଭୀମସେନଙ୍କୁ କେତେକ ସମାଲୋଚକ ମହାଭାରତର ନାୟକ ଭାବେ ମଧ୍ୟ ଗ୍ରହଣ କରନ୍ତି ।

ପରିଶେଷରେ ବିଶିଷ୍ଟ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ଭୀମ ଚରିତ୍ର ସମ୍ବନ୍ଧୀୟ ମନ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ । "ଭୀମଠାରେ ଯୁଧିଷ୍ଠିରଙ୍କର ତାତ୍ତ୍ୱିକ-ଶୀତଳତା ନାହିଁ, କିମ୍ବା ବିଦୁରବନ୍ତ ପ୍ରଜ୍ଞା ନାହିଁ; ଅର୍ଜୁନଙ୍କ ଅଭିମାନ ପୁଣି ରସିକ ଜନୋଚିତ ବୈଦଗ୍ଧ୍ୟ ନାହିଁ କିମ୍ବା ନକୁଳଙ୍କ ବିଳାସ ପ୍ରିୟତା ନାହିଁ । XXX ଭୀମଠାରେ ପୁଣି ସହଦେବଙ୍କ କୁଟାଗ୍ରୟୀ ମୌନତା ନାହିଁ । ଭୀମ – ହୁରୁମା, ହୁଣ୍ଡା । ତା'ର ଆଗପଛ ବିଚାର ନାହିଁ । ଅଥଚ ସେ ସରଳ, ନିଷ୍କପଟ ଓ ଅତ୍ୟନ୍ତ ବିଶ୍ୱସ୍ତ ।"

## ଅର୍ଜୁନ :

ସାରଳା ମହାଭାରତରେ ଅର୍ଜୁନ ଏକ ଅନବଦ୍ୟ ଚରିତ୍ରର ଅଧିକାରୀ । କେତେକ ସମାଲୋଚକ ଅର୍ଜୁନଙ୍କୁ ମହାଭାରତର ନାୟକ ଭାବରେ ଗ୍ରହଣ କରିଥାନ୍ତି । ଧନୁର୍ବିଦ୍ୟାରେ ନିପୁଣ ଅର୍ଜୁନ ଯେଉଁଭଳି ବୀର, ସେହିଭଳି ମାତୃଭକ୍ତ, ଭ୍ରାତୃବତ୍ସଳ ଓ ଚରିତ୍ରବାନ । ସେ କେବଳ ଶ୍ରୀକୃଷ୍ଣଙ୍କର ପରମସଖା ନୁହନ୍ତି, ପରମ ଭକ୍ତ ମଧ୍ୟ ।

ଶ୍ରୀକୃଷ୍ଣ ବ୍ରହ୍ମଶିଳାକୁ ପାଦରେ ଗଡ଼ାଇବା ମହାପାପ ବୋଲି ଉପଦେଶ ଦେଇଛନ୍ତି । ଭୀମ ଏହା ଶୁଣି ଉତ୍ତର ଦେଇଛି –

"ଦୁଇଗୋଟା ପିଟିଲେ ଯେଥିଁ ବାହାର ହୋଏ ଅଗ୍ନି
ପାଦରେ ଘଷିଲେ ଗୁଣ୍ଡଉଇ ଦେବ ମଣି ।"

( ବନପର୍ବ )

ଭୀମ ଶୃଙ୍ଗାର-ବିଶାରଦ ଭାବରେ ମଧ୍ୟ ସାରଳାଙ୍କ ଲେଖନୀରେ ବର୍ଣ୍ଣିତ । "ଆହାରେ, ସଂଗ୍ରାମେ, ଶୃଙ୍ଗାରେ ଅଟଇ ଅଦ୍ୱିତୀୟ" ( ମ. ପ ପୃ-୧୫ ) ଭୀମ ଚରିତ୍ରରେ ଫୁଟି ଉଠିଛି । ହିଡ଼ିମ୍ବିକା ରାକ୍ଷସୀ ସହିତ ଭୀମର ସାତବର୍ଷ ଶୃଙ୍ଗାର ପରେ ଘଟୋତ୍କଚ ଜନ୍ମ ହୋଇଥିବା କଥା ସାରଳା ମହାଭାରତରେ ଅଛି । ଦ୍ରୌପଦୀ ସ୍ୱୟମ୍ବର କାଳରେ ତାଙ୍କୁ ଏକାକୀ ବିବାହ କରିବା ନିମନ୍ତେ ଭୀମ ମନସ୍ଥ କରିଛି ଏବଂ ଆବଶ୍ୟକ ହେଲେ ଅନ୍ୟଭାଇମାନଙ୍କୁ ଯୁଦ୍ଧରେ ନିହତ କରି ଦ୍ରୌପଦୀଙ୍କୁ ହିଡ଼ିମ୍ବିକା ପୁରକୁ ନେଇ ରଖିବାର ଇଚ୍ଛା ପୋଷଣ କରିଛି । କାଳଜ୍ୱ ରାକ୍ଷସୀ ସହିତ ଭୀମର ଶୃଙ୍ଗାର ଅତି ଅଶ୍ଳୀଳ ଭାବେ କବି ବର୍ଣ୍ଣନା କରିଅଛନ୍ତି, ଯହିଁରୁ ଭୀମର ଶୃଙ୍ଗାର-ଲାଳସା ବେଶ୍ ଅନୁମିତ ।

ଶୃଙ୍ଗାର ରଚିଲା ଭୀମ ସେ ଦାନବୀର କୁଳେ

× × ×

କାମେନୀ କଳଂକ ଛଡ଼ାଇଲା ନେଇ ଦୂରେ
ଅନ ଦନ୍ତ ରେଖନାକ ଟାଳିଲା କଟି ଗୁପିଲା ଗଭୀରେ ।

× × ×

ମହାରତି ଶାହାସ୍ରେ ଜିତା ସେ ପାଣ୍ଡବ ବୀର ଭୀମ
ତିଶ୍ରୀଲଙ୍ଗ ଗର୍ବେ କରି ଟେକିଲା ମହାତମ ।

× × ×

ଆଧାରେ ଶୃଙ୍ଗାରେ ସେ ଅଦ୍ୱିତୀୟ ଭୀମା
ସମରେ ଅଦ୍ୱିତୀୟ ଅଟଇ ଗାରମା ।"

( ବନପର୍ବ—ପୃ-୩୪୬-୩୪୮ )

ଭୀମ ଉଗ୍ର ସ୍ୱଭାବସମ୍ପନ୍ନ ଏବଂ ପ୍ରତିଶୋଧ ପରାୟଣ । ପ୍ରତିଶୋଧ ନେବା ନିମନ୍ତେ ତା'ର ହୃଦୟ ସର୍ବଦା ବ୍ୟାକୁଳ । କେବଳ ଶତ୍ରୁର ରକ୍ତ ତାର ଲକ୍ଷ୍ୟ । ଦ୍ରୌପଦୀ ବସ୍ତ୍ର ହରଣର ପ୍ରତିଶୋଧ ନେବା ପାଇଁ ସେ ମହାଭାରତ ଯୁଦ୍ଧରେ ଦୁଃଶାସନକୁ

ନିହତ କରି ତା'ର ରକ୍ତରେ ସେ ପର୍ଯ୍ୟନ୍ତ ମୁକ୍ତୁଳିତ ଦ୍ରୌପଦୀଙ୍କର ବେଣୀ ବନ୍ଧନ କରିଛି । ଭୀମର ପ୍ରତିଶୋଧ ପରାୟଣତାର ଅନେକ ଦୃଷ୍ଟାନ୍ତ ମହାଭାରତରେ ଆମେ ଦେଖିବାକୁ ପାଉ ।

ଭୀମ କେବଳ ହୁଣ୍ଡା ଗୁଣ୍ଡା ଓ ପ୍ରବଳ ପରାକ୍ରମଶାଳୀ ନୁହେଁ, ସେ ଜଣେ ଭଲ ରାନ୍ଧୁଣିଆ ମଧ୍ୟ । ସଭାପର୍ବରେ ରାଜସୂୟ ଯଜ୍ଞରେ ଉପସ୍ଥିତ ସମସ୍ତ ଅତିଥିଙ୍କୁ ଭୀମ ଏକାକୀ ଖିଆଇ କରି ପରିଷିଛି । ତନ୍ତ୍ରବିଦ୍ୟା ସହ ଏହି ରନ୍ଧନ ବିଦ୍ୟା ସେ କାମାକ୍ଷୀ ଦେବୀଙ୍କଠାରୁ ପ୍ରାପ୍ତ ହୋଇଥିବା ବର୍ଣ୍ଣିତ ଅଛି ।

ଭୀମ କପଟ ଶୂନ୍ୟ ଓ ସରଳ ବିଶ୍ୱାସୀ । ନିଜର କାର୍ଯ୍ୟଦକ୍ଷତା ଉପରେ ତା'ର ଅଖଣ୍ଡ ବିଶ୍ୱାସ । ସେ ହୁଣ୍ଡା ହେଲେ ମଧ୍ୟ ବଡ଼ଭାଇ ଯୁଧିଷ୍ଠିରଙ୍କ ପ୍ରତି ତା'ର ଅଚଳା ଭକ୍ତି । ସେ ଶ୍ରୀକୃଷ୍ଣଙ୍କୁ ଅବଜ୍ଞା କରିପାରେ; ମାତ୍ର ଯୁଧିଷ୍ଠିରଙ୍କ ଆଦେଶ ତା'ର ଶିରୋଧାର୍ଯ୍ୟ । ତା ନିଜ ସମ୍ମୁଖରେ ଦୁଃଶାସନ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ସମୟରେ ସେ କ'ଣ କଦାପି ନୀରବ ରହି ପାରିଥା'ନ୍ତା ? ଏ ପ୍ରକାର ଆଚରଣର ବିରୋଧ କରିବା ପାଇଁ ଯୁଧିଷ୍ଠିରଙ୍କ ଆଦେଶ ନ ଥିବାରୁ ସେ ନିଜର ଅସହାୟତା ପ୍ରକାଶ କରି ନୀରବ ଦର୍ଶକ ସାଜିବାକୁ ବାଧ୍ୟ ହୋଇଛି । ଦୃଢ଼ମାନସିକ ଶକ୍ତିର ଅଧିକାରୀ ଏହି ଚରିତ୍ର ପୁଣି ସ୍ୱର୍ଗାରୋହଣ ପର୍ବରେ ଶେଷ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କ ସହିତ ସ୍ୱର୍ଗଦ୍ୱାର ମୁଖରେ ପ୍ରବେଶ କରିବା ନିମନ୍ତେ ସମର୍ଥ ହୋଇ ପାରିଛି ।

ଆଲୋଚ୍ୟ ଗୁଣଗୁଡ଼ିକର ଅଧିକାରୀ ଭୀମସେନଙ୍କୁ କେତେକ ସମାଲୋଚକ ମହାଭାରତର ନାୟକ ଭାବେ ମଧ୍ୟ ଗ୍ରହଣ କରନ୍ତି ।

ପରିଶେଷରେ ବିଶିଷ୍ଟ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ଭୀମ ଚରିତ୍ର ସମ୍ବନ୍ଧୀୟ ମନ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ । "ଭୀମଠାରେ ଯୁଧିଷ୍ଠିରଙ୍କର ତାତ୍ତ୍ୱିକ-ଶୀତଳତା ନାହିଁ, କିମ୍ବା ବିଦୁରବନ୍ତ ପ୍ରଜ୍ଞା ନାହିଁ; ଅର୍ଜୁନଙ୍କ ଅଭିମାନ ପୁଣି ରସିକ ଜନୋଚିତ ବୈଦଗ୍ଧ୍ୟ ନାହିଁ କିମ୍ବା ନକୁଳଙ୍କ ବିଳାସ ପ୍ରିୟତା ନାହିଁ । XXX ଭୀମଠାରେ ପୁଣି ସହଦେବଙ୍କ କୁଟାଗ୍ରୀୟୀ ମୌନତା ନାହିଁ । ଭୀମ — ହୁରୁମା, ହୁଣ୍ଡା । ତା'ର ଆଗପଛ ବିଚାର ନାହିଁ । ଅଥଚ ସେ ସରଳ, ନିଷ୍କପଟ ଓ ଅତ୍ୟନ୍ତ ବିଶ୍ୱସ୍ତ ।"

## ଅର୍ଜୁନ :

ସାରଳା ମହାଭାରତରେ ଅର୍ଜୁନ ଏକ ଅନବଦ୍ୟ ଚରିତ୍ରର ଅଧିକାରୀ । କେତେକ ସମାଲୋଚକ ଅର୍ଜୁନଙ୍କୁ ମହାଭାରତର ନାୟକ ଭାବରେ ଗ୍ରହଣ କରିଥାନ୍ତି । ଧନୁର୍ବିଦ୍ୟାରେ ନିପୁଣ ଅର୍ଜୁନ ଯେଉଁଭଳି ବୀର, ସେହିଭଳି ମାତୃଭକ୍ତ, ଭ୍ରାତୃବତ୍ସଳ ଓ ଚରିତ୍ରବାନ । ସେ କେବଳ ଶ୍ରୀକୃଷ୍ଣଙ୍କର ପରମସଖା ନୁହନ୍ତି, ପରମ ଭକ୍ତ ମଧ୍ୟ ।

ପାଣ୍ଡବ ଓ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଆନୁଗତ୍ୟ ମୂଳ ମହାଭାରତ ଅନୁସରଣରେ ବର୍ଣ୍ଣିତ ।

ଅର୍ଜ୍ଜୁନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଥିବା ଅସୀମ ଭକ୍ତିମତ୍ତା ପ୍ରକାଶିତ ହୋଇଛି ମଧ୍ୟ ପର୍ବରେ, ଯେତେବେଳେ ସେ ଶ୍ରୀକୃଷ୍ଣଙ୍କର ନବଗୁଞ୍ଜର ରୂପର ରହସ୍ୟ ଭେଦ କରିପାରିଛନ୍ତି । ମହାଭାରତ ଯୁଦ୍ଧର ଅସ୍ତ୍ରମାରମ୍ଭରେ ଶ୍ରୀକୃଷ୍ଣଙ୍କ ଅର୍ଜ୍ଜୁନଙ୍କୁ ଦେଇଥିବା ଗୁରୁତ୍ୱପୂର୍ଣ୍ଣ ଉପଦେଶ ପ୍ରସଙ୍ଗରୁ ଏ ଦୁଇଜଣଙ୍କ ମଧ୍ୟରେ ଥିବା ବନ୍ଧୁତ୍ୱ ଏବଂ ଭକ୍ତ-ଭଗବାନ ସମ୍ପର୍କ ଅତ୍ୟନ୍ତ ସ୍ପଷ୍ଟ ।

ଅର୍ଜ୍ଜୁନଙ୍କର ମାତୃଭକ୍ତି ମଧ୍ୟ ଅନବଦ୍ୟ । କୁନ୍ତୀ ଓ ଗାନ୍ଧାରୀଙ୍କ ଶିବପୂଜା ପ୍ରସଙ୍ଗରେ ଅର୍ଜ୍ଜୁନଙ୍କର ମାତୃଭକ୍ତି ଓ ବୀରତ୍ୱର ସୂଚନା ମିଳେ । ଏହି ପ୍ରସଙ୍ଗଟି ହେଉଛି, ଉଭୟ କୁନ୍ତୀ ଓ ଗାନ୍ଧାରୀ ବିଶ୍ୱେଶ୍ୱର ଶିବଙ୍କ ଉପାସିକା । ସେମାନଙ୍କ ମଧ୍ୟରେ ଏକଦା କଳହର ସୂତ୍ରପାତ ହୋଇଛି । କଥା ହେଉଛି, ପରଦିନ ପ୍ରଭାତରେ ଯେ ପ୍ରଥମେ ସହସ୍ର ସୁବର୍ଣ୍ଣ ଚମ୍ପକ ଆଣି ଶିବଙ୍କୁ ଆରାଧନା କରିବ, ଶିବ ତା'ର ହେବେ । କୁନ୍ତୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ମାତୃଭକ୍ତ ଅର୍ଜ୍ଜୁନ ମନଭେଦ ଶର ସାହାଯ୍ୟରେ କୁବେରପୁରୀରୁ ସହସ୍ର ସ୍ୱର୍ଣ୍ଣଚମ୍ପା ଆଣି ମନ୍ଦିରରେ ଗଦା କରି ଦେଇଛନ୍ତି । ଫଳରେ ମାତା କୁନ୍ତୀଙ୍କର ସମ୍ମାନ ବଢ଼ିଛି ।

ବନପର୍ବରେ ଚିତ୍ରସେନ ଗନ୍ଧର୍ବ ଦ୍ୱାରା ଯୁଦ୍ଧରେ ପରାସ୍ତ ହୋଇ ଦୁର୍ଯ୍ୟୋଧନ ରଥରେ ବନ୍ଧା ହୋଇଥିବା ସମୟରେ ଅର୍ଜ୍ଜୁନ ପୂର୍ବର ସମସ୍ତ ଶତ୍ରୁତା ଭୁଲି ଦୁର୍ଯ୍ୟୋଧନଙ୍କୁ ରକ୍ଷା କରିଛନ୍ତି । ଏହା ଫଳରେ ଭ୍ରାତୃପ୍ରେମର ଚରମ ପରାକାଷ୍ଠା ଅର୍ଜ୍ଜୁନଙ୍କ ଚରିତ୍ରରେ ପ୍ରତିଫଳିତ ହୋଇଛି । ଦୁର୍ଯ୍ୟୋଧନଙ୍କର ସମସ୍ତ ଅହମିକା ମିଳାଇ ଯାଇଛି । ସେ ଅର୍ଜ୍ଜୁନଙ୍କୁ ପ୍ରଶଂସା କରି କହିଛନ୍ତି—

"ମୋହୋର ପ୍ରାଣ୍ୟେକ ସୋଦର ତୋତେ ହାଦେ ନୋହୁ
ତୋହୋର ପ୍ରାଣ୍ୟେ ସୋଦର ମୋତେ ଜନ୍ମେ ଜନ୍ମେ ହେଉ ।"

(ବନପର୍ବ-ପୃ: ୨୨)

ଗୁରୁଜନମାନଙ୍କ ନିମନ୍ତେ ଭକ୍ତି, କନିଷ୍ଠମାନଙ୍କ ନିମନ୍ତେ ସ୍ନେହ, ଆତ୍ମୀୟ ସ୍ୱଜନଙ୍କ ନିମନ୍ତେ ଶ୍ରଦ୍ଧା ଓ ମମତା ଅର୍ଜ୍ଜୁନଙ୍କ ମନରେ ସର୍ବଦା ଅତୁଟ । ଉଦାହରଣ ସ୍ୱରୂପ ମହାଭାରତ ଯୁଦ୍ଧର ଆରମ୍ଭରେ ରଣାଙ୍ଗନର ମଧ୍ୟ ଭାଗରେ ରଥାରୂଢ଼ ଅର୍ଜ୍ଜୁନ ନିଜର ଜ୍ଞାତି କୁଟୁମ୍ବ, ବନ୍ଧୁ ସହୋଦରାଦିଙ୍କୁ ଶତ୍ରୁ ପକ୍ଷରେ ଦେଖି ଦାରୁଣ ଦୁଃଖ ଅନୁଭବ କରିଛନ୍ତି ଏବଂ ସ୍ଥିର କରିଛନ୍ତି—ସର୍ବହରା ହୋଇ ବୁଲିବେ ସିନା, ସେମାନଙ୍କୁ ବିନାଶ କରିବେ ନାହିଁ । ମାତ୍ର ଶ୍ରୀକୃଷ୍ଣ ତାଙ୍କୁ ବିଶ୍ୱରୂପ ପ୍ରଦର୍ଶନ ପୂର୍ବକ କର୍ତ୍ତବ୍ୟରେ ଅବହେଳା ନ କରିବା ନିମନ୍ତେ ଉପଦେଶ ଦେଇଛନ୍ତି ।

ଗ୍ରନ୍ଥର ବହୁ ସ୍ଥଳରେ ଅର୍ଜୁନଙ୍କ ବଳିଷ୍ଠ ଚରିତ୍ରର ପରିଚୟ ମିଳେ । ଗ୍ରନ୍ଥକାର ଅର୍ଜୁନଙ୍କ ଚରିତ୍ରକୁ ଅତି ସଂଯମୀ ଓ ଯୋଗୀର ଚରିତ୍ର ରୂପେ ଚିତ୍ରଣ କରିଅଛନ୍ତି । ସୁଭଦ୍ରାଙ୍କ ପ୍ରେମକୁ ଅର୍ଜୁନ ବାରମ୍ବାର ପ୍ରତ୍ୟାଖ୍ୟାନ କରିଛନ୍ତି । ପରେ ଅବଶ୍ୟ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ସେ ସୁଭଦ୍ରାଙ୍କୁ ହରଣ କରି ନେଇ ବିବାହ କରିଛନ୍ତି । ବନ ପର୍ବରେ ନିବାତ-ଦୈତ୍ୟ କର୍ତ୍ତୃକ ଅପହୃତା ରମ୍ଭାର କନ୍ୟା ହାରାବତୀ ଅର୍ଜୁନଙ୍କ ରୂପରେ ବିମୋହିତା ହୋଇପଡ଼ିଛି ଏବଂ କାମାଶକ୍ତା ହୋଇ ଶୃଙ୍ଗାର ନିମନ୍ତେ ନିଜକୁ ତାଙ୍କ ନିକଟରେ ଅର୍ପଣ କରିଛି; ମାତ୍ର ଅର୍ଜୁନ ସ୍ୱଚରିତ୍ରର ବୈଶିଷ୍ଟ୍ୟ ପ୍ରଦର୍ଶନ କରି ତାକୁ କହିଛନ୍ତି

"ପରଦାରା ଶୃଙ୍ଗାର ଗୋ ନୋହିଇ ଯୁଗତେ
ସେହୁଁତେ ବଡ଼ ଧର୍ମ ମୁଂ ଲଙ୍ଘିବି କେମନ୍ତେ ।"

(ବନପର୍ବ—ପୃ ୫୩୨)

ସେହି ବନପର୍ବରେ ଅର୍ଜୁନ କାମାଶକ୍ତା ଉର୍ବଶୀର ଶୃଙ୍ଗାର ନିବେଦନ କାଳରେ ଅର୍ଜୁନ ତାଙ୍କୁ ମାତା ବୋଲି ସମ୍ବୋଧନ କରିଛନ୍ତି । ଫଳରେ ଅର୍ଜୁନଙ୍କ ଚରିତ୍ରର ମହତ୍ତ୍ୱ ବହୁଗୁଣିତ ହୋଇଅଛି ।

ସ୍ଥୂଳତଃ ଦେଖିବାକୁ ଗଲେ, ଅର୍ଜୁନଙ୍କ ଚରିତ୍ରରେ ଦେବତ୍ୱ ଓ ମାନବତ୍ୱର ଅପୂର୍ବ ସମନ୍ୱୟ ସଙ୍ଘଟିତ ହୋଇଅଛି ।

## ଦୁର୍ଯ୍ୟୋଧନ :

ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ଶତପୁତ୍ର ମଧ୍ୟରେ ଦୁର୍ଯ୍ୟୋଧନ ହେଉଛନ୍ତି ଜ୍ୟେଷ୍ଠ । ସମସ୍ତ ପ୍ରକାର କନ୍ଦଳର ମୂଳ କାରଣ ହେଉଛନ୍ତି ସେ । ପିଲିଦିନ ଖେଳରୁ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଶତ୍ରୁତାର ସୂତ୍ରପାତ ହୋଇଛି । ରାଜସଭା ମଧ୍ୟରେ ଭୀମଙ୍କୁ ଦୁର୍ଯ୍ୟୋଧନ ଅନେକବାର 'ପବନ ପୁତ୍ର' ବୋଲି ସମ୍ବୋଧନ କରିଛନ୍ତି; ମାତ୍ର ଭୀମ ଥରେ 'ଗୋଳକପୁତ୍ର' ବୋଲି ସମ୍ବୋଧନ କରିବାରେ ଅଭିମାନୀ ଦୁର୍ଯ୍ୟୋଧନ ଅପମାନରେ ଜର୍ଜରିତ ହୋଇପଡ଼ିଛନ୍ତି । 'ଗୋଳକପୁତ୍ର'ର ଗୋଟିଏ ଅର୍ଥ —'ବିଧବା ଗର୍ଭରୁ ଜାତ ସନ୍ତାନ' ଏବଂ ଅନ୍ୟ ଅର୍ଥଟି 'ସାହାଡ଼ା ଗଛର ପୁତ୍ର' । ଏହି ଅପମାନ ଦୁର୍ଯ୍ୟୋଧନଙ୍କୁ ପାଣ୍ଡବମାନଙ୍କ ବିରୁଦ୍ଧାଚରଣ ନିମନ୍ତେ ଖୋରାକ ଯୋଗାଇଛି ଏବଂ ମହାଭାରତ ଯୁଦ୍ଧ ନିମନ୍ତେ ବୀଜ ବପନ କରିଅଛି ।

ନିଜର ଜନ୍ମ ରହସ୍ୟ ଜାଣିବା ପରେ ସେ କ୍ରୋଧରେ ଗର୍ଜିଉଠିଛନ୍ତି । ଗାନ୍ଧାରୀଙ୍କ ପିତା ଗାନ୍ଧାରସେନଙ୍କୁ ଆକ୍ଷେପ କରି ସେ କହିଛନ୍ତି—

"ଗାନ୍ଧାରସେନ ପାମର କନା ସ୍ନେମନ୍ତ କୃତ କଲ
ବିଧବା କନ୍ୟାକୁ କେମନ୍ତେ ମୋ ପିତାକଇଁ ଦଲ ।"

(ଆଦିପର୍ବ —ପୃ: ୪୫୯)

ଏଥିରୁ ଦୁର୍ଯ୍ୟୋଧନଙ୍କ କ୍ରୋଧଭାବ ଓ ଗୁରୁଜନଙ୍କ ପ୍ରତି ଅବଜ୍ଞା ଭାବ ପ୍ରକାଶ ପାଉଛି ।

ଦୁର୍ଯ୍ୟୋଧନ ଅତି ନିଷ୍ଠୁର ଓ ପ୍ରତିହିଂସା ପରାୟଣ । ସେ ମାଉଳ କୁଳର ସର୍ବନାଶ କରିବା ନିମନ୍ତେ ମାତାମହ ବୃଦ୍ଧ ଗାନ୍ଧାରସେନଙ୍କ ସହିତ ତାଙ୍କର ସମସ୍ତ ପରିବାରବର୍ଗଙ୍କୁ ତିଳତିଳ ହତ୍ୟା କରିଛନ୍ତି; କେବଳ ବଞ୍ଚିଯାଇଛି ମନ୍ଦମନ୍ଦ ମାଉଳ ଶକୁନି । ଶକୁନିର ପରାମର୍ଶକ୍ରମେ ପଶାଖେଳରେ ପାଣ୍ଡବମାନଙ୍କୁ ପରାସ୍ତ କରି ସେମାନଙ୍କୁ ଦୁର୍ଯ୍ୟୋଧନ ବନଗାମୀ କରାଇଛନ୍ତି । କେବଳ ସେତିକି ନୁହେଁ, ପାଣ୍ଡବମାନଙ୍କୁ ବିନାଶ କରିବା ନିମିତ୍ତ ଜତୁଗୃହ ନିର୍ମାଣ, ଭୀମକୁ ବିଷ ଲଡ଼ୁ ପ୍ରଦାନ ପ୍ରଭୃତି ବିଭିନ୍ନ ଘଟଣାରୁ ତାଙ୍କର ଷଡ଼ଯନ୍ତ୍ରକାରୀ ମନୋଭାବ ଓ ପ୍ରତିହିଂସା ପରାୟଣତାର ସ୍ପଷ୍ଟ ପରିଚୟ ମିଳେ ।

ଦ୍ରୌପଦୀ ବସ୍ତ୍ର ହରଣ ପ୍ରସଙ୍ଗରେ କୁରୁପତି ଦୁର୍ଯ୍ୟୋଧନଙ୍କୁ ନିର୍ଲଜ, ନୀଚ ତଥା କାମୁକ ଭାବରେ କବି ଚିତ୍ରଣ କରିଛନ୍ତି ବିବସନା ସ୍ତ୍ରୀର ନଗ୍ନରୂପ ଦେଖିବାର ପ୍ରବଳ ପ୍ରୟାସ ନେଇ ଦୁର୍ଯ୍ୟୋଧନ ଦୁଃଶାସନଙ୍କୁ ଆଦେଶ ଦେଉଛନ୍ତି —

"ସଭାରେ ଫେଡ଼ିତ ଦ୍ରୌପଦୀ ଅଂଗରୁ ବସନ
ସଭାଜନେ ଦେଖନ୍ତୁ ତା ଜାନୁ ଯଉବନ ।"

( ସଭାପର୍ବ—ପୃ: ୪୯୦ )

ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପାଇଁ ପାଞ୍ଚଖଣ୍ଡ ପଡ଼ା ନିମନ୍ତେ ଦୁର୍ଯ୍ୟୋଧନଙ୍କୁ ଅନୁରୋଧ କରିଛନ୍ତି; ମାତ୍ର ଦୁର୍ଯ୍ୟୋଧନ ତାଙ୍କ ଅନୁରୋଧ ରକ୍ଷା କରି ନାହାନ୍ତି । ବରଂ ତାଙ୍କୁ 'ଗଉଡ଼ ହାଉଡ଼' କହି ବାରମ୍ବାର ଧିକ୍କାର କରିଛନ୍ତି । ରାଜ୍ୟ ଫେରାଇ ଦେବା ସମ୍ପର୍କୀୟ ରାଣୀ ଭାନୁମତୀଙ୍କ ବିନୀତ ଅନୁରୋଧକୁ ସେ ସମ୍ମାନ ଦେଇ ନାହାନ୍ତି । ଏଥିରୁ ଦୁର୍ଯ୍ୟୋଧନଙ୍କର ପରସ୍ୱାପହରଣ ମନୋଭାବର ଏକ ସ୍ପଷ୍ଟ ଚିତ୍ର ମିଳେ ।

ଦୁର୍ଯ୍ୟୋଧନଙ୍କୁ ଅପରିଣାମଦର୍ଶୀ ରୂପେ କବି ଚିତ୍ରଣ କରିଛନ୍ତି । ନିଜର ସାମର୍ଥ୍ୟ ଉପରେ ନିର୍ଭର କରି ଦୁର୍ଯ୍ୟୋଧନ ଗନ୍ଧର୍ବରାଜ ଚିତ୍ରସେନ ସହିତ ଯୁଦ୍ଧ କରି ପରାସ୍ତ ହୋଇଛନ୍ତି ଏବଂ ରଥରେ ବନ୍ଦୀଯୁକ୍ତ ହୋଇ ନିର୍ଯ୍ୟାତିତ ହୋଇଛନ୍ତି । ସମସ୍ତ ଶତ୍ରୁତା ପାଶୋରି ଅର୍ଜୁନ ତାଙ୍କୁ ରକ୍ଷା କରିଛନ୍ତି । ଏଥି ନିମନ୍ତେ ଅବଶ୍ୟ ଦୁର୍ଯ୍ୟୋଧନ ଅର୍ଜୁନଙ୍କୁ ପ୍ରଶଂସା କରିଛନ୍ତି ଏବଂ ଫଳତଃ ଅର୍ଜୁନଙ୍କ ମହିମାମୟତା ପ୍ରକଟିତ ହୋଇଛି ।

ଗୁରୁଜନମାନଙ୍କ ଉପଦେଶ ପାଳନ କରିବା ମଦମତ୍ତ ଦୁର୍ଯ୍ୟୋଧନର ଜାତକରେ ନାହିଁ । କାରାଗାର-ନିକ୍ଷିପ୍ତ 'ମାତୁଳ ବଂଶର ଜୀବିତ ଜଣେ ମାତ୍ର ମାମୁଁ ଶକୁନିର ଅସାଧାରଣ ବୁଦ୍ଧିମତ୍ତାରେ ମୁଗ୍ଧ ହୋଇ ସେ ତାକୁ ମୁକ୍ତ କରିଛନ୍ତି ଏବଂ ତା'ର 'ବିଷକୁମ୍ଭ ପୟୋମୁଖମ୍' ବ୍ୟବହାରରେ ପ୍ରୀତ ହୋଇ ତାକୁ ମନ୍ତ୍ରୀତ୍ୱ ପ୍ରଦାନ କରିଅଛନ୍ତି । ଏତାଦୃଶ କାର୍ଯ୍ୟର ଘୋର ବିରୋଧ କରିଛନ୍ତି ମାତା ଗାନ୍ଧାରୀ । ସେ ଉପଦେଶ ଦେଇଛନ୍ତି, ଶକୁନିକୁ ଏପରି ଏକ ଗୁରୁତ୍ୱପୂର୍ଣ୍ଣ ପଦବୀରେ ନ ରଖିବା ପାଇଁ ଏବଂ ତା'ର ଉପଦେଶ ଗ୍ରହଣ ନ କରିବା ପାଇଁ; ମାତ୍ର ଅପରିଣାମଦର୍ଶୀ ଦୁର୍ଯ୍ୟୋଧନ ଏ ଉପଦେଶକୁ ଅବଜ୍ଞା କରି ନିଜର ଧ୍ୱଂସପଥ ପରିଷ୍କାର କରିଅଛନ୍ତି ।

ଶତ୍ରୁର ନିଧନ ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ତଥାପି ଅନ୍ତଃସଲିଳା ଫଲ୍‌ଗୁ ପରି ଏହାଙ୍କ ଅନ୍ତରରେ ମଧ୍ୟ ସ୍ୱଜନ ନିମନ୍ତେ ସ୍ନେହର ଧାରା ପ୍ରଚ୍ଛନ୍ନ ଭାବେ ବହୁଥିଲା । ଅନେକୋଶ ଭାଇ, ବନ୍ଧୁଗଣ ତଥା ପୁତ୍ର ଲକ୍ଷଣ କୁମାରର ମୃତ୍ୟୁ ପରେ ରକ୍ତନଦୀ ସନ୍ତରଣ ସମୟରେ କୁରୁପତି ଦୁର୍ଯ୍ୟୋଧନଙ୍କ ଶୋକାକୁଳ ଅବସ୍ଥା ତାଙ୍କ ଆତ୍ମୀୟସ୍ୱଜନ ପ୍ରୀତିର ପରିଚୟ ଦିଏ । ଗଦାପର୍ବରେ ରକ୍ତନଦୀ ସନ୍ତରଣ କାଳର କରୁଣ ଦୃଶ୍ୟ ବର୍ଣ୍ଣନା ଯେ କୌଣସି ନିଷ୍ଠୁର ବ୍ୟକ୍ତିର ନୟନ ଲୋତକାପ୍ଳୁତ କରେ ।

ତଥାପି ଏ ପ୍ରକାର ଦୁର୍ଦ୍ଦଶା ସନ୍ଦର୍ଶନରେ ନିଷ୍ଠୁର ହୃଦୟ ତଥା ଦୁଷ୍ଟବୁଦ୍ଧି ଦୁର୍ଯ୍ୟୋଧନଙ୍କର ଅନ୍ତରରେ ପ୍ରତିହିଂସାର ଅନଳ ନିର୍ବାପିତ ହୋଇନାହିଁ । ନିଜ ପୁତ୍ର ନିଧନର ପ୍ରତିଶୋଧ ନେବା ନିମନ୍ତେ ମୃତ୍ୟୁ ପୂର୍ବରୁ ପାଣ୍ଡବଙ୍କ ପଞ୍ଚପୁତ୍ରଙ୍କର ମୃତ୍ୟୁ ଦର୍ଶନ ନିମନ୍ତେ ସେ ଇଚ୍ଛା ପ୍ରକାଶ କରିଛନ୍ତି । ମାତ୍ର ଶେଷରେ ଅଶ୍ୱତ୍ଥାମା ହାତରେ ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କ ଛିନ୍ନ ମସ୍ତକ ଦେଖି ତାଙ୍କ ମନରେ ଭାବାନ୍ତର ଆସିଛି । ସେ ଏହି ଦୃଶ୍ୟ ମାଧ୍ୟମରେ ମନଶ୍ଚକ୍ଷୁରେ ନିଜର ମୃତ ପୁତ୍ର ଲକ୍ଷ୍ମଣକୁମାରକୁ ଦେଖି ପାରିଛନ୍ତି । ଫଳତଃ ପିତୃତ୍ୱର କୋମଳତାରେ ତାଙ୍କ ହୃଦୟ ଦ୍ରବୀଭୂତ ହୋଇଯାଇଛି । ଶତ୍ରୁ-ପୁତ୍ରର ଛିନ୍ନ ମସ୍ତକ ଦେଖି ଆନନ୍ଦିତ ହେବା ପରିବର୍ତ୍ତେ ପିତାର ହୃଦୟ ତାଙ୍କର ବିଳପି ଉଠିଛି । ଶେଷରେ ଏହି ପଞ୍ଚପୁତ୍ରଙ୍କ ଛିନ୍ନ ମସ୍ତକ କୋଳରେ ଧରି ସେ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । କବିଙ୍କ ଭାଷାରେ—

ପାଞ୍ଚଂ କରି ମୁଣ୍ଡ କୋଳେ ଦେଖିଣ ଧୃତରାଷ୍ଟ୍ରି
ପ୍ରାଣ ବିସର୍ଜିଲା ମୂର୍ଚ୍ଛନା ଗଲା ଫାଟି ।"

( କାଉଁଶିକା ପର୍ବ—ପୃ. ୧୦)

ସାରଳା ଦାସଙ୍କ ଲେଖାରେ ଦୁର୍ଯ୍ୟୋଧନ 'ମାନଗୋବିନ୍ଦ' ନାମରେ ହିଁ ଖ୍ୟାତ । ତାଙ୍କ ସ୍କନ୍ଧରେ ସ୍ୱୟଂ ଲକ୍ଷ୍ମୀ ଅବସ୍ଥାନ କରନ୍ତି । ବ୍ୟାସଦେବଙ୍କ ଦୁର୍ଯ୍ୟୋଧନ

ମାନଗୋବିନ୍ଦ ନୂତନ ମତ୍ୟ; ମାତ୍ର ବ୍ୟାସଦେବଙ୍କ ଦୁର୍ଯ୍ୟୋଧନର ଗାମ୍ଭୀର୍ଯ୍ୟ, ସମ୍ମାନଜ୍ଞାନ ସାରଳା ଦାସଙ୍କ ଦୁର୍ଯ୍ୟୋଧନର ନାହିଁ । ବ୍ୟାସଦେବଙ୍କ ଦୁର୍ଯ୍ୟୋଧନ ବୀରଧର୍ମ ପାଳନ କରି କୁରୁକ୍ଷେତ୍ରାଙ୍ଗନରେ ମୃତ୍ୟୁବରଣ ପୂର୍ବକ ବୀରଜନୋଚିତ ସଦ୍‌ଗତି ଲାଭ କରିଥିଲେ । ସେଥିପାଇଁ ଯୁଧିଷ୍ଠିର ସ୍ୱର୍ଗରେ ଉପସ୍ଥିତ ହେବା ପୂର୍ବରୁ ସେ ସ୍ୱର୍ଗରେ ପ୍ରବେଶ କରି ପୁଣ୍ୟାତ୍ମାର ଆସନ ଲାଭ କରିସାରିଥିଲେ । ଏହା ଦେଖି କ୍ଷୁବ୍‌ଧ ହୋଇ ଯୁଧିଷ୍ଠିର ସ୍ୱର୍ଗ ପରିତ୍ୟାଗ କରି ନରକକୁ ଗମନ କରିଥିଲେ; କିନ୍ତୁ ସାରଳା ମହାଭାରତରେ ଏହି ଘଟଣାବଳୀ ସ୍ଥାନ ପାଇନାହିଁ । ଏଥିରେ ଦୁର୍ଯ୍ୟୋଧନ ନିଷ୍ଠୁର, ଆତ୍ମାଭିମାନୀ, ପ୍ରତିହିଂସା ପରାୟଣ, ନିର୍ଲଜ, କାମୁକ, ପରସ୍ତ୍ରୀପହରଣାକାଂକ୍ଷୀ, ଅପରିଣାମଦର୍ଶୀ ଏବଂ ଦୁଷ୍ଟବୁଦ୍ଧି ଭାବରେ ବର୍ଣ୍ଣିତ ହୋଇଛନ୍ତି ।

## କର୍ଣ୍ଣ :

ସାରଳା ମହାଭାରତର ଅନେକ ସ୍ଥଳରେ କର୍ଣ୍ଣଙ୍କ ସମ୍ବନ୍ଧରେ ବର୍ଣ୍ଣନା ଦେଖିବାକୁ ମିଳେ । ସାରଳା ଦାସଙ୍କ କର୍ଣ୍ଣ ଏକ ଅସାଧାରଣ ଚରିତ୍ର । ତାଙ୍କ ଲେଖନୀରେ କର୍ଣ୍ଣ ଅର୍ଜ୍ଜୁନଙ୍କ ଅପେକ୍ଷା ଶୌର୍ଯ୍ୟ, ବୀର୍ଯ୍ୟ, ପ୍ରଜ୍ଞା, ମାନବିକତା ଇତ୍ୟାଦିରେ ବଳି ଯାଇଛନ୍ତି । ଏଣୁ ସାରଳା ମହାଭାରତ ପାଠ କଲା ସମୟରେ ସ୍ଥାନେ ସ୍ଥାନେ ମନେହୁଏ, କର୍ଣ୍ଣଙ୍କୁ ନାୟକ ଭାବେ ସାରଳା ଦାସ ଗ୍ରହଣ କରିଛନ୍ତି ।

କର୍ଣ୍ଣଙ୍କ ଜନ୍ମ ବିବରଣୀରୁ ଜଣାଯାଏ — କୁନ୍ତୀ ଅପ୍ରାପ୍ତବୟସ୍କା କୁମାରୀ ଥିଲାବେଳେ ଦୁର୍ବାସାଙ୍କୁ ସେବାରେ ସନ୍ତୁଷ୍ଟ କରି ଏକ ମନ୍ତ୍ରପୂତ ମାଳା ପ୍ରାପ୍ତ ହୋଇ-ଛନ୍ତି । ମାଳାର ମାହାତ୍ମ୍ୟ ପରୀକ୍ଷା କରିବା ନିମନ୍ତେ କୁନ୍ତୀ ସୂର୍ଯ୍ୟଙ୍କୁ ସ୍ମରଣ କରିଛନ୍ତି । ସୂର୍ଯ୍ୟ ଦେବତା ଉପସ୍ଥିତ ହୋଇ ତାଙ୍କ ସହିତ ମିଳିତ ହେବା ଫଳରେ ସେ ଅନ୍ତଃସତ୍ତ୍ୱା ହୋଇଛନ୍ତି । କୁମାରୀ କନ୍ୟାର ଗର୍ଭଧାରଣ ଓ ସନ୍ତାନ ପ୍ରସବ ବଡ଼ ଲଜ୍ଜାଜନକ ହୋଇଥିବାରୁ ସେ ଗର୍ଭସ୍ଥ ସନ୍ତାନକୁ କର୍ଣ୍ଣବାଟେ ଜନ୍ମ ଦେଇଛନ୍ତି । ଏଣୁ ସନ୍ତାନଟିର ନାଆଁ ହୋଇଛି କର୍ଣ୍ଣ । ଏ ପ୍ରସଙ୍ଗରେ କବି ଲେଖିଛନ୍ତି—

> "ମହା ଅମୋଘ ରେତ ଅକ୍ଷୟ ସେ ବୀର୍ଯ୍ୟ
> କର୍ଣ୍ଣବାଟେ ସଇଲ୍ଲୁ ଉତ୍ପୁଜିଲା ଆତ୍ମଜ ।
> ଦେଖିଣ ପରମ ସାନନ୍ଦ ହୋଇଲେ କମଳଲୋଚନ
> କୋଳ କରି ନାମ ଦିଲେ ତାହାର କର୍ଣ୍ଣ ।"

( ଆଦି ପର୍ବ—ପୃ: ୧୬୭ )

ନିଜକୁ ଲଜ୍ଜା ଓ ଅପମାନରୁ ରକ୍ଷା କରିବା ନିମନ୍ତେ କୁନ୍ତୀ ସେ ସନ୍ତାନଟିକୁ ଗୋଟିଏ କାଠବାକ୍‌ସରେ ଶୁଆଇ ଯମୁନା ନଦୀରେ ଭସାଇ ଦେଇଛନ୍ତି । ଶେଷରେ ମନ୍ତ୍ରୀ ସଞ୍ଜୟଙ୍କ ପାଳିତା କନ୍ୟା ରାଧା କର୍ଣ୍ଣଙ୍କୁ ପାଇ ହସ୍ତିନାରେ ପାଳନ କରିଛନ୍ତି ।

ରାଧାଙ୍କ ନାମାନୁସାରେ କର୍ଣ୍ଣ ରାଧେୟ ନାମରେ ପରିଚିତ ହୋଇଛନ୍ତି । ରାଜପୁତ୍ର ହୋଇ ମଧ୍ୟ ରାଜପୁତ୍ରର ଗୌରବ ତାଙ୍କ କପାଳରେ ଜୁଟି ନାହିଁ । ବରଂ ସୂତ ପୁତ୍ର ହିସାବରେ ସେ ସର୍ବତ୍ର ପରିଚିତ ହୋଇଛନ୍ତି ଏବଂ ଏଥି ନିମନ୍ତେ ତାଙ୍କୁ ଆଜୀବନ ଅନେକ ଲାଞ୍ଛନା ସହ୍ୟ କରିବାକୁ ହୋଇଛି ।

କର୍ଣ୍ଣ ଥିଲେ ଯଥାର୍ଥରେ ବୀର । ଦ୍ରୌପଦୀ ସ୍ୱୟମ୍ବରରେ ଉପସ୍ଥିତ ସମସ୍ତ ରାଜା ଲକ୍ଷ୍ୟଭେଦ ପରୀକ୍ଷାରେ ଅସଫଳ ହୋଇଛନ୍ତି । ମାତ୍ର କର୍ଣ୍ଣ କୃତକାର୍ଯ୍ୟ ହୋଇଛନ୍ତି; କିନ୍ତୁ କୁଚକ୍ରୀ ଶ୍ରୀକୃଷ୍ଣଙ୍କ ମାୟା ଫଳରେ ବିଜୟଲକ୍ଷ୍ମୀ ତାଙ୍କର ହସ୍ତଗତ ହୋଇନାହିଁ । ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ କର୍ଣ୍ଣଙ୍କର ବୀରତ୍ୱ ଜଣା ଥିବାରୁ ସେ କର୍ଣ୍ଣ ରାଜପୁତ୍ର ନୁହେଁ ବୋଲି କହି ଅର୍ଜୁନ ଓ କର୍ଣ୍ଣଙ୍କ ମଧ୍ୟରେ ଯୁଦ୍ଧ ସଂଘଟିତ କରାଇ ଦେଇନାହାନ୍ତି । ମହାବୀର କର୍ଣ୍ଣଙ୍କୁ ଯୁଦ୍ଧରେ ପରାସ୍ତ କରିବା ନିମନ୍ତେ ପୃଥିବୀରେ କେହି ଜନ୍ମ ହୋଇ ନ ଥିଲେ । ପାଣ୍ଡବମାନଙ୍କୁ ଯୁଦ୍ଧରେ ପରାସ୍ତ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଏବଂ ଏହି ଲକ୍ଷ୍ୟ ତାଙ୍କର ନିଶ୍ଚିତ ଭାବେ ସଫଳ ହୋଇଥାନ୍ତା; ମାତ୍ର ଶକୁନି ଓ ଶ୍ରୀକୃଷ୍ଣଙ୍କ ଷଡ଼ଯନ୍ତ୍ର ତାଙ୍କୁ ପ୍ରତି ପଦକ୍ଷେପରେ ବାଧା ପ୍ରଦାନ କରିଅଛି । ଶେଷରେ ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ଅନ୍ୟାୟ ଓ ଅଧର୍ମ ଉପାୟରେ କର୍ଣ୍ଣଙ୍କୁ ହତ୍ୟା କରାଯାଇଛି ।

କୁନ୍ତୀ ତାଙ୍କର ଜନ୍ମଦାତ୍ରୀ ହୋଇଥିଲେ ହେଁ ସେ ଆଜୀବନ ତାଙ୍କ ସ୍ନେହରୁ ବଞ୍ଚିତ ଥିଲେ । ତଥାପି କୁନ୍ତୀଙ୍କୁ ନିଜ ପ୍ରାସାଦରେ ଦେଖି କର୍ଣ୍ଣ ନିଜକୁ ଧନ୍ୟ ମନେ କରିଛନ୍ତି । ସେ ଯେ କୁନ୍ତୀଙ୍କର ଜ୍ୟେଷ୍ଠପୁତ୍ର, ଏହା କର୍ଣ୍ଣଙ୍କୁ ଅବିଦିତ ନ ଥିଲା । ଲୋକମୁଖରୁ ସେ ସମସ୍ତ ଅବଗତ ହୋଇଥିଲେ । ସେ ରାଧାଙ୍କୁ ନିଜର ଗର୍ଭଧାରିଣୀ ମାତାଭାବେ ସମ୍ମାନ କରୁଥିଲେ ମଧ୍ୟ କୁନ୍ତୀଙ୍କୁ ଅନାଦର କରି ନାହାନ୍ତି । ମାତୃଭକ୍ତ କର୍ଣ୍ଣ କୁନ୍ତୀଙ୍କ ଦର୍ଶନମାତ୍ରେ ସାଷ୍ଟାଙ୍ଗ ପ୍ରଣିପାତ କରିଛନ୍ତି ଓ ଆଗମନର ଉଦ୍ଦେଶ୍ୟ ଜାଣିବାକୁ ଚାହିଁଛନ୍ତି ।

"କରପତ୍ର ଯୋଡ଼ିଣ କର୍ଣ୍ଣ କହଇ ପୁଚ୍ଛସର
ମମପୁରେ କିସ କାର୍ଯ୍ୟେ ବିଜୟ ମାହେଶ୍ୱରୀ ।"

(ଉଦ୍‌ଯୋଗ ପର୍ବ — ପୃ: ୩୭୨)

ପାଣ୍ଡବ ଜନନୀ କୁନ୍ତୀ କର୍ଣ୍ଣଙ୍କ ବୀରତ୍ୱର ସମ୍ୟକ୍ ପରିଚୟ ପାଇଛନ୍ତି ଏବଂ ଅର୍ଜୁନଙ୍କ ବ୍ୟତୀତ ତାଙ୍କର ଅନ୍ୟପୁତ୍ରମାନଙ୍କ ଜୀବନ ରକ୍ଷା ନିମନ୍ତେ କର୍ଣ୍ଣଙ୍କୁ ସତ୍ୟ କରାଇଛନ୍ତି । ଏପରି କରିବାର କାରଣ ହେଉଛି କର୍ଣ୍ଣ ହେଉଛନ୍ତି ଅର୍ଜୁନଙ୍କର ଯଥାର୍ଥ ପ୍ରତିଦ୍ୱନ୍ଦ୍ୱୀ । ଯୁଦ୍ଧରେ ଏ ଦୁହିଁଙ୍କ ମଧ୍ୟରୁ ଯେ କୌଣସି ଜଣେ ନିହତ ହେଲେ ମଧ୍ୟ କୁନ୍ତୀଙ୍କର ପୁତ୍ରସଂଖ୍ୟା ପୂର୍ବପରି ପାଞ୍ଚ ରହିବ । ସତ୍ୟ ରକ୍ଷା ନିମନ୍ତେ ନିଜ ଆସନ୍ନ

ମୃତ୍ୟୁର ନିଶ୍ଚିତତା ଜାଣି ସୁଦ୍ଧା କର୍ଣ୍ଣ ନିଜର ବେନିକାନୁ ଶର ମୀଲବାଣ ଓ ଭୂଜବାଣ ମାତା କୁନ୍ତୀଙ୍କୁ ପ୍ରଦାନ କରିଛନ୍ତି । ନିଜ ଜୀବନ ଅପେକ୍ଷା ସତ୍ୟ ଓ ଧର୍ମ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିବାର ଏଥିରୁ ପ୍ରତିପାଦିତ ହୁଏ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ କୁନ୍ତୀଙ୍କର କାନୀନ ପୁତ୍ର ଏହି ମହାବୀର କର୍ଣ୍ଣ ରୂପରେ, ଗୁଣରେ, ତ୍ୟାଗରେ ଏବଂ ଔଦାର୍ଯ୍ୟରେ ପାଣ୍ଡବମାନଙ୍କର ଯଥାର୍ଥ ଅଗ୍ରଜ ହେବା ନିମନ୍ତେ ଯୋଗ୍ୟ । ସାରାଜୀବନ ସେ ଖାଲି ଦେଇଯାଇଛନ୍ତି; ମାତ୍ର କିଛି ପାଇ ନାହାନ୍ତି । ଏହି ନିରହଙ୍କାରୀ ଓ ଅଭିଶପ୍ତ ଚରିତ୍ର ନିମନ୍ତେ ପାଠକର ହୃଦୟ ସହାନୁଭୂତିରେ ଆର୍ଦ୍ର ହୋଇଯାଏ ।

## ଶକୁନି :

ଖଳ ଚରିତ୍ର ସୃଷ୍ଟିରେ ସାରଳା ଦାସ ଯେ ଖୁବ୍ ଦକ୍ଷ ଥିଲେ, ଏହାର ପ୍ରମାଣ ହିଏ ତାଙ୍କ ଗ୍ରନ୍ଥରେ ବର୍ଣ୍ଣିତ ଶକୁନି ଚରିତ୍ର । ଖ୍ରିପଣ ପ୍ରତିହିଂସା ପରାୟଣ, କୁଟିଳ ବୁଦ୍ଧି ସମ୍ପନ୍ନ, ସୁଦକ୍ଷ ମନ୍ତ୍ରଣାଦାତା ଓ ରାଜାନୁରକ୍ତ ହିସାବରେ ତାକୁ ସାରଳା ଦାସ ଚିତ୍ରଣ କରିଛନ୍ତି ।

ଭୀମର 'ଗୋଳକ ପୁତ୍ର' ସମ୍ବୋଧନରେ ଅପମାନିତ ହୋଇ ଦୁର୍ଯ୍ୟୋଧନ ନିଜ ମାତାଙ୍କଠାରୁ ତାଙ୍କ ବିବାହ ବୃତ୍ତାନ୍ତ ଶୁଣିଛନ୍ତି । ପୂର୍ବରୁ ବାଇଶି ଜଣ ରାଜା ତାଙ୍କୁ ବିବାହ କରି ମୃତ୍ୟୁବରଣ କରିଥିବାରୁ ଗାନ୍ଧାରୀ ବିଧବା ରୂପେ ଗଣ୍ୟା ହୋଇଛନ୍ତି ଏବଂ ତାଙ୍କର ପୁତ୍ର ହୋଇଥିବାରୁ ଦୁର୍ଯ୍ୟୋଧନଙ୍କୁ 'ଗୋଳକ ପୁତ୍ର ଭାବରେ ଅପମାନିତ କରାଯାଇଛି । ମାତାମହ ଗାନ୍ଧାରସେନ ନିଜର ଜ୍ଞାତସାରରେ ନିଜ ବିଧବା କନ୍ୟାଙ୍କୁ ଧୃତରାଷ୍ଟ୍ରଙ୍କୁ ବିବାହ ଦେଇଥିବାରୁ, ତାଙ୍କ ବିରୁଦ୍ଧରେ ଦୁର୍ଯ୍ୟୋଧନର କ୍ରୋଧାଗ୍ନି ପ୍ରଜ୍ୱଳିତ ହୋଇ ଉଠିଛି ଏବଂ ମାତୁଳ ବଂଶର ଧ୍ୱଂସ ସାଧନ ନିମନ୍ତେ ସେ ଗାନ୍ଧାରସେନ ସହିତ ତାଙ୍କର ଶତପୁତ୍ର ଏବଂ ଅନ୍ୟାନ୍ୟ ଆତ୍ମୀୟସ୍ୱଜନଙ୍କୁ କାରାଗାରବନ୍ଦ କରି ତିଳ ତିଳ ହତ୍ୟା କରିଛି । ନିଜର ବଂଶ ରକ୍ଷାକରି ଏ ଅତ୍ୟାଚାରର ପ୍ରତିଶୋଧ ସ୍ୱରୂପ ଦୁର୍ଯ୍ୟୋଧନର ବଂଶ ନିପାତ କରିବା ନିମନ୍ତେ ଗାନ୍ଧାରସେନ ଜ୍ୟେଷ୍ଠପୁତ୍ର ଶକୁନିକୁ ମୃତ୍ୟୁ କାଳରେ ଉପଦେଶ ଦେଇଛନ୍ତି । ଶକୁନି ଏକାକୀ ସମସ୍ତଙ୍କ ଖାଦ୍ୟ ଏବଂ ସର୍ବଶେଷରେ କାନ୍ଥରେ ଲଗା ଯାଇଥିବା ଅନ୍ନ ଚୁଟିକା ଖାଇ ପ୍ରାଣ ବଞ୍ଚାଇଛି ।

ବୁଦ୍ଧି ଓ କୌଶଳକ୍ରମେ ସେ ଦୁର୍ଯ୍ୟୋଧନକୁ ଭୁଲାଇ ତା'ର ମନ୍ତ୍ରୀତ୍ୱ ଗ୍ରହଣ କରିଅଛି । କୌରବମାନଙ୍କୁ ସମୂଳେ ବିଧ୍ୱଂସ କରିବାର ସେ କୁତ୍ସିତ ଷଡ଼ଯନ୍ତ୍ର ମନରେ ସେ ପୋଷଣ କରି ମୁହଁରେ ଜାଲହସ ଫୁଟାଇ ଦୁର୍ଯ୍ୟୋଧନକୁ ଖୁସାମଦ୍ କରିଅଛି । ଦୁର୍ଯ୍ୟୋଧନ ଶକୁନିର ଆଚରଣରେ ଏତେ ମୁଗ୍ଧ ହୋଇଯାଇଛନ୍ତି ଯେ

ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ଶତ ଚେଷ୍ଟାବନୀ ସତ୍ତ୍ୱେ ସେ ଶକୁନିଙ୍କୁ ଅବିଶ୍ୱାସ କରିପାରି ନାହାନ୍ତି କମ୍ବା ତ୍ୟାଗ କରିପାରି ନାହାନ୍ତି । ଅଜଗର ଯେପରି ପ୍ରଥମେ ଶିକାରକୁ ସମ୍ମୋହିତ କରି କ୍ରମେ କ୍ରମେ ତାକୁ ଗ୍ରାସ କରେ ଶକୁନି ମଧ୍ୟ ସେହିପରି ପ୍ରଥମେ ଦୁର୍ଯ୍ୟୋଧନଙ୍କୁ କପଟ ବ୍ୟବହାରରେ କରାୟତ୍ତ କରି ଧୀରେ ଧୀରେ ତା'ର ସର୍ବନାଶର ପଥ ପରିଷ୍କାର କରିଦେଇଛି । ଦ୍ୟୂତକ୍ରୀଡ଼ା ପାଇଁ ଯୁଧିଷ୍ଠିରଙ୍କୁ ଉତ୍ସାହିତ କରାଇ ପାଣ୍ଡବଙ୍କୁ ସର୍ବସ୍ୱାନ୍ତ କରାଇବା, କୁରୁସଭାରେ ଦ୍ରୌପଦୀଙ୍କୁ ବିବସନା କରାଇବା, ପାଞ୍ଚଖଣ୍ଡି ପଡ଼ା ନିମନ୍ତେ ପାଣ୍ଡବମାନଙ୍କର ଆକୁଳ ପ୍ରାର୍ଥନାକୁ ପ୍ରତ୍ୟାଖ୍ୟାନ କରାଇବା ଇତ୍ୟାଦି ସମସ୍ତ ଅନ୍ୟାୟ ଓ ଅବିବେକତାର ମୂଳରେ ଏହି ମନ୍ଦବୁଦ୍ଧି ଶକୁନିର ହିଁ ହାତ ରହିଅଛି । ଉଦ୍‌ଯୋଗ ପର୍ବରେ ଅନନ୍ତା କଥା ପ୍ରସଙ୍ଗରେ ଶକୁନି ଶ୍ରୀକୃଷ୍ଣଙ୍କୁ ଗୁପ୍ତରେ କହିଛି ଯେ କୁରୁପାଣ୍ଡବ ପ୍ରୀତରେ ପୃଥିବୀରୁ ଅନ୍ୟାୟ ଦୂର ହେବ ନାହିଁ । ତେଣୁ ଯୁଦ୍ଧର ସମସ୍ତ ଆୟୋଜନ କରି କୁରୁକୁଳ ନିପାତ କରିବା ନିମନ୍ତେ ଶ୍ରୀକୃଷ୍ଣଙ୍କୁ ସେ ପରାମର୍ଶ ଦେଇଅଛି । ଏଥିରୁ ପ୍ରମାଣିତ ହୁଏ ଯେ ଶକୁନି ଥିଲା ପ୍ରତିହିଂସା-ପରାୟଣତାର ଏକ ମୂର୍ତ୍ତିମନ୍ତ ବିଗ୍ରହ ।

କୁଚକ୍ରୀ ଶକୁନି ମହାଭାରତ ଯୁଦ୍ଧରେ ସମସ୍ତଙ୍କୁ ମରାଇ ନିଜେ ଯୁଦ୍ଧର ଶେଷ ଦିନ ପର୍ଯ୍ୟନ୍ତ ନିରାପଦରେ ଜୀବିତ ରହିଆସିଛି । ଶେଷରେ ସହଦେବ ହାତରେ ଶକୁନି ନିହତ ହୋଇଥିବାର ଶୁଣି ଧୃତରାଷ୍ଟ୍ର ଆନନ୍ଦିତ ହୋଇଛନ୍ତି ଏବଂ ସଞ୍ଜୟଙ୍କୁ "ଯେବେ ସେ ପାଶୋର ଗଲା ମୋହୋର ପୁତ୍ରଙ୍କର କଷ୍ଟ" ବୋଲି କହିଛନ୍ତି । ତାଙ୍କ ଭାଷାରେ ।

"ପ୍ରଥମ ସମରେ ଶକୁନି ଯେବେ ପଡ଼ିଥାନ୍ତା ରଣେ
ଉଭୟ କୁଳକୁ ସେ ବୁଡ଼ାଇଲା ସେକା ଜଣେ ।"

( ଶଲ୍ୟପର୍ବ—ପୃ-୯ )

ଶକୁନି ଚରିତ୍ର ହେଉଛି 'ବିଷକୁମ୍ଭ ପୟୋମୁଖମ୍' ଉକ୍ତିର ଏକ ଜୀବନ୍ତ ପରି-ପ୍ରକାଶ । ଅଧ୍ୟାପକ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଶକୁନି ଚରିତ୍ର ସମ୍ବନ୍ଧରେ ଯଥାର୍ଥରେ ଲେଖିଛନ୍ତି—"ଶକୁନିର ଆପାତଃ ଦୁର୍ଯ୍ୟୋଧନର ହିତାକାଙ୍କ୍ଷୀ - ହୋଇ ତାହାର ବଂଶକୁ ବିନାଶ କରିବା ଯେଉଁ ସୈତାନ ଚରିତ୍ରର ଚିତ୍ରଣ ସାରଳାମୁନି କରିଅଛନ୍ତି, ତାହା ତୁଳନାରେ ଜଗତ ବିଖ୍ୟାତ ସେକ୍‌ସପିଅରଙ୍କ ସୈତାନ ଚରିତ୍ର 'ଇଆଗୋ' କିଛି ନୁହେଁ କହିଲେ ଚଳେ ।" ❋

---

❋ ସାରଳା ସ୍ମରଣିକା—ପୃ : ୮

# ନାରୀ ଚରିତ୍ର

ନାରୀ ହେଉଛି ଜନନୀ, ଭଗିନୀ ଓ ଜାୟା । ସେ ସୃଷ୍ଟିର ଆଦ୍ୟ-ଉତ୍ସ, ପ୍ରେରଣାଦାୟିନୀ, ଶାନ୍ତି-ମୈତ୍ରୀ ତଥା ସହୃଦୟତାର ପ୍ରତୀକ । ସେ କେବଳ ପୁରୁଷର ଭୋଗ୍ୟା ବା ବିଳାସ ସାମଗ୍ରୀ ନିମନ୍ତେ ଜନ୍ମ ନେଇନାହାଁନ୍ତି । ଯୁଗେ ଯୁଗେ ସେ ସମାଜରେ ଉଚ୍ଚସ୍ଥାନ ଅଧିକାର କରି ଆସିଛି । ନାରୀର ସ୍ନେହ-ସୋହାଗ ମମତା-ବୋଳା ବାଣୀ ପାଷାଣକୁ ମଧ୍ୟ ଜୀବନ୍ତ କରିପାରେ । ନାରୀ ହେଉଛି ତ୍ୟାଗ, କଷ୍ଟ ସହିଷ୍ଣୁତା ବିନୟ ଓ ବିଶ୍ୱାସ ଜ୍ଞାନର ଜୀବନ୍ତ ପ୍ରତିମୂର୍ତ୍ତି । ଅନେକ ସମୟରେ ପୁରୁଷଠାରୁ ନାରୀର ପ୍ରଜ୍ଞା ଅଧିକ ଅଭ୍ରାନ୍ତ ପ୍ରତିପାଦିତ ହୋଇଛି । ପ୍ରାଚୀନ ସାହିତ୍ୟର ପୃଷ୍ଠା ଉନ୍ମୋଚନ କଲେ ଏହି ସତ୍ୟର ଭୂରି ଭୂରି ପ୍ରମାଣ ମିଳେ । ମାତ୍ର ସାରଳା ମହାଭାରତରେ ଅଧିକାଂଶ ନାରୀ ଅତି ନ୍ୟୂନ ଚରିତ୍ରର ଅଧିକାରିଣୀ । ଏଥିରେ ବର୍ଣ୍ଣିତ ନାରୀ ଚରିତ୍ରଗୁଡ଼ିକ ପ୍ରାୟ ଅତିଶୟ ଶୃଙ୍ଗାରପ୍ରିୟାସୀ, କାମାତୁରା, ଦୁର୍ବଳା, ସ୍ୱେଚ୍ଛାଚାରିଣୀ ଓ ପ୍ରତିହିଂସା ପରାୟଣା । ତେଣୁ କବି କହିଛନ୍ତି —

> "ଦିବା ରାତ୍ରେ ରମଣେଣ ହୋଅନ୍ତି ଅଶାନ୍ତ
> ନିରନ୍ତରେ ରତି କ୍ରୀଡ଼ାରେ ବଞ୍ଚନ୍ତି ।"

ମନେହୁଏ ସାରଳା ଦାସ ନାରୀ ଚରିତ୍ରଗୁଡ଼ିକ ବାସ୍ତବ ଦୃଷ୍ଟିକୋଣରୁ ଚିତ୍ରଣ କରିଅଛନ୍ତି, ଯହିଁରେ ତତ୍କାଳୀନ ସମାଜର ଜୀବନ୍ତ ପ୍ରତିବିମ୍ବ ପ୍ରତିଫଳିତ । ଗଙ୍ଗା, ଗାନ୍ଧାରୀ, କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା ପ୍ରମୁଖ ପ୍ରଧାନ ନାରୀ ଚରିତ୍ରଗୁଡ଼ିକ ବ୍ୟତୀତ ହାରାବତୀ, ଉର୍ବଶୀ, ହିଡ଼ମ୍ବିକା, ସତ୍ୟବତୀ, ସନ୍ଧ୍ୟାବଳୀ, ଲକ୍ଷ୍ମୀ, ମାୟାବତୀ, ଚନ୍ଦ୍ରଲେଖା, ଭାନୁମତୀ ପ୍ରମୁଖ ଅନେକ ଗୌଣ ନାରୀଚରିତ୍ର ମଧ୍ୟ ମହାଭାରତରେ ଦେଖିବାକୁ ମିଳେ; ଏପରିକି ବାରନାରୀ, ଦୂତୀ, ମୁଦୁସୁଲି ପ୍ରଭୃତି ଚରିତ୍ରର ଅବତାରଣା କରିବାକୁ ସାରଳା ଦାସ ଭୁଲିଯାଇ ନାହାନ୍ତି । ଏଠାରେ କେତେକ ମୁଖ୍ୟ ନାରୀ ଚରିତ୍ରର ବିଶ୍ଳେଷଣ କରାଯାଇପାରେ ।

## ଗଙ୍ଗା :

ସାରଳା ଦାସଙ୍କ ଗଙ୍ଗା ମୂଳ ମହାଭାରତ ବା ଅନ୍ୟାନ୍ୟ ଭାରତୀୟ ପୁରାଣରେ ବର୍ଣ୍ଣିତ ଗଙ୍ଗା ଦେବୀଙ୍କଠାରୁ ଭିନ୍ନ । ବ୍ୟାସଦେବଙ୍କ ଗଙ୍ଗା ରାଜା ଶାନ୍ତନୁଙ୍କର ପ୍ରଣୟିନୀ ଏବଂ ସେମାନଙ୍କ ଦାମ୍ପତ୍ୟ ଜୀବନ ଅତ୍ୟନ୍ତ ପ୍ରୀତିକର ଓ ମଧୁମୟ । ମାତ୍ର ସାରଳା ଦାସଙ୍କ ଗଙ୍ଗା ସ୍ୱେଚ୍ଛାଚାରିଣୀ, ସ୍ୱାର୍ଥପରାୟଣା, କଳହପ୍ରିୟା ଓ ନିଷ୍ଠୁର କଣେ ଉତ୍କଳୀୟ ପଲ୍ଲୀରମଣୀ, ଯାହାଙ୍କର ଦାମ୍ପତ୍ୟ ଜୀବନ ଯାପନ ନିମନ୍ତେ ଆଦୌ ଯୋଗ୍ୟତା ନ ଥିଲା ଭଳି ମନେହୁଏ ।

ଗଙ୍ଗା ନର୍ଘାତଙ୍କ କନ୍ୟା । ପିତୃଗୃହରେ ଶିବଙ୍କୁ ଅପେକ୍ଷା କରି ତାଙ୍କର ଦୁଇଯୁଗ ବିତିଯାଇଛି; ମାତ୍ର ଶିବଙ୍କର ଦର୍ଶନ ମିଳି ନାହିଁ । କାରଣ ଗୋହତ୍ୟା ଓ ବ୍ରହ୍ମହତ୍ୟା ପାପର ପ୍ରାୟଶ୍ଚିତ ନିମନ୍ତେ ଶିବଙ୍କୁ ସେତେବେଳେ ପାତାଳରେ ବାସ କରିବାକୁ ପଡ଼ିଛି । ସତ୍ୟ ଓ ତ୍ରେତୟା ଯୁଗ ବିତିଯାଇଥିଲେ ମଧ୍ୟ ଅପେକ୍ଷାମାଣା ଗଙ୍ଗା ଶିବଙ୍କୁ ଚାହିଁ ରହିଛନ୍ତି । ଶାନ୍ତନୁ ଶିବଙ୍କୁ ଭକ୍ତିରେ ସନ୍ତୁଷ୍ଟ କରି ତାଙ୍କ ଶକ୍ତି ଓ ଭୂଷଣାଦି ପ୍ରାପ୍ତ ହୋଇଛନ୍ତି । ସେହି ଭୂଷଣାଦିରେ ଭୂଷିତ ହୋଇ ସେ ତୀର୍ଥଭ୍ରମଣରେ ବାହାରିଅଛନ୍ତି । ଏକଦା ରୁଦ୍ରବେଶଧାରୀ ଶାନ୍ତନୁଙ୍କୁ ଭ୍ରମବଶତଃ ନର୍ଘାତ ଶିବ ବୋଲି ମନେ କରିଅଛନ୍ତି ଏବଂ ତାଙ୍କୁ ବିବାହ କରିବା ନିମନ୍ତେ ଗଙ୍ଗାକୁ ଆଦେଶ ଦେଇଅଛନ୍ତି; କିନ୍ତୁ ସେ ପ୍ରକୃତ ଶିବ ହୋଇ ନ ଥିବାର ଜଣା ପଡ଼ିବାରୁ ତାଙ୍କୁ ବିବାହ କରିବା ନିମନ୍ତେ ଗଙ୍ଗା ପ୍ରଥମେ ଅନିଚ୍ଛା ପ୍ରକାଶ କରୁଛନ୍ତି; ମାତ୍ର କ'ଣ କରାଯିବ ? ପିତାଙ୍କ ଆଦେଶକୁ ଅନ୍ତତଃ ସମ୍ମାନ ଦେବାକୁ ହେବ । ଏଣୁ ଶାନ୍ତନୁଙ୍କ ସହିତ ତାଙ୍କର ବିବାହ ସମ୍ପାଦିତ ହୋଇଛି; ମାତ୍ର ଏହା ହୋଇଛି ସର୍ତ୍ତମୂଳକ । ଗଙ୍ଗାଙ୍କ ସର୍ତ୍ତଟି ହେଉଛି -

"ଗଙ୍ଗା ବୋଲଇ ତୁ ବୋଲୁଥିବୁ ଅନୁ ବ୍ରତେ
ଗାଙ୍ଗୀ ବୋଇଲେ ନ ଥାଇଟି ପୁରେଇ ମୋର ବ୍ରତେ ।"

(ଆଦିପର୍ବ—ପୃ : ୬୩)

ଅର୍ଥାତ୍ ସମସ୍ତ କାର୍ଯ୍ୟ କରିବା ନିମନ୍ତେ ଗଙ୍ଗାଙ୍କର ଅଖଣ୍ଡ ସ୍ୱାଧୀନତା ରହିବ । ଯଦି ଶାନ୍ତନୁ ଏହା ବିରୋଧରେ କେବେ ସ୍ୱର ଉତ୍ତୋଳନ କରନ୍ତି, ତେବେ ଗଙ୍ଗା ତାଙ୍କୁ ତ୍ୟାଗ କରିବେ ।

ବିବାହ ପରେ ଗଙ୍ଗାଙ୍କର ସ୍ୱେଚ୍ଛାଚାରିତା ବଢ଼ିଯାଇଛି । ଶାନ୍ତନୁଙ୍କ ପ୍ରତି ତାଙ୍କ ବ୍ୟବହାର ସମସ୍ତ ପ୍ରକାର ଶାଳୀନତାକୁ ଅତିକ୍ରମ କରିଯାଇଛି । ସେ ଶାନ୍ତନୁଙ୍କୁ ନାନା ପ୍ରକାର ତିରସ୍କାର, ପ୍ରହାର ଓ ବ୍ରତ ଭଙ୍ଗାଦି ଦ୍ୱାରା ଅଶେଷ କଷ୍ଟ ଦେଇଛନ୍ତି । ନିମ୍ନ ଉକ୍ତିଟି ଶାନ୍ତନୁଙ୍କ ପ୍ରତି ତାଙ୍କ ନିର୍ମମ ବ୍ୟବହାରର ଏକ ସ୍ପଷ୍ଟ ଚିତ୍ର ପ୍ରଦାନ କରେ ।

"ଗାଢ଼େଣ ଯେତେବେଳେ ଧରନ୍ତି ତପୋବନ୍ତ
କେଶ ଧରି ମୁନିଂକ ସେ ମାଡ଼ ମାରଇ ବହୁତ ।

ମାଥେଣ ମୁଥ ମାରି ପାଦେଣ ପ୍ରହାରଇ
ନଖ ଦନ୍ତ ଘାତେ ଶରୀର ବିଦାରଇ ।"

(ଆଦିପର୍ବ—ପୃ : ୩୦)

ନିଜ ଇଚ୍ଛା ଅନୁଯାୟୀ ସେ ଶାନ୍ତନୁଙ୍କ ସହ ମିଳିତ ହୋଇଛନ୍ତି । ଏକଦା କାମପୀଡ଼ାରେ ଜର୍ଜ୍ଜରିତ ଶାନ୍ତନୁଙ୍କୁ କାମ ପ୍ରବୃତ୍ତି ଚରିତାର୍ଥ ନିମିତ୍ତ ସେ ବାଧା ଦେବାରୁ ଶାନ୍ତନୁ ଏକ ଚିତ୍ର ପ୍ରତିମାକୁ ଆଲିଙ୍ଗନ କରିଛନ୍ତି ଏବଂ ତାଙ୍କର ରେତ ସ୍ଖଳନ ଫଳରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଜନ୍ମ ଗ୍ରହଣ କରିଛନ୍ତି । ଶାନ୍ତନୁଙ୍କ ପ୍ରତି ପ୍ରଦର୍ଶିତ ଦୁର୍ବ୍ୟବହାରର ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ମାତାର କଲ୍ୟାଣମୟୀ ରୂପ ବଦଳରେ ଗଙ୍ଗାଙ୍କ ଚରିତ୍ରରେ ଏକ ବୁଭୁକ୍ଷୁ ରାକ୍ଷସୀର ଆଚରଣ ଆରୋପିତ ହୋଇଅଛି । ମୂଳ ମହାଭାରତର ଦେବୀ ଗଙ୍ଗା ଏଠାରେ ଦାନବୀ ରୂପରେ ପରିକଳ୍ପିତା । ସାରଳା ଦାସ ବର୍ଣ୍ଣନା କରିଛନ୍ତି ଯେ ଗଙ୍ଗା ଗୋଟିକ ପରେ ଗୋଟିଏ କରି ଛଅଟି ପୁତ୍ରର ଜନନୀ ହୋଇଛନ୍ତି ଏବଂ ପ୍ରତ୍ୟେକ ନବଜାତ ପୁତ୍ରକୁ କରାଞ୍ଚଳ ବା କ୍ଷୁଦ୍ର ଖଡ୍ଗ ଦ୍ୱାରା ହତ୍ୟା କରିଛନ୍ତି । ସେ ନିଜେ ସ୍ୱୀକାର କରିଅଛନ୍ତି—

"ଗଙ୍ଗା ବୋଇଲେ ମୋର ଦୁଷ୍ଟ ଯେ ପ୍ରକୃତି
ପୁତ୍ର ବୋଲି ନାହିଂ ମୋର ଧଇର୍ଯ୍ୟ ଭାବମତି ।"

( ଆଦିପର୍ବ ପୃ: ୩୭ )

ପ୍ରତିଜ୍ଞା ଭଙ୍ଗ ହେବା ଭୟରେ ଶାନ୍ତନୁ ନୀରବ ରହିବାକୁ ବାଧ୍ୟ ହୋଇଛନ୍ତି; ମାତ୍ର ସପ୍ତମ ପୁତ୍ରର ଜନ୍ମ ପରେ ପରେ ଗଙ୍ଗା ତାଙ୍କୁ ଯେତେବେଳେ ହତ୍ୟା କରିବାକୁ ଉଦ୍ୟତ ହୁଅନ୍ତି, ଶାନ୍ତନୁଙ୍କ ଧୈର୍ଯ୍ୟର ବନ୍ଧ ଭୁସୁଡ଼ି ପଡ଼ୁଛି । ସେ ନିଜର ପ୍ରତିଶ୍ରୁତି ଭୁଲି ଗଙ୍ଗାଙ୍କର ଏପରି କାର୍ଯ୍ୟରେ ବାଧା ଦେଇଛନ୍ତି । ଫଳରେ ପ୍ରତିଜ୍ଞା ଭଙ୍ଗ ହୋଇଥିବା ଅଭିଯୋଗ କରି ଗଙ୍ଗା ଶାନ୍ତନୁଙ୍କୁ ତ୍ୟାଗ କରି ଚାଲିଯାଇଅଛନ୍ତି । ଯିବା ପୂର୍ବରୁ ସେ କହିଛନ୍ତି—

"ଗଙ୍ଗା ବୋଇଲେ ମୁଂ ଥାଇଂ ଗାଙ୍ଗୀ ବୋଇଲେ ନ ଥାଇଂ
ଗାଙ୍ଗୀ ବୋଇଲୁ ତୁ ଯାଉଛୁ ମୁଂ ବ୍ରତ ପୁରୋଇ ।"

(ଆଦିପର୍ବ––ପୃ ୪୦)

ଏଠାରେ ଗଙ୍ଗା ଜଣେ ସ୍ୱାଧୀନ ଭର୍ତ୍ତିକା ନାରୀ ରୂପେ ଚିତ୍ରିତା । ସେ ଚାଲିଗଲା ପରେ ଏପୁତ୍ର କିପରି ଜୀବନ ଧରି ରହିବ ବୋଲି ଶାନ୍ତନୁ ପ୍ରଶ୍ନ କରନ୍ତେ, ରାକ୍ଷସୀ ସ୍ୱରୂପିଣୀ ଗଙ୍ଗା କହିଛନ୍ତି ଯେ ସେ ପୁତ୍ର ଜୀବନ ଧରି ରହିପାରେ, ଅଥବା ମୃତ୍ୟୁ ବରଣ କରିପାରେ—ସେଥିରେ ତାଙ୍କର କିଛି ଯାଏ ଆସେ ନାହିଁ । ଶାନ୍ତନୁଙ୍କୁ ତ୍ୟାଗ କରି ଚାଲିଯିବା ସମୟରେ ମଧ୍ୟ ସେ ନିଜର ମୂଳ ପ୍ରକୃତି ପରିହାର କରିପାରି ନାହାନ୍ତି । ପୁନର ପୁତ୍ର ହସ୍ତରେ ଶାନ୍ତନୁ ନିହତ ହେବେ ବୋଲି, ସେ ଅଭିଶାପ

ଦେଇଛନ୍ତି । ଏତେ ଦାନ ଧର୍ମ କରିବା ପରେ ମଧ୍ୟ ଶେଷ ମୁହୂର୍ତ୍ତରେ ତାଙ୍କ ବ୍ୟବହାରରେ ପରିବର୍ତ୍ତନ ଲକ୍ଷିତ ହୋଇ ନାହିଁ ।

## ଗାନ୍ଧାରୀ :

ମୂଳ ମହାଭାରତର ଗାନ୍ଧାରୀ ଚରିତ୍ର ଓ ସାରଳା ମହାଭାରତର ଗାନ୍ଧାରୀ ଚରିତ୍ର ମଧ୍ୟରେ ଅଳ୍ପ କେତେକ ଭିନ୍ନତା ଲକ୍ଷ୍ୟ କରାଯାଏ । ସାରଳାଙ୍କ ଗ୍ରନ୍ଥରେ ନାରୀ ସୃଷ୍ଟିରେ ସେ ଦୋଷଗୁଣ ମିଶ୍ରଣରେ ଅନବଦ୍ୟା । ସାରଳା ଦାସଙ୍କ ବର୍ଣ୍ଣନାନୁଯାୟୀ ଜ୍ୟେଷ୍ଠ ମାସ ଅମାବାସ୍ୟା ରାତିରେ, କୃତ୍ତିକା ନକ୍ଷତ୍ରରେ ତାଙ୍କର ଜନ୍ମ ହୋଇଥିବା ହେତୁ, ସେ ହେଲେ ଅତି ଅମଙ୍ଗଳୀ ଉଆଁସୀ କନ୍ୟା । ବାଇଶି ଜଣ ରାଜା ତାଙ୍କୁ ବିବାହ କରି ମୃତ୍ୟୁ ବରଣ କରି ସାରିଥିଲେ । ତେଣୁ ପ୍ରଥମେ ଏକ ଶାହାଡ଼ା ଗଛକୁ ବିବାହ କରିବା ପରେ ସେ ଧୃତରାଷ୍ଟ୍ରଙ୍କୁ ବିବାହ କରିଛନ୍ତି ।

ଗାନ୍ଧାରୀ ସତୀ, ସାଧ୍ୱୀ ଓ ପତିପରାୟଣା । ଅନ୍ଧ ଧୃତରାଷ୍ଟ୍ର କିଛି ଦେଖି ପାରୁ ନ ଥିବାରୁ ତାଙ୍କ ସହଧର୍ମିଣୀ ହୋଇ ସେ ଅବା କିପରି ଦେଖନ୍ତେ ? ଏଣୁ ବିବାହ ପରଠାରୁ ସେ ନିଜର ଚକ୍ଷୁଦ୍ୱୟକୁ ଅନ୍ଧ ପଟଳରେ ଆବୃତ କରି ରଖିଛନ୍ତି । କବି କହିଛନ୍ତି —

"ସ୍ୱାମୀର ଅନ୍ଧପଣ ଦେଖିଣ ଗାନ୍ଧାରୀ
ଆପଣେ ଆପଣେ ଦେବୀ ମନରେ ବିଚାରି ।

× × ×

ସ୍ୱାମୀର ଅନ୍ଧପଟଳ ଯେବେ ବେନି ଆଖି
ମୁହିଂ ସେ ପାମରୀ କିସ ତାହାର ଦୁଃଖ ଦେଖି ।
କପାଳେଶ୍ୱର ତୀର୍ଥେ ଦେବୀ ସଂକଳ୍ପ ଯେ କଲା
ସ୍ୱାମୀର ଦୁଃଖ ନ ଦେଖିବି ବୋଲି ଅନ୍ଧପଟଳ ବାନ୍ଧିଲା ।"

( ଆଦିପର୍ବ—ପୃ ୨୪୬-୪୭ )

ଏଠାରେ ସ୍ୱାମୀଙ୍କ ପ୍ରତି ଗାନ୍ଧାରୀଙ୍କ ଚରମ ଭକ୍ତି ଓ ସମ୍ମାନ ପ୍ରଦର୍ଶିତ ହେବା ଫଳରେ ତାଙ୍କ ଚରିତ୍ରିକ ମହତ୍ତ୍ୱ ଫୁଟି ଉଠିଛି ।

ସ୍ୱାମୀଙ୍କ ପ୍ରତି ତାଙ୍କର ଅଟଳ ଭକ୍ତି ଏବଂ ସ୍ୱାମୀଙ୍କୁ ସେ ନିଜଠାରୁ ଶ୍ରେଷ୍ଠ ବୋଲି ବିଚାର କରିଅଛନ୍ତି । ତଥାପି ସ୍ୱାମୀଙ୍କର ଯେଉଁଠାରେ ଭ୍ରମଭ୍ରାନ୍ତି ଦେଖିଛନ୍ତି, ସେଠାରେ ଅତି ଚତୁରତାର ସହିତ ଜଣେ ବିଚକ୍ଷଣ ମନ୍ତ୍ରୀଭଳି ସତ୍‌ପରାମର୍ଶ ଦେବାକୁ ସେ ଭୁଲି ନାହାନ୍ତି । ନିଜେ ଅନ୍ଧଥିବାରୁ ନିଜର କନିଷ୍ଠ ଭ୍ରାତା ପାଣ୍ଡୁଙ୍କୁ ଧୃତରାଷ୍ଟ୍ର ସିଂହାସନରେ ଅଧିଷ୍ଠିତ କରାଇଅଛନ୍ତି । କାଳକ୍ରମେ ପାଣ୍ଡୁ ଲୋକପ୍ରିୟ ହୋଇ

ଉଠିବାରୁ ଈର୍ଷାରୁ ଧୃତରାଷ୍ଟ୍ରଙ୍କ ମନ ବିରସ ହୋଇଯାଇଅଛି ଏବଂ ସେ ତ୍ରିବେଣୀ ସଙ୍ଗମରେ ଜୀବନ ହରାଇବା ନିମନ୍ତେ ମନସ୍ଥ କରିଅଛନ୍ତି । ସ୍ୱାମୀ ଏପରି ସିଦ୍ଧାନ୍ତ ଗ୍ରହଣ କରିଥିବା ଜାଣିପାରି, ଗାନ୍ଧାରୀ ତାଙ୍କୁ ପରାମର୍ଶ ଦେଇ କହୁଅଛନ୍ତି —

"ଯାହା ସେ ଅଟଇ ନାଥ ତାହା ହାଦେ ଭୁଞ୍ଜି
ସମସ୍ତେ ପୁଣ୍ୟବନ୍ତ ନୋହନ୍ତି ମୃତ୍ୟୁ ମଣ୍ଡଳ ମଝି ।

× × × •

ଛାଡ଼ମେଲ ରୁ ଅଭିମାନ ଯାହେ ନକାଳ ନଚଳି
ଦୁଃଖ ସୁଖ ସ୍ୱାମୀ ହୃଦଗତେ କରିଥାଅ ଯେତିକ ।"

( ଆଦିପର୍ବ—ପୃ ୧୩୭-୩୮ )

ପୁନଶ୍ଚ -

"ପରନିନ୍ଦା ପରହିଂସା ପରମାଦ ଛାଡ଼ ହୋ ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଯେ ମାୟା ଚହଟ ।

ଲୋଭ ମୋହ କାମ କ୍ରୋଧ ଅହଙ୍କାର ହିଂସା
ଯେତିକ ଦୂର କରି ନାଥ କର ନିକଳଂକ ।"

( ଆଦିପର୍ବ—ପୃ ୧୩୯ )

ନୀତି-ଅନୀତିର ବିଗ୍ରହ ଗାନ୍ଧାରୀଙ୍କ ଚରିତ୍ରରେ ବହୁ ସ୍ଥଳରେ ଦେଖିବାକୁ ମିଳେ । ଅନୀତି ପଥରୁ ନିଜ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନକୁ ନିବର୍ତ୍ତାଇବା ପାଇଁ ସେ ବାରମ୍ବାର ଉପଦେଶ ଦେଇଛନ୍ତି । ନିଜ ଜନ୍ମ ରହସ୍ୟମୟ ଥିଲେବେଳେ ପାଣ୍ଡବମାନଙ୍କ ଜନ୍ମ ରହସ୍ୟ ଉଦ୍‌ଘାଟନ କରି ସେମାନଙ୍କୁ ଅପମାନିତ କରିବା ଉଚିତ ହୋଇ ନାହିଁ ବୋଲି ଗାନ୍ଧାରୀ 'ଗୋଳକପୁତ୍ର' ପ୍ରସଙ୍ଗରେ ଦୁର୍ଯ୍ୟୋଧନଙ୍କୁ ଉପଦେଶ ଦେଇ କହୁଛନ୍ତି—

"ଯୁଧିଷ୍ଠିର ତୋହର ଯୁଗତେ ଅଟଇ ଜ୍ୟେଷ୍ଠ ଭ୍ରାତ
ତାହାକୁ ନିତ୍ୟେ ଗୁରୁ ବୋଲୁ ବସ ହୋ ଧର୍ମସୁତ ।

× × ×

ପଣ୍ଡୁ ଧୃତରାଷ୍ଟ୍ର ଯେ ନୋହନ୍ତି ନା ଭିନ୍ନ
ତୋତେ ଲାଜ ନୋହଇ କି ଯୁଧିଷ୍ଠିରଙ୍କ ଅଭିମାନ ।

× × ×

ଆପଣାର ଶରୀରେ ପଡ଼ନ୍ତୁ ଅଂଶାଇ
ପରଙ୍କୁ ହସୁ କମା ନାସିକାରେ ହସ୍ତ ଦେଇ ।"

(ଆଦିପର୍ବ—ପୃ. ୪୫୭)

ଗାନ୍ଧାରୀଙ୍କଠାରେ ଅସାଧାରଣ ନାରୀତ୍ୱ ମୂର୍ତ୍ତିଉଠିଛି । ସେ ଶତପୁତ୍ରର ଜନନୀ ହେଲେ ମଧ୍ୟ ସର୍ବଦା ଅଶାନ୍ତି ମଧ୍ୟରେ କାଳାତିପାତ କରିଅଛନ୍ତି । କାରଣ ସେ ଭଲଭାବରେ ଜାଣିଅଛନ୍ତି ଯେ ତାଙ୍କ ପୁତ୍ରଗଣ ଦୁଷ୍ଟ, ଦୁର୍ନୀତିପରାୟଣ ଏବଂ ପରସ୍ୱାପହରଣ ପଟୁ, ଯେଉଁଥି ପାଇଁ ସେମାନେ ଶେଷରେ କୁଳଧ୍ୱଂସର କାରଣ ହେବେ । ଅପର ପକ୍ଷରେ କୁନ୍ତୀ ଦେବୀଙ୍କର ପଞ୍ଚପୁତ୍ର ଦେବପ୍ରତିମ ଥିଲେ ମଧ୍ୟ ଗାନ୍ଧାରୀଙ୍କ ମନରେ ଥରେ ମାତ୍ର ଈର୍ଷା ଦେଖିବାକୁ ମିଳେନା । ବରଂ ସେ ଆବଶ୍ୟକ ସ୍ଥଳେ ସେମାନଙ୍କର ପ୍ରଶଂସା ଗାନ କରିବା ନିମନ୍ତେ ଭୂଲି ନାହାନ୍ତି । ମଧ୍ୟପର୍ବରେ 'ବାଣେଶ୍ୱର ଶିବ ଉପାସନା' ପ୍ରସଙ୍ଗରେ ଅର୍ଜୁନ ସ୍ୱୀୟବାହୁ ବଳରେ ସହସ୍ର ସହସ୍ର ସ୍ୱର୍ଣ୍ଣଚମ୍ପା ମାତାଙ୍କୁ ପ୍ରଦାନ କରି ତାଙ୍କ ମହତ୍ତ୍ୱ ରକ୍ଷା କରିଥିବାରୁ ଗାନ୍ଧାରୀ ଲଜ୍ଜିତା ହୋଇଛନ୍ତି ସତ, ମାତ୍ର ସେ କୁନ୍ତୀଙ୍କୁ ମନେ ମନେ ପ୍ରଶଂସା କରିଅଛନ୍ତି ।

"ସୁପୁତ୍ର ଉପୁଜାଇ କୋଇଲା ସାଧୁ ଅରଜିଲ
ଅସଜନ ଗାନ୍ଧାରୀ ପୋଷେ କିଛି ହିଁ ନୋହିଲ ।"

(ପୃ. ୧୧୬୫)

ପଣ୍ଡୁଙ୍କ ମୃତ୍ୟୁରେ କୁନ୍ତୀ ଶୋକାକୁଳା ହୋଇ ପଡ଼ିଛନ୍ତି । ମୃତ ପତିଙ୍କ ଶୋକ ପାଶୋରିବା ପାଇଁ ଗାନ୍ଧାରୀ କୁନ୍ତୀଙ୍କୁ ସାନ୍ତ୍ୱନା ଦେଇଅଛନ୍ତି । ନାରୀ ହୋଇଥିବାରୁ ଅନ୍ୟ ଗୋଟିଏ ନାରୀ ହୃଦୟର ବ୍ୟଥା-ବେଦନା ସେ ଭଲଭାବେ ହୃଦୟଙ୍ଗମ କରିପାରି ଅଛନ୍ତି । ଏ କ୍ଷେତ୍ରରେ ପ୍ରଦର୍ଶିତ ସମବେଦନାରେ ତାଙ୍କ ଚରିତ୍ରର ମହନୀୟତା ପ୍ରକଟିତ ।

ଜଣେ ସାଧାରଣ ନାରୀ ହେଲେ ମଧ୍ୟ ସ୍ଥାନେ ସ୍ଥାନେ ସାରଳାଙ୍କ ତୂଳୀରେ ତାଙ୍କ ଅସାଧାରଣତାର ମୂର୍ତ୍ତି ଉଠିଛି । ନିଜର ଦୂରଦୃଷ୍ଟି ବଳରେ ସେ ଜାଣି ପାରିଅଛନ୍ତି ଯେ ଶକୁନି ପ୍ରତିଶୋଧ ନେବା ନିମନ୍ତେ ନିଶ୍ଚୟ କୁରୁକୁଳର ଧ୍ୱଂସ ସାଧନ କରିବ । ଏଣୁ ଏହି ଆଶଙ୍କା ପ୍ରକାଶ କରି ସେ ଦୁର୍ଯ୍ୟୋଧନଙ୍କୁ କହିଛନ୍ତି—

"ଯାହାର ବଂଶ ନାଶ କଲୁ ତାହାକୁ କଲୁ ମନ୍ତ୍ରୀ
ଉଭୟ କୂଳ ନ ପାଇବ ବୋଲି ବୋଇଲେ ମହାସତୀ ।"

( ଆଦିପର୍ବ—ପୃ: ୪୭୭ )

ଏଣୁ ନର୍କର ଜ୍ୟେଷ୍ଠଭ୍ରାତା ହୋଇଥିଲେ ସୁଦ୍ଧା ତାକୁ ମନ୍ତ୍ରୀ ନ କରିବା ନିମନ୍ତେ ସେ ଦୁର୍ଯ୍ୟୋଧନଙ୍କୁ ଉପଦେଶ ଦେଇଅଛନ୍ତି; ମାତ୍ର ଯୌବନ-ମଦ-ମତ୍ତ ଦୁର୍ଯ୍ୟୋଧନ ସେଥିପ୍ରତି କର୍ଣ୍ଣପାତ କରି ନାହାନ୍ତି । ଶେଷରେ ଗାନ୍ଧାରୀଙ୍କ ଆଶଙ୍କା ସତ୍ୟରେ ପରିଣତ ହୋଇଛି ଏବଂ ଶକୁନି କୁରୁବଂଶ ଧ୍ୱଂସର ପ୍ରଧାନ କାରଣ ହୋଇଅଛି ।

ମହାଭାରତ ଯୁଦ୍ଧ ଶେଷରେ ଗାନ୍ଧାରୀଙ୍କ ଅନ୍ଧପଟଳ ଫିଟାଇବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଗାନ୍ଧାରୀଙ୍କ ଅନ୍ଧପଟଳ ଫିଟିବା ପରେ ପରେ ଯେ ପ୍ରଥମେ ତାଙ୍କ ଦୃଷ୍ଟିରେ ପଡ଼ିବ ସେ ତାଙ୍କ ନୟନାନଳରେ ଦଗ୍ଧୀଭୂତ ହୋଇଯିବ - ଏକଥା ଶ୍ରୀକୃଷ୍ଣ ଜାଣିପାରିଛନ୍ତି । ତେଣୁ ସେ ଦୁର୍ଲକ୍ଷଙ୍କୁ ଗାନ୍ଧାରୀଙ୍କ ଅନ୍ଧପଟଳ ଫିଟାଇବା ପାଇଁ କହିଅଛନ୍ତି । ଏପରି କରିବା ଫଳରେ ଦୁର୍ଲକ୍ଷ ଗାନ୍ଧାରୀଙ୍କ ନୟନରୁ ନିର୍ଗତ ଅଗ୍ନିରେ ଧ୍ୱଂସ ହୋଇଯାଇ ଅଛନ୍ତି । ସେ ଥିଲେ କୁରୁବଂଶର ଶେଷାଙ୍କୁର । ତାଙ୍କ ନିଧନରେ ଗାନ୍ଧାରୀ କ୍ରୋଧାନ୍ୱିତ ହୋଇ ଶ୍ରୀକୃଷ୍ଣଙ୍କୁ କୁରୁକୁଳ ଧ୍ୱଂସ ନିମନ୍ତେ ଦାୟୀ କରିଅଛନ୍ତି ଏବଂ ବିରାଟ ଯଦୁବଂଶ ଧ୍ୱଂସ ପାଇବ ଓ ଶ୍ରୀକୃଷ୍ଣ ଘୋର ଅରଣ୍ୟ ମଧ୍ୟରେ ନିହତ ହେବେ ବୋଲି ଗାନ୍ଧାରୀ ତାଙ୍କୁ ଅଭିଶାପ ଦେଇଅଛନ୍ତି ।

କେତେକ ସୁଗୁଣର ଅଧିକାରୀ ହୋଇଥିଲେ ମଧ୍ୟ ଗାନ୍ଧାରୀଙ୍କ ଚରିତ୍ରରେ ସାଧାରଣ ମାତୃ-ହୃଦୟର ସ୍ୱାଭାବିକ ଦୁର୍ବଳତାର ଚିତ୍ର ଫୁଟି ଉଠିଛି । ଶତପୁତ୍ର ନିଧନରେ ସେ ଶୋକାକୁଳ ହୋଇ ପଡ଼ିଛନ୍ତି ଏବଂ ହତାହତ ଜ୍ଞାନଶୂନ୍ୟ ହୋଇ ଶ୍ରୀକୃଷ୍ଣ ଓ ପାଣ୍ଡବମାନଙ୍କୁ ଶତପୁତ୍ର ନିଧନର କାରଣ ବୋଲି ଭାବିଛନ୍ତି; ମାତ୍ର ଭୁଲିଯାଇ ଅଛନ୍ତି, ତାଙ୍କର ଅବିବେକୀ, ନିଷ୍ଠୁର ଏବଂ ଅପରିଣାମଦର୍ଶୀ ପୁତ୍ରଗଣ ନିଜ ମୃତ୍ୟୁକୁ ନିଜେ ବରଣ କରିଆଣିଛନ୍ତି ।

ପରଶ୍ରୀକାତରତା ମଧ୍ୟ ତାଙ୍କ ଚରିତ୍ରର ଅନ୍ୟତମ ବିଭାବ । ପାଣ୍ଡବମାନଙ୍କର ସୌଭାଗ୍ୟ ସେ ଦୁଇ ଚକ୍ଷୁରେ ଦେଖିପାରି ନାହାନ୍ତି । ତେଣୁ ସେମାନଙ୍କର ରାଜ୍ୟାଭିଷେକ ଉତ୍ସବର କୋଳାହଳ ତାଙ୍କୁ ଶ୍ରୁତିକଟୁ ବୋଧ ହୋଇଅଛି ଏବଂ ଏ ସୌଭାଗ୍ୟରେ ସେ ଈର୍ଷାନ୍ୱିତା ହୋଇ ଉଭୟେ ଗଙ୍ଗାସାଗରରେ ଝାସ ଦେଇ ପ୍ରାଣ ହରାଇବା ନିମନ୍ତେ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଇ କହିଛନ୍ତି—

"ଗାନ୍ଧାରୀ ବୋଇଲେ ସ୍ୱାମୀ ଧୃତରାଷ୍ଟ୍ର
ଯେତେକାଳ ବ୍ରତବା ସ୍ୱେଚ୍ଛମତ କଷ୍ଟ ।
ସାଗର ସଙ୍ଗମେ ପଶି ଝାସ ଦେବା ନିଜ ପ୍ରାଣ
ଅଭିଷେକ ସରିଲେ ଆମ୍ଭେ ଯାଇ ଫିନା ପୁଣ ।"

( ଶାନ୍ତିପର୍ବ—ପୃ. ୧୪ )

ସର୍ବଶେଷରେ ଏ ସଂସାରର ଅନିତ୍ୟତା ସେ ବୁଝି ପାରିଛନ୍ତି ଏବଂ ବନଗମନ ନିମନ୍ତେ ସ୍ଥିର କରିଛନ୍ତି । ଏହା ଜାଣି ତାଙ୍କ ସହିତ ଧୃତରାଷ୍ଟ୍ର, କୁନ୍ତୀ, ବିଦୁର, ସଞ୍ଜୟ ପ୍ରମୁଖ ବୈରାଗୀ ବେଶଧାରଣ କରି ବନବାସ ପଥରେ ପଥିକ ହୋଇଅଛନ୍ତି ।

ଶ୍ରୀମତୀ ସରଳା ଦେବୀ ଗାନ୍ଧାରୀ ଚରିତ୍ର ସମ୍ବନ୍ଧରେ କହନ୍ତି—"ଏହି ନାରୀ ଚରିତ୍ର ଆଲୋକ ଅନ୍ଧକାର, ଭଲମନ୍ଦ ଓ ଦୋଷଗୁଣରେ ପରିପୂର୍ଣ୍ଣ । ପତ୍ନୀଭାବରେ, ମାତୃଭାବରେ ଭିନ୍ନ ଭିନ୍ନ ଦିଗରୁ ଦେଖିଲେ ନାରୀ ଚରିତ୍ରର ଅନଧିଗମ୍ୟ ରହସ୍ୟ ଦୃଷ୍ଟ ହୁଏ । ଅବସ୍ଥାର ସଂଘାତ ଏହି ନାରୀଙ୍କ ଜୀବନରେ ନାନା ଘଟଣାରେ ବିଭିନ୍ନ ରଙ୍ଗର ବିଚିତ୍ର ସମାବେଶ ଘଟାଇଛି । ସାରଳା ଦାସଙ୍କ ତୁଳୀରେ ଏ ଚିତ୍ର ବଡ଼ ଉଜ୍ଜ୍ୱଳ ଓ କରୁଣ ।" *

## କୁନ୍ତୀ :

କୁନ୍ତୀ ଚରିତ୍ର ମଧ୍ୟ ସାରଳା ଦାସଙ୍କର ଅନ୍ୟ ଏକ ଅନବଦ୍ୟ ସୃଷ୍ଟି । ପାଣ୍ଡୁଙ୍କ ଜ୍ୟେଷ୍ଠରାଣୀ ଓ ପଞ୍ଚପାଣ୍ଡବଙ୍କ ଜନନୀ ଏହି ନାରୀଙ୍କ ଚରିତ୍ରର ମହନୀୟତା ମହାଭାରତର ବହୁ ସ୍ଥଳରେ ଫୁଟି ଉଠିଛି ।

ସିଂହପୁର କଟକର ରାଜା କୁନ୍ତଭୋଜଙ୍କର ଏକମାତ୍ର ଅଳଅଳି କନ୍ୟା କୁନ୍ତୀ । ରାଜା ପୁତ୍ରହୀନ ଥିବାରୁ କୁନ୍ତୀ ଥିଲେ ତାଙ୍କର ଏକମାତ୍ର ନୟନ ପିତୁଳି । ଏକଦା ଦୁର୍ବାସା ମୁନି ସିଂହେଶ୍ୱର କଟକରେ ଉପସ୍ଥିତ ହୋଇଅଛନ୍ତି ଏବଂ ସେଠାରେ ଚତୁର୍ମାସ୍ୟା ବ୍ରତ ପାଳନ କରିବାର ନିଷ୍ପତ୍ତି ରାଜାଙ୍କୁ ଜଣାଇଛନ୍ତି । ଏ ପ୍ରସ୍ତାବରେ ରାଜା କୃତ୍ୟ କୃତ୍ୟ ହୋଇଛନ୍ତି । ଦୁର୍ବାସାଙ୍କ ସେବା କାର୍ଯ୍ୟରେ ରାଜକୁମାରୀ କୁନ୍ତୀ ନିଯୁକ୍ତା ହୋଇଛନ୍ତି । ଅତି ନିଷ୍ଠାର ସହିତ ଦୀର୍ଘ ପାଞ୍ଚବର୍ଷ କାଳ ସେ ଋଷିଙ୍କର ସେବା କରିଅଛନ୍ତି । ମହାକୋପୀ, ମହାତେଜା ଦୁର୍ବାସା ଋଷିଙ୍କର ସେବା ସୁଚାରୁରୂପେ ଦୀର୍ଘ ପାଞ୍ଚବର୍ଷ କାଳ କରିବା କିଛି କମ କଥା ନୁହେଁ । କିନ୍ତୁ କୁମାରୀ କୁନ୍ତୀ ତାଙ୍କ ସେବାରେ ଆଦୌ ତ୍ରୁଟି କରି ନାହାନ୍ତି । ଫଳରେ ଋଷିଙ୍କଠାରୁ ସେ ଏକ ଜପାମାଳି ପ୍ରାପ୍ତ ହୋଇଛନ୍ତି । ଏହି ମାଳର ମାହାତ୍ମ୍ୟ ହେଉଛି ସେ ଯାହାକୁ ଏଇ ମାଳ ସାହାଯ୍ୟରେ ସ୍ମରଣ କରିବେ, ସେ ତାଙ୍କ ପ୍ରତି ପ୍ରସନ୍ନ ହେବେ । ଏପରି ଏକ ଦୁର୍ଲ୍ଲଭ ବସ୍ତୁ ପ୍ରାପ୍ତ ହେଲାପରେ ଯେ କୌଣସି କିଶୋରୀ କୌତୂହଳ ବଶତଃ ଏହାର ଗୁଣ ପରୀକ୍ଷା କରିବା ନିମନ୍ତେ ଉଚ୍ଛନ୍ନ ହୋଇ ପଡ଼ିବେ । କୁନ୍ତୀ ବା କିପରି ବାଦ ଯାଇଥାନ୍ତେ ? ବାଳିକା ସୁଲଭ କୁତୂହଳ ନେଇ ସେ ମାଳର ଗୁଣ ପରୀକ୍ଷା ଲାଗି ବ୍ୟସ୍ତ ହୋଇ ପଡ଼ିଛନ୍ତି । କବି କହିଛନ୍ତି--

---

* ସହକାର –୪ର୍ଥ ବର୍ଷ—୨ୟ/୩ୟ ସଂଖ୍ୟା—ଫେବୃୟାରୀ/ମାର୍ଚ୍ଚ, ୧୯୨୬ ।

"ସ୍ୱେ ମହାଯତ ଯେବେ ମାଳା ଦେଇଗଲେ ମୋତେ
ସ୍ୱେଥର ତଦନ୍ତ ମୁଂ ଜାଣିମି କେମନ୍ତେ ।"

(ଆଦିପର୍ବ—ପୃ. ୧୬୪)

କାଳ ବିଳମ୍ବ ନ କରି ସେ ଯମୁନା କୂଳକୁ ଯାଇଛନ୍ତି ଏବଂ ସେଠାରେ ପତ୍ରଶଯ୍ୟା ରଚନା କରି ମାଳଧରି କାହାକୁ ଡାକିବେ ବୋଲି ଚିନ୍ତା କରିଛନ୍ତି । ଜଣେ ଅଳ୍ପ ବୟସ୍କା ବାଳିକାର ଚିନ୍ତାଶକ୍ତି ବା କେତେ ? ସେ ଶୂନ୍ୟଆଡ଼କୁ ଅନାଇଛନ୍ତି; ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଛି ପଶ୍ଚିମାକାଶରେ ଅସ୍ତଗାମୀ ହେଉଥିବା ସୂର୍ଯ୍ୟଦେବଙ୍କାଙ୍କ ଉପରେ । କିଛି ନ ଭାବି ନ ଚିନ୍ତି କୁନ୍ତୀ ତାଙ୍କୁ ସ୍ମରଣ କରିଛନ୍ତି । ତତ୍କ୍ଷଣାତ୍ ସୂର୍ଯ୍ୟଦେବତା ସେଠାରେ ଉପନୀତ ହୋଇ ତାଙ୍କ ମନୋବାଞ୍ଛା ପୂର୍ଣ୍ଣ କରିଛନ୍ତି । ଫଳରେ ସେ ଅନ୍ତଃସତ୍ତ୍ୱା ହୋଇଛନ୍ତି; ମାତ୍ର ଅ-ବିବାହିତା କୁମାରୀ କନ୍ୟାର ଗର୍ଭ-ଧାରଣ ଅତ୍ୟନ୍ତ ଲଜ୍ଜାଜନକ । ଏଣୁ ସେ ବ୍ୟାକୁଳ ହୋଇ ପଡ଼ିଛନ୍ତି । ସୂର୍ଯ୍ୟ ଦେବତା ତାଙ୍କୁ ସାନ୍ତ୍ୱନା ଦେଇଛନ୍ତି । ସନ୍ତାନ ପ୍ରସବ କରିବା ଫଳରେ ସେ ଅସତୀ ହେବାର ଆଶଙ୍କା ଥିବାରୁ ତାଙ୍କ ଅନୁରୋଧ ରକ୍ଷାକରି କର୍ଣ୍ଣବାଟେ ପୁତ୍ର ସନ୍ତାନଟିଏ ଜାତ ହେବାର ବ୍ୟବସ୍ଥା ସୂର୍ଯ୍ୟ ଦେବତା କରିଛନ୍ତି । ପୁତ୍ରରତ୍ନ ଲଭ କରି ସେ ଆନନ୍ଦିତ ହୋଇପାରି ନାହାନ୍ତି, ବରଂ ଆତଙ୍କିତ ହୋଇ ପଡ଼ିଛନ୍ତି, ନିଜର ବର୍ତ୍ତମାନ ଓ ଭବିଷ୍ୟତ ଅବସ୍ଥା ଚିନ୍ତା କରି । ତାଙ୍କର ଚିନ୍ତା ଏହିପରି—

କୁମରି କୋଳେ ଧରି ସେ ଭୋଜର କୁମାରୀ
କିସ ବୁଦ୍ଧି କରିବି ବୋଲଣ ମନରେ ବିଚାରି ।

× × ×

"ମାତା ପିତାଙ୍କ ଆଗରେ ମୁଂ କେମନ୍ତେ କହିବି ମିଥ୍ୟା
ସତ କହିଲେ ତ ହୋଇବ ଲଜ୍ୟା ଅପ୍ରମିତା ।
ପରଦାରସ୍ୱୈଣୀ ବୋଲି କେହି ପ୍ରଦାନ ନୋହିବେ
ସମସ୍ତେ ହେଂ ଦୁର୍ବାସା ଋଷିଂକ ଦୋଷ ଦେବେ ।"

(ଆଦିପର୍ବ—ପୃ. ୧୬୮)

ଶତଶୃଙ୍ଗ ପର୍ବତର ନିମ୍ନ ଦେଶରେ ଏକ କୁଡ଼ିଆ ଭିତରେ ବାସ କରୁଥିଲେ ହେଁ କୁନ୍ତୀଙ୍କ ମନରେ ଆଦୌ ଦୁଃଖ ନାହିଁ । କାରଣ ଯୁଧିଷ୍ଠିର, ଭୀମ ପ୍ରଭୃତି ସୁଯୋଗ୍ୟ ସନ୍ତାନ ଲଭ କରି ସେ ନିଜକୁ ଧନ୍ୟା ମନେ କରିଅଛନ୍ତି । ରାଜ୍ୟ, ପ୍ରତିପତ୍ତି, ଧନସମ୍ପତ୍ତି ଆଦିଠାରୁ ସୁପୁତ୍ର ଲଭକୁ ସେ ଅଧିକ ଗୌରବ ମନେ କରିଅଛନ୍ତି । ସନ୍ତାନ ବାତ୍ସଲ୍ୟରେ ତାଙ୍କ ହୃଦୟ ସର୍ବଦା ପୂର୍ଣ୍ଣ ଥିବାର ଦେଖାଯାଏ ।

ମାଦ୍ରୀ ତାଙ୍କର ସପତ୍ନୀ ହେଲେ ମଧ୍ୟ ମାଦ୍ରୀଙ୍କ ପ୍ରତି ତାଙ୍କର ଲେଶମାତ୍ର ଈର୍ଷା ଥିବାର ଦେଖାଯାଏ ନାହିଁ । ବରଂ ମାଦ୍ରୀଙ୍କୁ ସେ ନିଜର କନିଷ୍ଠା ଭଗିନୀ ସଦୃଶ ଦେଖିଛନ୍ତି ଏବଂ ତାଙ୍କ ଦୁଃଖରେ ସମଦୁଃଖିନୀ ହୋଇଛନ୍ତି । ମାଦ୍ରୀ ସନ୍ତାନହୀନା ଥିବାରୁ କୁନ୍ତୀ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଛନ୍ତି । ସେ ପୁତ୍ରବତୀ ହୋଇଥିବା ସ୍ଥଳେ ସପତ୍ନୀ ନିଃସନ୍ତାନ ହୋଇ ରହିବେ--ଏହି ଚିନ୍ତା ତାଙ୍କୁ ଗଭୀର ଭାବେ ବିଷାଦଗ୍ରସ୍ତା କରିଅଛି । ମାଦ୍ରୀ ପୁତ୍ରବତୀ ହେବାରେ ସେ ଯେପରି ତ୍ୟାଗ ସ୍ୱୀକାର କରିଛନ୍ତି ତାହା କୌଣସି ସପତ୍ନୀ ପକ୍ଷରେ ସମ୍ଭବ ନୁହେଁ । ନିଜେ ନାରୀ; ଏଣୁ ନାରୀ ହୃଦୟର ବେଦନାକୁ ସେ ବା ନ ବୁଝିଥାନ୍ତେ କିପରି ?

କପାଳ ଲିଖନକୁ ଭାଗ୍ୟବାଦିନୀ କୁନ୍ତୀ ଆନନ୍ଦର ସହିତ ଗ୍ରହଣ କରି ନେଇଛନ୍ତି । ରାଜ-ଐଶ୍ୱର୍ଯ୍ୟ ଏବଂ ଦୀନହୀନ ଭାବରେ ଜୀବନ ଯାପନ—ଏ ଦୁଇଟିକୁ ସେ ହସି ହସି ବରଣ କରି ନେଇଛନ୍ତି । ଦ୍ରୌପଦୀ ସ୍ୱୟମ୍ବର ପୂର୍ବରୁ ପାଣ୍ଡବମାନଙ୍କ ସହିତ କୁନ୍ତୀ ନିରାଶ୍ରୟ ଭାବରେ ବୁଲୁଥିବା ସମୟରେ ଶୀତ ଦାଉରୁ ରକ୍ଷା ପାଇବା ନିମନ୍ତେ ସେ ଗୋରୁ ଗୁହାଳ ଏବଂ କୁମ୍ଭାରଶାଳକୁ ବାଛି ନେଇଛନ୍ତି । ଏଥି ନିମନ୍ତେ ସେ ସାମାନ୍ୟ କୁଣ୍ଠା ପ୍ରକାଶ କରି ନାହାନ୍ତି । ଏହି ସମୟରେ ସେ ପାଣ୍ଡବମାନଙ୍କୁ କହିଛନ୍ତି—

"କୋଇନ୍ତାସ୍ୟେ ହୋଇଲେ କୁଶଳଶାଳ ଦେଖି
ମୋହୋର ବସ୍ଥିରକୁ ସ୍ୟେ ସ୍ଥାନ ଦିଅ ସୁଖୀ ।

× × ×

ସ୍ୟେ ମାଘମାସ ଆମ୍ଭର ଶୀତ ବସ୍ତ୍ର ନାହିଂ
ପାଉଂଶ ଗୁଡ଼ାସ୍ୟେ ପାନ୍ତି ଶୋଇବା ଉତ୍ତମ ହୋଇ ।"

(ଆଦିପର୍ବ—ପୃ. ୭୬୫)

ଅର୍ଜୁନ ଲକ୍ଷ୍ୟ ଭେଦ କରିବା ପରେ ଦ୍ରୌପଦୀଙ୍କୁ ଲାଭ କରିଅଛନ୍ତି ଏବଂ ଅନ୍ୟ ଭାଇମାନଙ୍କ ସାଙ୍ଗରେ ତାଙ୍କୁ ନେଇ ଯାଇଛନ୍ତି ପାଞ୍ଚାଳ ନଗରର ବାହାରେ ଥିବା କୁମ୍ଭାରଶାଳକୁ, ଯେଉଁଠି ଜନନୀ କୁନ୍ତୀ ଉଦ୍‌ବିଗ୍ନ ହୋଇ ସେମାନଙ୍କୁ ଅପେକ୍ଷା କରିଥିଲେ । ସେଠାରେ କୁନ୍ତୀ ଏହି ସୁକୁମାରୀ ରାଜକୁମାରୀ ଦ୍ରୌପଦୀଙ୍କୁ କୁମ୍ଭାରଶାଳର ପାଉଁଶ ଉପରେ ଶୋଇବାକୁ ନିର୍ଦ୍ଦେଶ ଦେଇଛନ୍ତି; ମାତ୍ର ତୁଳୀ ତଳ୍ପରେ ନିଦ୍ରା ଯିବାରେ ଅଭ୍ୟସ୍ତ ଥିବା ଅଳଅଳି ଦ୍ରୌପଦୀ ପାଉଁଶ ଶଯ୍ୟାରେ ଶୋଇବାକୁ କିପରି ବା ସହଜରେ ରାଜି ହୁଅନ୍ତେ ? ତାଙ୍କର ଥଙ୍ଗ ଥଙ୍ଗ ଭାବ ଦେଖି କୁନ୍ତୀ କହିଅଛନ୍ତି—

"କୋଇଲ୍ରାସ୍ତେ ବୋଇଲେ ଗୋ ଭକ୍ଷାଣୀ ମୋହୋର ପୋସ୍ତେ
ତୋହୋର କରମେ ସ୍ୱେହାନ୍ତ ପାଇଲୁ ଗୋ ମାସ୍ତେ ।
ଯାହା ଅରଜ ମାତା ତାହା ସିନା ଭୁଞ୍ଜି
ସମ୍ପଦ ବିପଦ ମା ଗୋ ସଂସାରର ମଞ୍ଜି ।"

(ଆଦିପର୍ବ—ପୃ ୮୧୫)

ରାଜରାଣୀ ହୋଇ ସେ ଭାଗ୍ୟ ବିପର୍ଯ୍ୟୟ ହେତୁ ରାଜ-ଐଶ୍ୱର୍ଯ୍ୟରୁ ବଞ୍ଚିତ ହୋଇଛନ୍ତି । ଦାରିଦ୍ର୍ୟର କଷାଘାତରେ ମଧ୍ୟ ତିଳ ତିଳ ନିଷ୍ପେଷିତ ହୋଇଛନ୍ତି । ତଥାପି ତାଙ୍କ ମନରେ ସାମାନ୍ୟତମ କଷ୍ଟ ଦେଖାଦେଇ ନାହିଁ । ଏହା କ'ଣ ସାଧାରଣ ଚରିତ୍ର ପକ୍ଷେ ସମ୍ଭବପର ?

ଗାନ୍ଧାରୀ ଚରିତ୍ର ଭଳି କୁନ୍ତୀ ଚରିତ୍ର ମଧ୍ୟ କବିଙ୍କ ଲେଖନୀରେ ଦୋଷଗୁଣ ଉଭୟର ସମିଶ୍ରଣ । ଦେବୀ ଗୁଣର ଅଧିକାରିଣୀ ହେବା ସଙ୍ଗେ ସଙ୍ଗେ ଏହି ମହୀୟସୀ ନାରୀ ମଧ୍ୟ ସାଧାରଣ ମାନବୀ ଗୁଣର ଅଧିକାରିଣୀ । ବିଲ୍ୱକେଶ୍ୱର ଶିବ ଉପାସନା ପ୍ରସଙ୍ଗରେ କୁନ୍ତୀଙ୍କର ଗାନ୍ଧାରୀଙ୍କ ସହିତ ଉପୁଜିଥିବା କଳିହିରୁ ଏହା ପ୍ରତିପାଦିତ । ପ୍ରତିଯୋଗିତାରେ ଗାନ୍ଧାରୀଙ୍କୁ ପଛରେ ପକାଇ ଦେବା ନିମନ୍ତେ ସେ ଉପାୟ ସ୍ଥିର କରିଛନ୍ତି ଏବଂ ସାଧାରଣ ନାରୀ ଭଳି ଚିରାଚରିତ ପ୍ରଥାନୁଯାୟୀ ଅଭିମାନ କରି ଶୋଇଛନ୍ତି । ସୁପୁତ୍ର ବୀରଶ୍ରେଷ୍ଠ ଅର୍ଜୁନର ବୀରତ୍ୱ ଯୋଗୁଁ ନିଜର ସମ୍ମାନ ସେ ରକ୍ଷା କରିପାରିଛନ୍ତି ।

ପରିଶେଷରେ ଧୃତରାଷ୍ଟ୍ର, ଗାନ୍ଧାରୀ, ସଞ୍ଜୟ, ବିଦୁର ପ୍ରମୁଖଙ୍କ ସହିତ କୁନ୍ତୀ ବୈରାଗୀ ବେଶ ଧାରଣ କରି ବନଗମନ କରିଛନ୍ତି ।

## ଦ୍ରୌପଦୀ :

ସାରଳା ମହାଭାରତରେ ନାୟିକା ହେଉଛନ୍ତି ଦ୍ରୌପଦୀ । ଏହାଙ୍କ ଚରିତ୍ର ଚିତ୍ରଣରେ ମଧ୍ୟ ସାରଳା ଦାସଙ୍କ ମୌଳିକତା ପରିଲକ୍ଷିତ ହୁଏ । ଅନ୍ୟ ଚରିତ୍ରରେ ଅବଲମ୍ବନ କରିଥିବା କୌଶଳକୁ ମଧ୍ୟ ସେ ଏହି ଚରିତ୍ରରେ ପ୍ରୟୋଗ କରିଅଛନ୍ତି । ମହାଭାରତର ଦେବୀ ଦ୍ରୌପଦୀ ସାରଳା ଦାସଙ୍କ ଲେଖନୀରେ ଜଣେ ଅତି ସାଧାରଣ ରକ୍ତମାଂସଧାରିଣୀ ନାରୀ ରୂପେ ଚିତ୍ରିତା ହୋଇଛନ୍ତି । ସେ ଦ୍ରୁପଦ ରାଜାଙ୍କ କନ୍ୟା ହୋଇଥିବାରୁ ତାଙ୍କର ନାମ ଦ୍ରୌପଦୀ । ପୁନଶ୍ଚ ସେ ଯଜ୍ଞରୁ ଉଦ୍ଭବ ହୋଇଥିବାରୁ ତାଙ୍କ ନାମ ଯାଜ୍ଞସେନୀ ।

ସାରଳା ମହାଭାରତରେ ଦ୍ରୌପଦୀଙ୍କର ଜନ୍ମ ସମ୍ବନ୍ଧରେ ଅଦ୍ଭୁତ ବିବରଣୀ ରହିଛି । ସେ ପୂର୍ବଜନ୍ମରେ ଧର୍ମଠାକୁରଙ୍କ ପତ୍ନୀ କେତୁକା ଚଣ୍ଡୀ ଥିବାର ବର୍ଣ୍ଣନା

ସାରଳା ପ୍ରଦାନ କରିଛନ୍ତି । ସୃଷ୍ଟିର ପ୍ରାରମ୍ଭରେ ବିଷ୍ଣୁ କ୍ଷୀରସମୁଦ୍ରରେ ଶୟନ କରିଥିଲେ ଏବଂ ବିଶ୍ୱନିର୍ମାଣ ଚିନ୍ତାରେ ମଗ୍ନ ଥିଲେ । ଏହି ସମୟରେ ତାଙ୍କର ଅମୃତ ଦୃଷ୍ଟିରୁ ପଞ୍ଚଦଶ ବ୍ରହ୍ମା ଜାତ ହେଲେ । ଏହି ପଞ୍ଚଦଶ ବ୍ରହ୍ମା ବିଷ୍ଣୁ ସେବାରତ ସରସ୍ୱତୀଙ୍କ ପ୍ରତି ଲୋଲୁପ ଦୃଷ୍ଟି ନିକ୍ଷେପ କରିବାରୁ ସରସ୍ୱତୀଙ୍କ କୋପଦୃଷ୍ଟିରୁ କେଉଁକା ଆବିର୍ଭୂତା ହେଲେ । ସରସ୍ୱତୀ ଏହି ପଞ୍ଚଦଶ ବ୍ରହ୍ମାଙ୍କୁ ଆହାର ଭାବେ ଗ୍ରହଣ କରିବାକୁ କେଉଁକା ଚଣ୍ଡୀଙ୍କୁ ଆଦେଶ ଦେଲେ । କେଉଁକା ଚଉଦ ସହସ୍ର ବର୍ଷରେ ଚଉଦ ଜଣ ବ୍ରହ୍ମାଙ୍କୁ ମାରି ସେମାନଙ୍କ ରକ୍ତ ପାନକଲେ । ପଞ୍ଚଦଶ ତଥା ଅବଶେଷ ବ୍ରହ୍ମା ଶୂଦ୍ରକ ବିଷ୍ଣୁଙ୍କ ଶରଣାପନ୍ନ ହୋଇ ରକ୍ଷା ପାଇଗଲା । ବିଷ୍ଣୁଙ୍କ ଆଦେଶ ଅନୁସାରେ ଶୂଦ୍ରକ ବ୍ରହ୍ମା ମର୍ତ୍ତ୍ୟରେ ଦୁଃଶାସନ ରୂପେ ଜନ୍ମ ଗ୍ରହଣ କଲା ଏବଂ କେଉଁକା ଚଣ୍ଡୀ ଦୁଃଶାସନର ରକ୍ତ ପାନ କରିବା ନିମନ୍ତେ ଦ୍ରୌପଦୀ ରୂପରେ ଜନ୍ମ ଲଭି କଲେ ।

ତୀବ୍ର ପ୍ରତିହିଂସା ପ୍ରବୃତ୍ତିର ଜ୍ୱଳନ୍ତ ବିଗ୍ରହ ରୂପରେ ସେ ପରିକଳ୍ପିତା । ବିବସ୍ତ୍ରା କରିଥିବା ଅପରାଧରେ ଜଡ଼ିତ ଅତ୍ୟାଗ୍ରହୀ, ଅବିବେକୀ ଦୁଃଶାସନର ରକ୍ତପାନ କରି ପ୍ରତିଶୋଧ ନେବା ନିମନ୍ତେ ସେ ସଙ୍କଳ୍ପବଦ୍ଧା ହୋଇଛନ୍ତି । ପଞ୍ଚପତିଙ୍କୁ ସେ ଜ୍ୱଳନ୍ତ ଅଗ୍ନିକଣିକା ରୂପେ ପ୍ରଜ୍ଜ୍ୱଳିତ କରି କୁରୁବଂଶ ଦହନ କରିବାପରେ ତାଙ୍କ ଅଭିଳାଷ ପରିପୂର୍ଣ୍ଣତା ଲଭ କରିଛି । ଦୁଃଶାସନର ରକ୍ତ ପାନ ସମୟରେ ତାଙ୍କର କରାଳୀ ଚଣ୍ଡିକା ରୂପର ଏକ ଭୟଙ୍କର ଚିତ୍ର ସାରଳା ପ୍ରଦାନ କରିଅଛନ୍ତି—

"ବୃଷ୍ଟି ହୋଇଲା କି ଲକ୍ଷେ କୁମ୍ଭ ନୀର
ରୁଧିର ବୃଷ୍ଟି ହେଉଛି ଦ୍ରୌପଦୀର ଶିର ।
ଲଲାଟେ ପ୍ରିଟିଣ ସେ ନାସିକା ବାଟେ ଗଲା
ସେ ରୁଧିର ଆପ୍ୟାନ କଲା ଦେବୀ ସେ ପାଞ୍ଚାଳୀ ।"

( କର୍ଣ୍ଣପର୍ବ—ପୃ-୧୦୨ )

ସାରଳା ସୃଷ୍ଟିରେ ଦ୍ରୌପଦୀ ଜ୍ୱାଳାମୟୀ, ଲେଲିହାନ ଅଗ୍ନିଶିଖା । ମହାଭାରତ ସୃଷ୍ଟି ନିମନ୍ତେ କବି ଦ୍ରୌପଦୀଙ୍କୁ ମୁଖ୍ୟତଃ ଦାୟୀ କରିଛନ୍ତି । ସ୍ୱର୍ଗାରୋହଣ କାଳରେ ଦ୍ରୌପଦୀ ପ୍ରଥମେ ପଥଭ୍ରଷ୍ଟା ହୋଇ ପଡ଼ିଛନ୍ତି; ମାତ୍ର ସର୍ବାଗ୍ର ପଥିକ ଯୁଧିଷ୍ଠିର ଏଥିରେ ବିଚଳିତ ହୋଇ ନାହାନ୍ତି । ବରଂ ଦ୍ରୌପଦୀଙ୍କ ଚରିତ୍ରର ଏକ ପ୍ରଚ୍ଛନ୍ନ ଚିତ୍ର ପ୍ରଦାନ କରି ସେ ଭୀମଙ୍କୁ କହିଛନ୍ତି -

"ଯୁଧିଷ୍ଠି ବୋଇଲେ ସେ ଦ୍ରୌପଦୀ ବଡ଼ ଦୋଷୀ
ସୋଦର ପଣରେ କହୁରବନ୍ତ ଅମରଷି ।
ପଞ୍ଚଦଶ ବରଷ କେଶ ବନ୍ଧନ ନ କଲା
ଅନେଶ୍ୱତ ଖାଇନ୍ତ ବର୍ଧକରି କେଶତ ବାନ୍ଧିଲା ।"

( ସ୍ୱର୍ଗାରୋହଣ ପର୍ବ—ପୃ-୬୧ )

ଦ୍ରୌପଦୀ ଅସାମାନ୍ୟା ସୁନ୍ଦରୀ । ତେଣୁ ତାଙ୍କ ସ୍ୱୟମ୍ବରରେ ଉପସ୍ଥିତ ରାଜନ୍ୟବର୍ଗ ତାଙ୍କ ମୁଖ ଦର୍ଶନ ନିମନ୍ତେ ବ୍ୟାକୁଳ ହୋଇ ଉଠିଛନ୍ତି । ତାଙ୍କ ଭାଇ ଧୃଷ୍ଟଦ୍ୟୁମ୍ନ ଯେତେବେଳେ ତାଙ୍କୁ ଆବୃତ ହାନ୍ଦୋଳରୁ ଆଣି ସର୍ବସମକ୍ଷରେ ଦଣ୍ଡାୟମାନ କରାଇଲେ, ଜରାସନ୍ଧ, କର୍ଣ୍ଣର ରାଜ୍ୟର ରାଜା ଗଣପତ, ଦାମନର ରାଜା, କର୍ଣ୍ଣ, ଦୁର୍ଯ୍ୟୋଧନ ପ୍ରଭୃତି ଉପସ୍ଥିତ ଅତିଥିଗଣ ତାଙ୍କର ଅପରୂପ ତନୁଶ୍ରୀକୁ ମୁଗ୍ଧ-ଚକିତ ନୟନରେ ଚାହିଁ ରହିଅଛନ୍ତି । ଅର୍ଜୁନ ଲକ୍ଷଭେଦରେ କୃତକାର୍ଯ୍ୟ ହେବାପରେ ପଞ୍ଚପାଣ୍ଡବ ଦ୍ରୌପଦୀଙ୍କୁ ସାଥିରେ ନେଇ ନଗର ବାହାରେ ଥିବା ଏକ କୁମ୍ଭାର ଶାଳରେ ଅପେକ୍ଷାମାଣା ମାତା କୁନ୍ତୀଙ୍କ ନିକଟରେ ପହଞ୍ଚିଛନ୍ତି । ସୁକୁମାରୀ କୋମଳାଙ୍ଗୀ ରାଜକନ୍ୟା ଦ୍ରୌପଦୀଙ୍କୁ ଶାଶୁଙ୍କ ନିର୍ଦ୍ଦେଶରେ କୁମ୍ଭାରଶାଳରେ ଅଙ୍ଗାର ଓ ପାଉଁଶ ଗଦାରେ ରାତ୍ରିଯାପନ କରିବାକୁ ପଡ଼ିଅଛି । ରାଜପ୍ରାସାଦର ସୁକୋମଳ ଶଯ୍ୟାରୁ ପାଉଁଶ ଶଯ୍ୟାକୁ ହଠାତ୍ ପରିବର୍ତ୍ତନ ଦ୍ରୌପଦୀଙ୍କ ମନରେ ହତାଶାର କଳାମେଘ ଛାଇଁ ଦେଇଅଛି । ସେ ବିଧାତାଙ୍କୁ ଏଥି ନିମନ୍ତେ ଦାୟୀ କରି ବିଳାପ କରି ଉଠିଛନ୍ତି । କବି ଲେଖିଛନ୍ତି—

"ଦ୍ରୌପଦୀ ବଇକୁଣ୍ଠ ପାଉଂଶ ଶେଯ୍ୟା ଦେଖି<br>
କେଉଁ ଦଇବ ପୁରୁଷ ମୋହୋର କପାଳେ ଯେହ୍ନା ସେ ଅଛୁ ଲେଖି ।

× × ×

ପାଞ୍ଚାଳ ରାଜାର ମୁଂ ଅଟଇ ଦୁଲଣୀ<br>
କେଉଁ ଦଇବ ପୁରୁଷ ମୋତେ ଏଥା କଲୁ ଆଣି ।"

( ଆଦିପର୍ବ—ପୃ-୮୯୫ )

ଦ୍ରୌପଦୀଙ୍କୁ ଏକ ସାଧାରଣ ଗାଉଁଲି ନାରୀରୂପେ ସାରଳା ଦାସ ଚିତ୍ରଣ କରି-ଅଛନ୍ତି । ସଭାପର୍ବରେ ହିଡ଼ିମ୍ବିକା ଓ ଦ୍ରୌପଦୀଙ୍କ କଳହ ମଧ୍ୟରେ ଉତ୍କଳର ଦୁଇ ସଉତୁଣୀ କଳିର ଏକ ସୁନ୍ଦର ଚିତ୍ର ଫୁଟି ଉଠିଛି । ଯୁଧିଷ୍ଠିରଙ୍କ ଦ୍ୱାରା ଆୟୋଜିତ ରାଜସୂୟ ଯଜ୍ଞରେ ସମଗ୍ର ଭାରତର ରାଜା ମହାରାଜାମାନେ ଯୋଗ ଦେଇଛନ୍ତି । ଏହି ଅବସରରେ ହିଡ଼ିମ୍ବିକାର ପୁତ୍ର ଘଟୋତ୍କଚକୁ ସଭା ମଧ୍ୟକୁ ଅଣାଯାଇଛି । ସେ ଦ୍ରୌପଦୀଙ୍କ ବ୍ୟତୀତ ଅନ୍ୟ ସମସ୍ତ ସମ୍ମାନୀୟ ଗୁରୁଜନମାନଙ୍କୁ ନମସ୍କାର କରିଛି । ତାର ଏପରି କାର୍ଯ୍ୟରେ ଦ୍ରୌପଦୀ କୁପିତା ହୋଇ ତାହାକୁ 'ଅଳ୍ପାୟୁଷ ହୁଅ' ବୋଲି ଅଭିଶାପ ଦେଇଛନ୍ତି । ସଭା ବାହାରେ ଉପସ୍ଥିତା ହିଡ଼ିମ୍ବିକା ଦ୍ରୌପଦୀଙ୍କର ଏପରି ଆଚରଣରେ କ୍ରୁଦ୍ଧା ହୋଇ ଉଠିଛି ଏବଂ ସଭା ମଧ୍ୟକୁ ପଶିଆସି ଏକ ଝଡ଼ ସୃଷ୍ଟି କରିଛି । ଦ୍ରୌପଦୀ ଓ ହିଡ଼ିମ୍ବିକା ଦୁଇ ସପତ୍ନୀର ମନୋଭାବ ନେଇ ସମସ୍ତ ନାରୀ ସୁଲଭ ଶାଳୀନତା ଭୁଲି ଶତ ଶତ ଅତିଥି ଉପସ୍ଥିତ ଏହି ବିରାଟ ସଭା ଭିତରେ ଉଭୟଙ୍କ ମଧ୍ୟରେ ଆକ୍ଷେପୋକ୍ତି-

ମାନ ବନିମୟ କରିଛନ୍ତି । ଏଠାରେ ଜଣେ ସାଧାରଣ କଳହପ୍ରିୟା ନାରୀ ଭାବେ ଦ୍ରୌପଦୀ ଚିତ୍ରିତା ।

ଜଣେ ସାଧାରଣ ଉତ୍କଳୀୟା ରମଣୀ ରୂପେ ବର୍ଣ୍ଣିତା ଏଇ ସୁନ୍ଦରୀ ତରୁଣୀଙ୍କୁ ଏକ କ୍ରୁଦ୍ଧା ନାଗୁଣୀର ଜୀବନ୍ତ ପ୍ରତିମୂର୍ତ୍ତି ଭାବେ ଦୁର୍ଯ୍ୟୋଧନର ରାଜସଭାରେ ଦେଖିବାକୁ ମିଳେ ବସ୍ତ୍ରହରଣ କାଳରେ । ନିଜ ପଞ୍ଚପତିଙ୍କ ସମକ୍ଷରେ ସେ ଦୁଃଶାସନ ଦ୍ୱାରା ଅତ୍ୟାଚରିତା; ମାତ୍ର ସତ୍ୟଭଙ୍ଗ ଭୟରେ ପଞ୍ଚପତି ନୀରବ ଦର୍ଶକର ଭୂମିକା ଗ୍ରହଣ କରିଛନ୍ତି । ଏଇ ପରିପ୍ରେକ୍ଷୀରେ ନିଜ ପତ୍ନୀର ସମ୍ମାନ ରକ୍ଷା ନିମନ୍ତେ ଅକ୍ଷମ ପଞ୍ଚବୀରଙ୍କୁ ସେ ଉପହାସରେ ଜର୍ଜ୍ଜରିତ କରି ପକାଇଛନ୍ତି ।

ସାରଳାଙ୍କ ଲେଖନୀରେ ଦ୍ରୌପଦୀ ଜଣେ ଚରିତ୍ରବତୀ ନାରୀ ରୂପେ ବର୍ଣ୍ଣିତ । ନିଜ ଚରିତ୍ରର ବିଶୁଦ୍ଧତା ନିମନ୍ତେ ସେ ପ୍ରତ୍ୟେକ ସ୍ୱାମୀଙ୍କ ସହ ଶୃଙ୍ଗାର ପରେ ପରେ ଅଗ୍ନି-ସ୍ନାନ କରନ୍ତି; ଅର୍ଥାତ୍ ଅଗ୍ନିରେ ନିଜକୁ ଦାହ କରି ନିଜର ପୂର୍ବ ଶୁଦ୍ଧତା ଫେରାଇ ଆଣନ୍ତି । ("ତନୁଶୁଦ୍ଧ କରିବାକୁ ଅଗ୍ନିରେ ପଶନ୍ତି" ମଧ୍ୟପର୍ବ — ପୃ : ୧୩ ) ପୁନଶ୍ଚ ସେ ଜଣେ କାମୁକା ନାରୀ ରୂପେ ମଧ୍ୟ ଚିତ୍ରିତା । ଯୁଧିଷ୍ଠିରଙ୍କ-ଶ୍ୱାନରୂପୀ ଅଗ୍ନିଦେବତାଙ୍କୁ ଶାପ ଦେବା ଓ ଅନ୍ୟାନ୍ୟ ବର୍ଣ୍ଣନା ଭିତରେ ଦ୍ରୌପଦୀ ଚରିତ୍ରରେ କାମୁକତା ବିଶେଷ ଭାବରେ ପ୍ରକାଶିତ ହୋଇଅଛି ।

ଦ୍ରୌପଦୀଙ୍କ ଚରିତ୍ରରେ ସ୍ପଷ୍ଟବାଦିତା ମଧ୍ୟ ଦେଖିବାକୁ ମିଳେ । ବନପର୍ବରେ ସତ୍ୟ-ଆମ୍ବ ପ୍ରସଙ୍ଗରେ ସେ ନିଜର ପାପ ଓ ଦୁର୍ବଳତା ନିଃସଙ୍କୋଚ ଭାବେ ପ୍ରକାଶ କରିଛନ୍ତି । ସତ୍ୟ ପ୍ରକାଶ କରିବା ନିମନ୍ତେ ସେ ତଳେ ମାତ୍ର କୁଣ୍ଠା ପ୍ରକାଶ କରି ନାହାନ୍ତି । ଶ୍ରୀକୃଷ୍ଣ ଓ ନିଜର ପଞ୍ଚପତିଙ୍କ ସମ୍ମୁଖରେ ସେ ନିଜ ଅନ୍ତରର ଗୁପ୍ତ କଥା ପ୍ରକାଶ କରିଛନ୍ତି ଯେ ପଞ୍ଚସ୍ୱାମୀ ଥିଲେ ମଧ୍ୟ ତାଙ୍କର ମନ ବେଳେ ବେଳେ ବୀର ଓ ସୁଦର୍ଶନ କର୍ଣ୍ଣଙ୍କ ପ୍ରତି ଧାବିତ ହୁଏ । ତାଙ୍କ ସ୍ୱୀକାରୋକ୍ତି କବିଙ୍କ ଲେଖନୀରେ ଏହିପରି ରୂପ ପାଇଛି—

"ଦ୍ରୁପଦଜୀ ବୋଇଲେ ସ୍ତ୍ରୀ ଜାତିଂକର ଯେସନକ ପ୍ରକୃତି
ଶୁରବନ୍ତ ସୁନ୍ଦର ପୁରୁଷ ଦେଖିଲେ ସେ ଅବଶ୍ୟ ବଳାବନ୍ତି ମତି ।
× × ×
ଯୁଗତେ ଯେ ମୋହର ଅଛନ୍ତି ପଞ୍ଚ ପତି
ଯେତେମାନେ ଥାନ୍ତେ ମୋହୋର କର୍ଣ୍ଣେ ବଳେ ମତି ।" ❋

( ବନପର୍ବ—ପୃ : ୫୭୧ )

---

❋ ପାଠାନ୍ତରେ—
ଯେତେକାମାତ୍ର ଅର୍ଜ୍ଜୁନରେ ମୋହୋର ଅଧିକ ପୀରତି ।

ଉକ୍ତ ସ୍ପଷ୍ଟୋକ୍ତି ମାଧ୍ୟମରେ ସେ ନିଜ ଚରିତ୍ରର ମହତ୍ତ୍ୱ ନଷ୍ଟ କରିଥିଲେ ମଧ୍ୟ ସତ୍ୟର ଉଦ୍‌ଘାଟନ କରି ସ୍ୱପତାତ୍ତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି ।

## ସୁଭଦ୍ରା :

ଅର୍ଜୁନଙ୍କୁ କବି ସାରଳା ଦାସ ଅତି ସଂଯମୀ ଓ ସଚ୍ଚରିତ୍ର ଭାବେ ବର୍ଣ୍ଣନା କରିଅଛନ୍ତି; ମାତ୍ର ତାଙ୍କ ପ୍ରଣୟିନୀ ସୁଭଦ୍ରାଙ୍କ ଚରିତ୍ର କବି ଲେଖନୀରେ ଠିକ୍ ବିପରୀତ ରୂପ ଲାଭ କରିଛି । ସାରଳାଙ୍କ ଅନ୍ୟାନ୍ୟ ନାରୀଚରିତ୍ରଭଳି ଏ ଚରିତ୍ର ମଧ୍ୟ ଅତିଶୟ ଶୃଙ୍ଗାର ପ୍ରୟାସୀ, ଅତ୍ୟନ୍ତ କାମାତୁରା ଏବଂ ଖୁବ୍ ଲଜ୍ଜାହୀନା ଏକ ନାରୀ ଚରିତ୍ର ।

ମଧ୍ୟପର୍ବରେ ସୁଭଦ୍ରା ହରଣ ଓ ସୁଭଦ୍ରା ପରିଣୟ ପ୍ରସଙ୍ଗରେ ଆମେ ସୁଭଦ୍ରାଙ୍କୁ ଜଣେ ନ୍ୟୂନସ୍ତରର ନାରୀ ଭାବରେ ଦେଖିବାକୁ ପାଉ । ଅର୍ଜୁନଙ୍କ ସୌନ୍ଦର୍ଯ୍ୟ ଓ ବୀରତ୍ୱରେ ମୁଗ୍‌ଧା ସୁଭଦ୍ରା ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଛନ୍ତି ଏବଂ କାମ-ଜର୍ଜ୍ଜରିତା ହୋଇ ଓ ନାରୀସୁଲଭ ସମସ୍ତ ଶାଳୀନତା ଭୁଲି ସେ ଅର୍ଜୁନଙ୍କୁ ପ୍ରେମ ନିବେଦନ କରିଛନ୍ତି; ମାତ୍ର ଚରିତ୍ରବାନ ଅର୍ଜୁନ ତାଙ୍କ ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ବାରମ୍ବାର ଚେଷ୍ଟା ସତ୍ତ୍ୱେ ବିଫଳ ହେବାରୁ ସୁଭଦ୍ରା ଅର୍ଜୁନ-ବିହୀନ ଜୀବନକୁ ତୁଚ୍ଛ ମନେକରି କଟାରୀ ସାହାଯ୍ୟରେ ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଛନ୍ତି । ଏ କାର୍ଯ୍ୟରେ ମଧ୍ୟ ସେ ସଫଳ ହୋଇପାରି ନାହାନ୍ତି । ଏଠାରେ ଏକ ଦୁର୍ବଳା ନାରୀର ମନସ୍ତତ୍ତ୍ୱ ଅତି ସୁନ୍ଦର ଭାବେ ସୁଭଦ୍ରାଙ୍କ ଚରିତ୍ରରେ ପ୍ରତିଫଳିତ ।

କାମାତୁରା ସୁଭଦ୍ରା ହିତାହିତ ଜ୍ଞାନ ଭୁଲି ଅତି ଲଜ୍ଜାହୀନା ଭାବରେ ନିଜର ଅନ୍ତରଙ୍ଗ ସତ୍ୟଭାମାଙ୍କ ଆଗରେ ନିଜ ହୃଦୟର ଦୁର୍ବଳତା ପ୍ରକାଶ କରିଛନ୍ତି । ସେ କହୁଛନ୍ତି –

> "ପ୍ରେମନେତ୍ରେ ଅର୍ଜୁନକୁ ଯେବେ ନୁଆରିବୁ ଭେଟକରି
> ରାତ୍ରକାଳେ ପଶିବି ମୁଂ ଅର୍ଜୁନ ଶୟନ ପୁରୀ ।
> ଯେସନେକ ଲାଜ ଭୟ ତେଜଇ ଟନ୍ଦକର
> ମୁହିଂ ଆଚରଣ କଲି ତେସନେକ ବେଭାର ।"
>
> ( ମଧ୍ୟପର୍ବ—ପୃ : ୨୧୩ )

ସତ୍ୟଭାମା ସୁଭଦ୍ରାଙ୍କର ଏତାଦୃଶ ଅବସ୍ଥା ପ୍ରତି ସମବେଦନା ପ୍ରକାଶ କରିଅଛନ୍ତି । ସେ ସୁଭଦ୍ରାଙ୍କୁ ସଙ୍ଗରେ ନେଇ ଅର୍ଜୁନଙ୍କ ନିକଟରେ ଉପସ୍ଥିତ ହୋଇଅଛନ୍ତି । ସୁଭଦ୍ରା ଅର୍ଜୁନଙ୍କୁ କହୁଛନ୍ତି ଯେ ସେ କାମାତୁରା, କ୍ଷୁଧିତା ଏବଂ କାମୋନ୍ମାଦନାରେ ପ୍ରପୀଡ଼ିତ ହୋଇ ତାଙ୍କ ପାଖକୁ ଧାଇଁ ଆସିଛନ୍ତି; କିନ୍ତୁ ଅର୍ଜୁନ ଏଥିରେ କର୍ଣ୍ଣପାତ କରି ନାହାନ୍ତି । ଫଳରେ ସେମାନେ ନିରାଶ ହୋଇ ଫେରି

ଆସିବାକୁ ବାଧ୍ୟ ହୋଇଛନ୍ତି । ଅର୍ଜୁନଙ୍କୁ ବଶ କରି ପାରି ନ ଥିବାରୁ ସତ୍ୟଭାମା ବିଚଳିତ ହୋଇପଡ଼ିଛନ୍ତି । ଶେଷରେ ନିଜ ଅଭିଳାଷର ଚରିତାର୍ଥ ନିମନ୍ତେ ସୁଭଦ୍ରା କାମାକ୍ଷୀ ଦେବୀଙ୍କଠାରୁ ବିଭିନ୍ନ ପ୍ରକାର ତନ୍ତ୍ରମନ୍ତ୍ର ଶିକ୍ଷା କରିଅଛନ୍ତି । ଏହି ତନ୍ତ୍ରମନ୍ତ୍ର ବଳରେ ସେ ଅର୍ଜୁନଙ୍କ ରୁଦ୍ଧଦ୍ୱାର ଉନ୍ମୋଚନ କରି ତାଙ୍କୁ ବଶ କରିବା ନିମନ୍ତେ ସମର୍ଥା ହୋଇଅଛନ୍ତି ।

ଅର୍ଜୁନଙ୍କ ସହିତ ମିଳନ ପରେ ମଧ୍ୟ କବି ସୁଭଦ୍ରାଙ୍କୁ ଏକ କାମାତୁରୀ ନାରୀଭାବେ ଚିତ୍ରଣ କରିଛନ୍ତି । କାମଜର୍ଜ୍ଜରିତା ସୁଭଦ୍ରା ଲଜ୍ଜାହୀନ ଭାବରେ ଯେପରି ବାରମ୍ବାର ଶୃଙ୍ଗାର ଭିକ୍ଷା କରିଛନ୍ତି, ତାହା ତାଙ୍କ ଚରିତ୍ରକୁ ଅତ୍ୟନ୍ତ ନିମ୍ନସ୍ତରକୁ ନେଇଯାଏ । କବି ଲେଖିଛନ୍ତି –

"ସୋହୋଦ୍ରା ବୋଇଲେ ପାର୍ଥ ଅପାର ଅଛି ରାତି
ମୋତେ ଦେଖି ବିମୁଖ କିମ୍ପା ହୋଇଲୁ ସୁତକୋନ୍ତି ।"

( ମଧ୍ୟପର୍ବ—ପୃ: ୬୭୩ )

ନିଜ ଗ୍ରନ୍ଥରେ ସୁଭଦ୍ରାଙ୍କୁ କବି ବିରହାତୁରୀ ରାଧା ଚରିତ୍ର ଭଳି ଚିତ୍ରଣ କରିଅଛନ୍ତି । ଜଣେ ସାଧାରଣ ଶୃଙ୍ଗାରାକୁଳା ନାରୀରୂପେ ସୁଭଦ୍ରାଙ୍କୁ ବର୍ଣ୍ଣନା କରି ତାଙ୍କ ଚରିତ୍ର ମାଧ୍ୟମରେ ନାରୀର ଅତ୍ୟନ୍ତ କାମ-ପିପାସା, ତନ୍ତ୍ରମନ୍ତ୍ର ବଳରେ ସମ୍ଭୋଗ, ଶୃଙ୍ଗାରର ଯଥେଚ୍ଛା ଉପଭୋଗ ଆଦିର ସୂଚନା ଦେଇ କବି ପଞ୍ଚଦଶ ଶତକର ସମାଜରେ ସୁଦୃଢ଼ ଆସନ ଅଧିକାର କରିଥିବା ତାନ୍ତ୍ରିକ ବୌଦ୍ଧ ସହଜିଆ ତଥା ଅଧଃପତିତ ବାମାଚାର ଓ କୌଳମାର୍ଗ ପ୍ରଭାବର ସମ୍ୟକ୍ ଚିତ୍ର ପ୍ରଦାନ କରିଛନ୍ତି ।

ସାରଳା ମହାଭାରତ ଏକ ନାରୀ-ଚରିତ୍ର-ବହୁଳ ଗ୍ରନ୍ଥ । ଏଥିରେ ବର୍ଣ୍ଣିତ ସମସ୍ତ ନାରୀ ଚରିତ୍ରରେ ସାରଳାଦାସଙ୍କ ସମସାମୟିକ ସମାଜର ଚିତ୍ର ପ୍ରତିଫଳିତ । "—ମୃଦୁସ୍ୱଳ ଚରିତ୍ରଠାରୁ ଆରମ୍ଭ କରି ରାଜକୁମାରୀ ଏପରିକି ଶ୍ରୀରାଧା ଚରିତ୍ର ପର୍ଯ୍ୟନ୍ତ ସବୁଥିରେ ରହିଛି ସେହି ଆଦିମ ଯୌନ-ପିପାସା । ସାରଳା କ'ଣ ନାରୀ ଜାତିକୁ ହୀନ ଦୃଷ୍ଟିରେ ଦେଖିଛନ୍ତି ? ସେ ପୁଣି ଥିଲେ ଜଣେ ନୈଷ୍ଠିକ ଶକ୍ତି-ଉପାସକ, ସେ କିପରି ଏ ପ୍ରକାର ବିଷୟ ଅବତାରଣା କରିବାରେ ପ୍ରବୃତ୍ତ ହେଲେ ? ଏହା ସାଧାରଣ କଥା ଯେ କବି ତତ୍‌କାଳୀନ ଗ୍ରାମ୍ୟ ସମାଜର କେତେକ ଅସ୍ୱାଭାବିକ ବିଲକ୍ଷଣଯୁକ୍ତ ନାରୀ ଚରିତ୍ରକୁ ଲକ୍ଷ୍ୟ କରିଛନ୍ତି ଓ ସେହିସବୁ ବିଷୟକୁ ମହାଭାରତର ବିଭିନ୍ନ ଚରିତ୍ରର ଅଙ୍ଗୀଭୂତ କରିଅଛନ୍ତି । ଖ୍ରୀ ୧୧—୧୨ଶ ଶତାବ୍ଦୀରୁ ଓଡ଼ିଶାରେ ବୈଷ୍ଣବଧର୍ମର ଅଭ୍ୟୁତ୍‌ଥାନ ଘଟିଲା ଏଥିରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ଚରିତ୍ରରେ ପରକୀୟା ପ୍ରେମର ଉଦ୍ଦାମ ପ୍ରବାହ ଦେଖା ଦେଲା । କିନ୍ତୁ ଯାହା ହେଉନା କାହିଁକି, କବି ସାରଳା ମହାଭାରତର ନାରୀ ଚରିତ୍ରରେ ଅତ୍ୟଧିକ କାମପ୍ରବଣତା ଦେଖାଇ ଅନ୍ୟ

ବାଗରେ ପୁରୁଷ ଚରିତରେ ବଳିଷ୍ଠ ପୁରୁଷାକାର ଆରୋପ କରି ଯଥାର୍ଥ କାମ ଶାସ୍ତ୍ରର ଚର୍ଚ୍ଚା କରିବା ସୁବିଧା ପାଇଛନ୍ତି । ନାରୀର ପ୍ରବଳ କାମତୃଷ୍ଣାକୁ ଯେ ପୁରୁଷ ଯଥାର୍ଥ ଭାବରେ ଉପଭୋଗ କରିବାରେ ସମର୍ଥ ହୋଇଛି, ତାହା ପ୍ରକାରାନ୍ତରେ ପ୍ରତିପାଦିତ ହୋଇଛି ।'*

## ସାହିତ୍ୟିକ ମୂଲ୍ୟ

ସାରଳାଦାସ ଓଡ଼ିଆ ସାହିତ୍ୟର ଜନକ ଏବଂ ତାଙ୍କ ରଚିତ ମହାଭାରତ ଏ ଦେଶର ଜାତୀୟ ମହାକାବ୍ୟ । ସଂସ୍କୃତ ଭାଷା ଓ ସାହିତ୍ୟ ଓଡ଼ିଆ ଭାଷା ଓ ସାହିତ୍ୟକୁ ଯେତେବେଳେ ସମ୍ପୂର୍ଣ୍ଣ ଭାବେ ଗ୍ରାସ କରିନେଇଛି, ସେତିକବେଳେ ଯୋଗଜନ୍ମା ମହାକବି ସାରଳାଦାସ ଲେଖନୀ ଚାଳନା କରି ଓଡ଼ିଆ ଭାଷାକୁ ସାହିତ୍ୟିକ ସୌକୁମାର୍ଯ୍ୟ, ସାବଲୀଳ ସୌନ୍ଦର୍ଯ୍ୟ ଓ କାବ୍ୟିକ ପ୍ରକାଶଭଙ୍ଗୀ ପ୍ରଦାନ କରିଅଛନ୍ତି । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ସଂସ୍କୃତ ଭାଷାର ଅନୁବାଦ ହୋଇ ନ ଥିବାରୁ ଏବଂ ତାଙ୍କ ପୂର୍ବରୁ ଓଡ଼ିଆ ଭାଷାରେ ମହାଭାରତ ସଦୃଶ ବିରାଟକାୟ ଗ୍ରନ୍ଥ ରଚିତ ହୋଇ ନ ଥିବାରୁ ତାଙ୍କୁ ଓଡ଼ିଆ ସାହିତ୍ୟର 'ଆଦିକବି' ଏବଂ ତାଙ୍କ ସାହିତ୍ୟକୁ 'ଆଦି ସାହିତ୍ୟ' ରୂପେ ସମାଲୋଚକମାନେ ଗ୍ରହଣ କରିଥାନ୍ତି । ସୁତରାଂ ତାଙ୍କ ସାହିତ୍ୟର ବିଭିନ୍ନ ଛନ୍ଦରେ ରୂପାୟିତ କବିତ୍ୱ ତାଙ୍କର ଏକାନ୍ତ ନିଜସ୍ୱ, ମୌଳିକ, ନିରାଡ଼ମ୍ବର ଓ ସରଳ । ଏହି କବିତ୍ୱକୁ ବିଶ୍ଳେଷଣ କଲେ ଆମେ ସାରଳା ଦାସଙ୍କ ପ୍ରଚଣ୍ଡ କବି ପ୍ରତିଭାର ସମ୍ୟକ୍ ପରିଚୟ ପାଉ, ଯାହା ପୁଷ୍କଳତାରେ ଅପୂର୍ବ, ବୈଚିତ୍ର୍ୟରେ ମନମୁଗ୍‌ଧକର ଏବଂ ଅନନ୍ୟତାରେ ଭାସ୍ୱର । ଏଇ ସରଳ ଗ୍ରାମ୍ୟ କବି ନିଜର ମହୀୟସୀ କବି ପ୍ରତିଭା ବଳରେ ସାଧାରଣ ଜନତାର ଆଶା-ଆକାଙ୍‌କ୍ଷା, ହର୍ଷ-ବିଷାଦ ଓ ସାମାଜିକ ଘାତ-ପ୍ରତିଘାତର ଏଭଳି ଜୀବନ୍ତ ଚିତ୍ର ପ୍ରଦାନ କରିଛନ୍ତି ଯେ, ଯେ କୌଣସି ପାଠକକୁ ଏହା ମୁଗ୍‌ଧ-ଚକିତ କରେ ।

## ରଚନା ଶୈଳୀ :

ଉତ୍କଳ ବ୍ୟାସ ସାରଳାଙ୍କ ପୂର୍ବରୁ ଓଡ଼ିଆ ଭାଷାରେ କୌଣସି ବିଧିବଦ୍ଧ କାବ୍ୟ ରଚିତ ହୋଇଥିବାର ପ୍ରମାଣ ଅଦ୍ୟାବଧି ମିଳିନାହିଁ । ତେଣୁ ତାଙ୍କ ସମ୍ମୁଖରେ କୌଣସି ରଚନା ଶୈଳୀ ନ ଥିଲା, ଯାହାର ଆଦର୍ଶରେ ସେ ନିଜ ଗ୍ରନ୍ଥ ରଚନା କରିଥା'ନ୍ତେ । ନିଜ ପ୍ରତିଭା ବଳରେ ଶୂନ୍ୟତା ମଧ୍ୟରୁ ସେ ଏକ ନୂତନ ରଚନା ଶୈଳୀର ଉଦ୍‌ଭାବନ କରିଥିଲେ, ଯାହା ତାଙ୍କ ଗ୍ରନ୍ଥରେ କେବଳ ନୁହେଁ, ପରବର୍ତ୍ତୀ

---

* ଓଡ଼ିଆ ସାହିତ୍ୟର ଇତିହାସ—୨ୟଭାଗ – ଲେ: ଡଃ ବଂଶୀଧର ମହାନ୍ତି— ପୃ: ୧୯୨-୧୯୩ ।

ଛନ୍ଦୋବଦ୍ଧ ଶ୍ରୀଚୈତନ୍ୟଙ୍କ ଯୁଗରେ ମଧ୍ୟ ବିଭିନ୍ନ ପୁରାଣ ରଚନାରେ ବ୍ୟବହୃତ ହୋଇ ନିଜର ଅସ୍ତିତ୍ୱ ବଜାୟ ରଖିପାରିଥିଲା । ଅନେକଙ୍କ ମନରେ ସନ୍ଦେହ ଜାତ ହୁଏ, ବୋଧହୁଏ ସାରଳାଙ୍କ ପୂର୍ବରୁ ଆମ ଭାଷାରେ ଏକ ବିଧିବଦ୍ଧ କାବ୍ୟ ଶୈଳୀର ସୃଷ୍ଟି ହୋଇ-ସାରିଥିଲା ; ମାତ୍ର କାଳର କରାଳ ଗର୍ଭରେ ଏହା ବିଲୀନ ହୋଇ ଯାଇଛି । ଯଦି ଏ ପ୍ରକାର ଅନୁମାନରେ ସତ୍ୟତା ଥିବାର ଧରାଯାଏ, ତେବେ ସ୍ୱୀକାର କରିବାକୁ ହେବ ଯେ ସାରଳାଦାସ ପୂର୍ବରୁ ପ୍ରଚଳିତ ରଚନା ଶୈଳୀକୁ ଗ୍ରହଣ କରିନେଇ ଅଛନ୍ତି ; କିନ୍ତୁ ସଂସ୍କୃତ ସାହିତ୍ୟ ଯେଉଁ ସମୟରେ ଏବଂ ଯେଉଁ ସମାଜରେ ନିରଙ୍କୁଶ ଆଧିପତ୍ୟ ବିସ୍ତାର କରିନେଇଥିଲା, ସେ ସମୟରେ ଓଡ଼ିଆ ଭାଷାରେ ଏକ ନିର୍ଦ୍ଦିଷ୍ଟ କାବ୍ୟ ପରମ୍ପରା ପ୍ରଚଳିତ ଥିବା ଏବଂ ସମୟ କ୍ରମେ ତାହାର ବିଲୟ ଘଟିଥିବା କେମିତି କେଜାଣି ବିଶ୍ୱାସ କରିହୁଏ ନାହିଁ । ଏଣୁ ସାରଳା ଦାସଙ୍କ ଶୈଳୀକୁ ଆଦି ରଚନା ଶୈଳୀ ରୂପେ ଗ୍ରହଣ କରିନେବା ହିଁ ଅଧିକ ଯୁକ୍ତିଯୁକ୍ତ ।

ସାରଳା ମହାଭାରତ ଦାଣ୍ଡି ବୃତ୍ତରେ ରଚିତ । ଏପ୍ରକାର ବୃତ୍ତର ପ୍ରଧାନ ଲକ୍ଷଣ ହେଉଛି, ଏହାର ପ୍ରତ୍ୟେକ ପଦ ଦୁଇପାଦ, ଚରଣ ବା ପଙ୍କ୍ତି ବିଶିଷ୍ଟ । ପ୍ରତ୍ୟେକ ଚରଣରେ ଅକ୍ଷରର ସମାନତା ନ ଥାଏ । କେଉଁଠିରେ ନଅଗୋଟି ଅକ୍ଷର ଥାଏ ତ କେଉଁଠିରେ ବତିଶ ଗୋଟି ଥିବାର ଦେଖାଯାଏ । ଅର୍ଥାତ୍ ଅନେକ ସ୍ଥଳରେ ପ୍ରତିଧାଡ଼ିର ଅକ୍ଷର ସଂଖ୍ୟା ସମାନ ନ ଥାଏ । କେତେକ ସ୍ଥଳରେ ପ୍ରତି ଧାଡ଼ିର ଅକ୍ଷର ସଂଖ୍ୟା ଚଉଦ ଥାଏ । ମହାଭାରତ ହିନ୍ଦୁମାନଙ୍କର ଏକ ପବିତ୍ର ଗ୍ରନ୍ଥ ହୋଇଥିବାରୁ ଏହାକୁ ଜଣେ ଜଣେ ପୁରାଣ ପଣ୍ଡା ସମବେତ ନରନାରୀଙ୍କ ସମ୍ମୁଖରେ ଗାନ କରିଥାନ୍ତି । ଅକ୍ଷର ସଂଖ୍ୟାରେ ତାରତମ୍ୟ ଲକ୍ଷିତ ହେଲେ ହେଁ ଗାନ ସମୟରେ ଗାୟକ କୌଣସି ଅସୁବିଧାର ସମ୍ମୁଖୀନ ହୋଇ ନ ଥାଏ । କାରଣ ଗାୟକ ସ୍ୱରର ଆରୋହ ଅବରୋହ ଦ୍ୱାରା ପ୍ରତିଧାଡ଼ିକୁ ଏପରି ପଢ଼େ ଯେ ସବୁ ଧାଡ଼ିରେ ସମାନ ସଂଖ୍ୟକ ଅକ୍ଷର ଥିବାଭଳି ଜଣାଯାଏ ।

କାବ୍ୟ କବିତାର ପ୍ରଥମ ଆବଶ୍ୟକୀୟ ଗୁଣ ହେଉଛି ସ୍ୱତନ୍ତ୍ରୀତା । ସାରଳାଙ୍କ ରଚନାରେ ଏହି ସ୍ୱତନ୍ତ୍ରୀତା ସ୍ପଷ୍ଟ । 'ଅକ୍ଷର ଗଣିବ ହାତରେ, ତେବେ ମେ ଲହିବ ପଦରେ' ଶୈଳୀରେ ସେ ତାଙ୍କର କାବ୍ୟ କୋଣାର୍କ ନିର୍ମାଣ କରି ନାହାନ୍ତି । ଏଣୁ ପ୍ରତିଭାର ଏକ ସ୍ପଷ୍ଟ ପ୍ରତିଫଳନ ତାଙ୍କ ରଚନା ଶୈଳୀରେ ପରିଲକ୍ଷିତ ହୁଏ ।

## ଭାଷା :

ନିଜ ଗ୍ରନ୍ଥ ରଚନାରେ ସାରଳା ଯେଉଁ ଭାଷା ବ୍ୟବହାର କରିଛନ୍ତି, ତାହା ହେଉଛି ସାଧାରଣ ଜନତାର ଭାଷା । ମହାଭାରତର କଣ୍ଠ-ପ୍ରାଣପ୍ରଦ ଓ ମାଧୁର୍ଯ୍ୟ ମଣ୍ଡିତ ଭାଷା ଏହାକୁ ଲୋକପ୍ରିୟ କରିପାରିଛି । ନିରୋଳ ଲୋକମୁଖର ଓଡ଼ିଆ ଭାଷାକୁ ସାହିତ୍ୟିକ

ଅଭିବ୍ୟକ୍ତିର ଶ୍ରେଷ୍ଠ ମାଧ୍ୟମ ରୂପେ ବ୍ୟବହାର କରି ସେ କେବଳ ତତ୍କାଳୀନ ପାଠକବର୍ଗଙ୍କର ସଶ୍ରଦ୍ଧ ସମ୍ମାନ ଦାବୀ କରି ନାହାନ୍ତି, ଚିରକାଳ ନିମିତ୍ତ ସମଗ୍ର ଓଡ଼ିଆ ଜାତି ନିକଟରେ ନମସ୍ୟ ହୋଇ ରହିଅଛନ୍ତି ।

ଓଡ଼ିଆ ଚର୍ଯ୍ୟାପଦରେ ବ୍ୟବହୃତ କେତେକ ଶବ୍ଦ ସାରଳାଙ୍କ ରଚନାରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ, 'କେରୁଆଳ' ଶବ୍ଦଟି କାହ୍ନୁପା, ସରହପା ଆଦି ସିଦ୍ଧାଚାର୍ଯ୍ୟଙ୍କ ରଚିତ ଚର୍ଯ୍ୟାପଦାବଳୀରେ ଦେଖିବାକୁ ମିଳେ । ଏହି ଶବ୍ଦଟିର ବହୁଳ ବ୍ୟବହାର ଆମେ ପାଉ ସାରଳା ମହାଭାରତରେ । ଚର୍ଯ୍ୟାବଳୀରେ ପରିଦୃଷ୍ଟ ଏବଂ ସାରଳା ମହାଭାରତରେ ବ୍ୟବହୃତ ଆହୁରି କେତେକ ଶବ୍ଦ ହେଉଛି ଅଛନ୍ତେ, ଜାଗନ୍ତେ, ଗୃହନ୍ତେ, ଧୂକୁ, ମୁକ୍ତ ଇତ୍ୟାଦି । ଏଥିରୁ ଅନୁମିତ ହୁଏ ଯେ ଚର୍ଯ୍ୟାବଳୀର ସମୟ ( ସ୍ଥୂଳତଃ ୭ମ-୮ମ ଶତାବ୍ଦୀଠାରୁ ୧୦ମ-୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ) ଠାରୁ ସାରଳାଙ୍କ ସମୟ ( ୧୫ଶ ଶତାବ୍ଦୀ ) ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓ ସାହିତ୍ୟରେ ସେପରି ଉଲ୍ଲେଖଯୋଗ୍ୟ ଉନ୍ନତି ସାଧିତ ହୋଇ ନ ଥିଲା ।

ଏହା ବ୍ୟତୀତ ସାରଳା ମହାଭାରତ ହେଉଛି ଅନେକ ଆଦି ଓ ଅକୃତ୍ରିମ ଶବ୍ଦର ଗନ୍ତାଘର । ଏହି ଶବ୍ଦଗୁଡ଼ିକ ମଧ୍ୟରୁ ଶତ ଶତ ଶବ୍ଦ ଅନଭିଜ୍ଞ ଲେଖନକାରଙ୍କ ବହୁ ଅତ୍ୟାଚାର ସତ୍ତ୍ୱେ ମଧ୍ୟ ଆଜି ପର୍ଯ୍ୟନ୍ତ ବଞ୍ଚି ରହିଛି । ସେଗୁଡ଼ିକ ମଧ୍ୟରୁ କେତୋଟି ହେଉଛି—ଅଧାଟି, ଅଧାମ, ଉଚ୍ଚାଉଳ, ଉହତ, ଉଦଣ୍ଡ, ପହାଜ, ପାଏଡ଼ା, କରଣ୍ଡି, କଟାଳ, କାରେଣୀ, ଖୁରୁଖାଣି ଗଡ଼ପାଲ, ଗୁଗୁଚିଆ, ମୁଦୁସୁଳା, ମୁରାଟ, ନିରାଧାର, ନିକ, ଢଆଣବା, ବରଗିଲ, ବେଣ୍ଟକାର, ଉପଶ୍ୱେଧ ଓ ନର୍କିତ । ଅନୁଲିପିକାରମାନଙ୍କ ପ୍ରକ୍ଷେପର ଏକ ଦୃଷ୍ଟାନ୍ତ ଶ୍ରୀ ସୁରେନ୍ଦ୍ର ମହାନ୍ତି, 'ଓଡ଼ିଆ ସାହିତ୍ୟର ଆଦିପର୍ବ'ରେ ପ୍ରଦାନ କରିଛନ୍ତି । ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ମହାଭାରତର ସଭାପର୍ବରେ 'ଆଲମାରୀ' ଶବ୍ଦଟି ଦେଖିବାକୁ ମିଳେ ; ମାତ୍ର ଏହି ବିଦେଶୀ ଶବ୍ଦଟି ସାରଳାଙ୍କ କାଳରେ କେବେ ନ ଥିଲା । କାରଣ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଏହା ଓଡ଼ିଆ ଶବ୍ଦ ଭଣ୍ଡାର ମଧ୍ୟକୁ ଆସିଥିବା ଅନୁମାନ କରାଯାଏ । ସାରଳା ମହାଭାରତ ପୁଙ୍ଖାନୁପୁଙ୍ଖ ଆଲୋଚନା ଫଳରେ ଏହିପରି ଅନେକ ପ୍ରକ୍ଷେପ ଯେ ଦୃଷ୍ଟିକୁ ଆସିବ, ଏଥିରେ ସନ୍ଦେହ ନାହିଁ ।

ସାରଳା ମହାଭାରତରେ ଶାନ୍ତ, ତୋଷ, ବିବେକ, ଅତୃପ୍ତି ପ୍ରଭୃତି କେତେକ ବିଶେଷ୍ୟ ପଦ ବିଶେଷଣ ଅର୍ଥରେ ବ୍ୟବହୃତ ହୋଇଅଛି । ପ୍ରାକୃତ ଭାବରେ ଖାଦନ୍ତି, ଗାଦନ୍ତି, ପିବନ୍ତି ଇତ୍ୟାଦି କ୍ରିୟାପଦର ବ୍ୟବହାର ମଧ୍ୟ ସାରଳା ଦାସ କରିଅଛନ୍ତି । ସଂସ୍କୃତ ରୀତିରେ କହସି, ନଅସି, ଯାଅସି, ଶୁଣସି ପ୍ରଭୃତି ଶବ୍ଦର ବ୍ୟବହାର ମଧ୍ୟ ଏଥିରେ ପରିଦୃଷ୍ଟ ହୁଏ । ଆହୁରି କେତେକ ତତ୍ସମ ଶବ୍ଦର ବ୍ୟବହାର ସାରଳା

କରିଛନ୍ତି, ଯାହା ନିର୍ଦ୍ଦିଷ୍ଟ ଅର୍ଥ ପରିବର୍ତ୍ତେ ନୂତନ ଏବଂ ଭାଗବତ ଅର୍ଥ ପରିଗ୍ରହଣ କରେ ।

ଶ୍ରୀ ସୁରେନ୍ଦ୍ର ମହାନ୍ତି ସାରଳାଙ୍କ ଭାଷା ସମ୍ବନ୍ଧରେ ମନ୍ତବ୍ୟ ଦେଇ ଲେଖିଛନ୍ତି— "ସଂସ୍କୃତର ପ୍ରାଧାନ୍ୟ ଓ ପ୍ରଭାବରୁ ମୁକ୍ତ ହୋଇ ସାରଳା ଦାସ କେବଳ ଯେ ବିଷୟବସ୍ତୁ ଦିଗରୁ ଏକ ଅଭିନବ ଓ ବଳିଷ୍ଠ ସ୍ୱାତନ୍ତ୍ର୍ୟର ପରିଚୟ ଦେଇଛନ୍ତି ତାହା ନୁହେଁ; ଭାଷା ଓ ପ୍ରୟୋଗ କ୍ଷେତ୍ରରେ ମଧ୍ୟ ଏକ ଦୁଃସାହସିକତାର ପରିଚୟ ଦେଇ-ଅଛନ୍ତି । ଏହା ବ୍ୟାକରଣ ବହିର୍ଭୂତ ଓ ବ୍ୟାକରଣ ନିୟମ ବିରୁଦ୍ଧ ହୋଇପାରେ ; ମାତ୍ର ଏଠାରେ ସାହିତ୍ୟ ମୁଖ୍ୟ ଓ ବ୍ୟାକରଣ ଗୌଣ ।" ( ଓଡ଼ିଆ ସାହିତ୍ୟର ଆଦିପର୍ବ )

## ଚରିତ୍ର ଚିତ୍ରଣ :

ସାରଳାଙ୍କର ଅନ୍ୟ ଏକ ଦକ୍ଷତାପୂର୍ଣ୍ଣ ବିଶେଷତ୍ୱ ତାଙ୍କର ଚରିତ୍ର ଚିତ୍ରଣ କୌଶଳ । ମୂଳ ମହାଭାରତଠାରୁ ସାରଳା ମହାଭାରତରେ ବିଷୟଗତ ବୈଷମ୍ୟ ଯେ କେବଳ ପରିଲକ୍ଷିତ ହୁଏ ତାହା ନୁହେଁ, ଚରିତ୍ର ଚିତ୍ରଣରେ ମଧ୍ୟ ଏହି ବୈଷମ୍ୟ ଅନାହତ ରହିଅଛି । ଏଥିରେ ସନ୍ନିବେଶିତ ଚରିତ୍ରଗୁଡ଼ିକ ସାରଳାଦାସଙ୍କ ସମ୍ପୂର୍ଣ୍ଣ ନିଜସ୍ୱ ସୃଷ୍ଟି । ସମସାମୟିକ ସମାଜରେ ପରିଦୃଷ୍ଟ ବିଭିନ୍ନ ଶ୍ରେଣୀର ଚରିତ୍ରକୁ ସେ ନିଜ ଗ୍ରନ୍ଥରେ ବିଭିନ୍ନ ଚରିତ୍ର ମାଧ୍ୟମରେ ଦେଖାଇବାକୁ ଚେଷ୍ଟା କରିଛନ୍ତି । ସେ ଯେଉଁ ଚରିତ୍ରକୁ ଯେପରି ଚିତ୍ରଣ କରିବାକୁ ଇଚ୍ଛା କରିଛନ୍ତି, ତାକୁ ପ୍ରସଙ୍ଗ କ୍ରମେ ଅତି ନିପୁଣତାର ସହିତ ସେହିପରି ଚିତ୍ରଣ କରିପାରିଛନ୍ତି । ଏହିଭଳି ଅସାଧାରଣ ଶକ୍ତି ଖୁବ୍ କମ୍ ଗ୍ରନ୍ଥକାରଙ୍କଠାରେ ଦେଖିବାକୁ ମିଳେ । କେତେକ ଚରିତ୍ରରେ ସେ ଅତିମାନବତା ଆରୋପ କରିଥିଲେ ମଧ୍ୟ ଅଧିକାଂଶ ଚରିତ୍ରରେ ସାଧାରଣ ଗ୍ରାମ୍ୟ ମାନବର ସୁଖ-ଦୁଃଖ, ସ୍ନେହ-ମମତା, ଈର୍ଷା-ଦ୍ୱେଷ ପ୍ରଭୃତି ମାନବିକ ପ୍ରକୃତିର ସ୍ୱଭାବ ସୁଲଭ ଗୁଣାବଳୀ ଏଭଳି ଫୁଟି ଉଠିଛି ଯେ ମନେହୁଏ, ସତେ ଯେପରି ସେମାନେ ଆମ ସମାଜର ଜଣେ ଜଣେ ସଭ୍ୟ ଏବଂ ଆମ୍ଭମାନଙ୍କ ସଙ୍ଗେ ମିଳାମିଶି ବ୍ୟବହାର କରୁଅଛନ୍ତି ।

କୁରୁ ପାଣ୍ଡବଙ୍କ ମଧ୍ୟରେ କଳହ, ଏଥିରୁ ଯୁଦ୍ଧର ସୂତ୍ରପାତ ଏବଂ ସର୍ବଶେଷରେ କୁରୁବଂଶର ଧ୍ୱଂସସାଧନ ମୁଖ୍ୟ ବିଷୟବସ୍ତୁ । ଏହି ବିଷୟବସ୍ତୁର ଅବଲମ୍ବନରେ ସେ ଯେଉଁ କୁରୁ ପାଣ୍ଡବ ଚରିତ୍ର ନିଜ ଗ୍ରନ୍ଥରେ ଦେଇଛନ୍ତି ସେଥିରେ ସେମାନଙ୍କ ମଧ୍ୟରେ ଥିବା ବିଦ୍ୱେଷଭାବ ମୂଳ ଗ୍ରନ୍ଥ ଅପେକ୍ଷା ଅତି ଉତ୍କଟ ରୂପ ଧାରଣ କରିଅଛି । ପାଣ୍ଡବ ପଞ୍ଚଭ୍ରାତାଙ୍କୁ ସେ ଧୀର, ସହନଶୀଳ, ସତ୍ୟସନ୍ଧ ଭାବେ ବର୍ଣ୍ଣନ କରି ଅତି ମହାନ୍ ଚରିତ୍ରର ଅଧିକାରୀ କରିଥିବା ସ୍ଥଳେ କୌରବ ଶତଭ୍ରାତାଙ୍କୁ ଅତି ନୀଚମନୋଭାବାପନ୍ନ, ନିଷ୍ଠୁର, କଳହପ୍ରିୟ ଆଦି ମନ୍ଦ ସ୍ୱଭାବର ଅଧିକାରୀ କରାଇଛନ୍ତି । ସାରଳାଦାସଙ୍କ ଭୀମ ହୁରୁମା, ହୁଣ୍ଡା ହେଲେ ମଧ୍ୟ ସରଳ ନିଷ୍କପଟ । ସେ

ସାରଳାକାଳୀନ ସମାଜର କୌଣସି ଏକ ଦୁଷ୍ଟ ଶ୍ରେଣୀୟ ଚରିତ୍ରର ପ୍ରତିନିଧିତ୍ୱ କରେ । ଖଳ ନାୟକ ଭାବେ ଶକୁନିର ଚରିତ୍ରକୁ ସେ ଯେଉଁଭଳି ଭାବେ ଫୁଟାଇଛନ୍ତି, ତାହା ସେକ୍ସପିଅରଙ୍କ ବିଶ୍ୱବିଖ୍ୟାତ 'ଅଥେଲୋ' ନାଟକର ସୈତାନ ଚରିତ୍ର 'ଇଆଗୋ'କୁ ବଳି ଯାଇଥିବା ଭଳି ମନେହୁଏ । ଏ ଚରିତ୍ର ବ୍ୟତୀତ ଶ୍ରୀକୃଷ୍ଣ, ଭୀଷ୍ମ, ଜନକ, ଶାନ୍ତନୁ ଦ୍ରୋଣ, କର୍ଣ୍ଣ ପ୍ରଭୃତି ଶତଶତ ପୁରୁଷ ଚରିତ୍ର ତାଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ । ଏ ସମସ୍ତ ଚରିତ୍ରରେ ମଧ୍ୟ ସାରଳାଙ୍କ ଚରିତ୍ର-ଚିତ୍ରଣଗତ ନିପୁଣତା ଏବଂ ମୌଳିକତାର ସ୍ପର୍ଶ ଅନୁଭୂତ ହୁଏ ।

ନାରୀ ଚରିତ୍ର ଚିତ୍ରଣରେ ସାରଳାଙ୍କ ଦୃଷ୍ଟିଭଙ୍ଗୀ ତାଙ୍କର ଏକାନ୍ତ ଅଭିଜ୍ଞତାର ପରିଚାୟକ । ଗଙ୍ଗା, ଗାନ୍ଧାରୀ, କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା ପ୍ରଭୃତି ମୁଖ୍ୟ ଚରିତ୍ର ଭଳି ରାଣି ରାଣି ଗୌଣ ନାରୀ ଚରିତ୍ରର ଅପୂର୍ବ ସମାବେଶ ମଧ୍ୟ ତାଙ୍କ ଗ୍ରନ୍ଥରେ ଘଟିଅଛି । ତାଙ୍କର ନାରୀ ଚରିତ୍ର ମହାଭାରତ ଯୁଗର ଆଖ୍ୟାୟିକା ଅଥବା ସମାଜକୁ ପ୍ରତିନିଧିତ୍ୱ କରନ୍ତି ନାହିଁ । ସେମାନେ ପ୍ରତ୍ୟେକ ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସମାଜର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ନାରୀ-ଶ୍ରେଣୀକୁ ପ୍ରତିନିଧିତ୍ୱ କରନ୍ତି ।

## ବର୍ଣ୍ଣନା ଚାତୁରୀ :

ସାରଳା ଦାସ ବର୍ଣ୍ଣନା ଚାତୁରୀରେ ବିଶେଷ ନୈପୁଣ୍ୟ ପ୍ରଦର୍ଶନ କରିଅଛନ୍ତି । କବିଙ୍କ ବର୍ଣ୍ଣନାବଳୀ ସର୍ବତ୍ର ସରଳ, ପ୍ରାଞ୍ଜଳ ଓ ରମଣୀୟ ହୋଇଅଛି । ସ୍ଥାନେ ସ୍ଥାନେ ସ୍ତ୍ରୀ ରୂପ ବର୍ଣ୍ଣନା ଅତ୍ୟନ୍ତ ମନୋହର ହୋଇଅଛି । ମଧ୍ୟ ପର୍ବରେ ଶାମ୍ବକୁମାରଙ୍କ ପ୍ରତି ନାରଦଙ୍କ ଉକ୍ତି ମାଧ୍ୟମରେ ଚନ୍ଦ୍ରାବତୀର ସର୍ବାଙ୍ଗ ରୂପ ବର୍ଣ୍ଣନା ଓ ବନପର୍ବରେ ପ୍ରଦ୍ୟୁମ୍ନଙ୍କ ପ୍ରତି ନାରଦଙ୍କ ଉକ୍ତି ମାଧ୍ୟମରେ ମେରୁଶୂଳ ଦୈତ୍ୟର ନନ୍ଦିନୀ ତ୍ରିଭୁବନ ମୋହିନୀର ସର୍ବାଙ୍ଗ ଶୋଭାବର୍ଣ୍ଣନାରେ ଅନେକ ସାମଞ୍ଜସ୍ୟ ଥିବାର ଦେଖାଯାଏ । ଏହି ବର୍ଣ୍ଣନାଗୁଡ଼ିକ ସଂସ୍କୃତ ମହାଭାରତରେ ନାହିଁ ଏବଂ ଏହା କବିଙ୍କର ଏକାନ୍ତ ନିଜସ୍ୱ । ଏହି ବର୍ଣ୍ଣନାଗୁଡ଼ିକ ପରବର୍ତ୍ତୀ କାବ୍ୟଯୁଗର ରଚନାରେ ମଧ୍ୟ ଅନୁସୃତ ହୋଇଥିବାର ଲକ୍ଷ୍ୟ କରାଯାଏ । ତ୍ରିଭୁବନମୋହିନୀର ରୂପବର୍ଣ୍ଣନାର ଅଳ୍ପ କେତୋଟି ପଙ୍‌କ୍ତି ଏଠାରେ ଉଦ୍ଧାର କରାଯାଇପାରେ ।

"ଅକୁଞ୍ଚିତ କବେରୀ ଚିକୁର ଅଙ୍ଗଭର
ପ୍ରଲମ୍ବିତଖୋପା ବସ୍ତ୍ରୀଣ୍ଟ ଦିଶଇ ସୁନ୍ଦର ।

କୁସୁମ ନ ଯେନଇ ସେ ଗରୁହେବ ଗନ୍ଧ ବୋଲି
କେତକୀବାସ ସୁଗନ୍ଧକୁ ମଧୁକରେ ଭୁଲି ।

ଚମ୍ପାଣ ପ୍ରତିମା ପ୍ରାୟେ ଲଲାଟ ରେଖ ପାଟି
କୁଞ୍ଚିତ ରୋମାବଳୀ ନୀଳା ରେଖ ଗୋଟି ।

ଲଲାଟ ତଳେ ଯେ ଭ୍ରୂ ଭଙ୍ଗୀ ରେମ ରହୁ
କାମଦେବର ଧନୁ କି ଥୋଇଛୁ ନେଇ ସହୁ ।
ସେ ଧନୁକୁ ଆମନ୍ଥନ ନୟନ ତୀକ୍ଷ୍ଣବାଣ
କଣ୍ଟତେ ସନ୍ଧିଲେ ପୁରୁଷ ତୁଟଇ ନିଜପ୍ରାଣ ।

X X X

ନବନ୍ଧ କୂଳ ଜାଣି ହିରଣ୍ୟ ଗଣ୍ଡସ୍ଥଳ
ଗମ୍ଭୀର ନାଭି କଣ୍ଡୁକଣ୍ଠ ସୁସଞ୍ଚ ସରଳ ।
ବସ୍ତାର ହୃଦସ୍ଥ ଜାନୁ ରମ୍ଭାବୃକ୍ଷ ପ୍ରାୟେ
ନିବଡ଼ ପ୍ରଲମ୍ବ ଭୁଜ ବେନଗୋଟି ବାହେ ।
କୁମୁଦ ମୃଣାଳ ଯେହ୍ନେ ଶୀତଳ ସୁସଞ୍ଚ
ନୋହୋଇ ସଙ୍କୀର୍ଣ୍ଣ ସେ ଯେ ନୋହୋଇ ବଡ଼ ଉଚ୍ଚ ।
ଲଳିତ କଣ୍ଠସ୍ଥ ଯେହ୍ନେ ବେନକର ସ୍ଥଳୀ
ସ୍ୱଭାବ ସାରଙ୍ଗ ଯେହ୍ନେ ଅଙ୍ଗୁଂଳା ପୁଷ୍ପାଞ୍ଜଳି ।
ସୁଗଠିତ ସୁବର୍ଣ୍ଣ ଯେହ୍ନେ ବଳିତ ଅଙ୍ଗୁଳି
ଶୁଦ୍ଧ ମର୍କତ ପ୍ରାୟେକ ନଖରେଖ ଝଳି ।
ସୁସଞ୍ଚ ମଧ୍ୟା ଯେ କରଅଗ୍ରେ ପରସ୍ତେ
କୁଞ୍ଜ ଶ୍ରୀଫଳ ପ୍ରାୟେ କୁଚ ଶୋଭା ପ୍ରାୟେ ।

X X X

ଅତିରକ୍ତ ଘନ ଯେ ଥନ ବେନି ଶୋଭା
ଅନଙ୍ଗ ଭଣ୍ଡାର କୁନ୍ଦନ କରି ଥୋଇଅଛୁ ଅବା ।
ତ୍ରିଭୁବନ ମୋହଇ ତାର ଥନ ବେନି ଦେଖନ୍ତେ
ବସୁଢ଼ାଙ୍କି ଅଛୁ ସେ ସଂସାର ଜନହିତେ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ଯେ ପଞ୍ଚାନ୍ତର ବଦନକୁ
ତାହାର ମୁଖ ନିନ୍ଦା କରଇ ଚନ୍ଦ୍ର ଦେବତାଙ୍କୁ ।
ଯେକା ଉଦେ କାଳେ ସେ ଯେ ଚନ୍ଦ୍ରମା ସମ୍ପୂର୍ଣ୍ଣ
ପ୍ରଜାପତିର ଶାପେ ତନୁ ତାର କ୍ଷୀଣ ।
ବଦନ କଳଙ୍କ ସେ ବହିଲକ ଶଶୀ
ତାହାର ବଦନ ଗୋଟି ଅଟଇ ନିର୍ଦ୍ଦୋଷୀ ।"

( ବନପର୍ବ-୨ୟ-ପୃ: ୪୦୦—୪୦୩ )

ମଧ୍ୟପର୍ବରେ ଶୋଣିତପୁରର ବାଣାସୁର ନନ୍ଦିନୀ ଉଷାର ଶୋଭା ବର୍ଣ୍ଣନା କବି ନିମ୍ନୋକ୍ତ ମତେ କରିଛନ୍ତି—

"କେତେହେଁକ ଦନେ କନ୍ୟା ହୋଇଲା ନବଯୁବା
ମଦନ ପସର୍ ଜାଣି ଦଶଇ ବେନି କୁଚ ଆଖି ।
ନୟନ ନୀଳ ଉତ୍ପଳ ନାସା ତିଳଫୁଲ
ଦନ୍ତ ଗଜମୋତି ବନ୍ଧୁଲି ଅଧର ଅମୂଲ ।
ମୃଣାଳ ବକ୍ଷସ୍ଥଳ ପଦ୍ମଲଡ଼ ବେନି ଭୁଜ
ପଦ୍ମ ପତ୍ର ପେଟ ନିତମ୍ବ ଉରଜ ।
ରକତ କୁମୁଦ ଜାଣି ପାଦତଳ ରଙ୍ଗ
ରାଜହଂସ ଗତି ଶୋଭା ଦଶଇ ସୁରଙ୍ଗ ।
କୋକିଳ ବଚନ ଭାଷଇ ମୃଦୁରସ
ଅପାଙ୍ଗ ଚାହାଣୀରେ କନ୍ଦର୍ପ ହୋଇବଟି ଧ୍ୱଂସ ।"

( ପୃ ୬୫୧ )

ସେହିପରି ସେହି ମଧ୍ୟ ପର୍ବରେ କୃତଶେଖର ରାଜାର ଦୁହିତା ସୁରେଖାର ରୂପ ବର୍ଣ୍ଣନାରେ କବିଙ୍କ ଅପୂର୍ବ ସଫଳତା ପ୍ରଦର୍ଶିତ ହୋଇଅଛି । କବି ଲେଖିଛନ୍ତି—

"ଅତିଅନ୍ତ ସୁନ୍ଦର ତାକୁ ପଟାନ୍ତର ନାହିଁ
ଡମ୍ବରୁ ମଝା ପ୍ରାୟେ ଅଣ୍ଟା ଗୋଟି ଦିଶଇ ।
ଉଲଟ ରମ୍ଭା ପ୍ରାୟେ ତାର ବେନି ଜଘନ
ମୃଣାଳ ଲତା ପ୍ରାୟେ ତାହାର ଯେ ଭୁଜ ପୁଣ ।
ତିଳ ଫୁଲ ନାସିକା ତାର ପଟାନ୍ତର ନାହିଁ
ଶ୍ରୀଖଣ୍ଡ କପାଳ ତାର ତୁଳିଇବା କାହିଁ ।
ବିମ୍ବଫଳ ପ୍ରାୟେ ତାର ଅଧର ଦିଶଇ
କୁଂକୁମ ବର୍ଣ୍ଣ ପ୍ରାୟେ କାୟା ପ୍ରକାଶଇ ।"

( ପୃ ୭୧୯ )

କବି ମଧ୍ୟ ସ୍ୱୟମ୍ବର ସଭାରେ ଉପଗତା ଦ୍ରୌପଦୀ ଦେବୀଙ୍କର ବିସ୍ତୃତ ରୂପ ବର୍ଣ୍ଣନା ଦେଇଛନ୍ତି, ଯାହାକି ପୂର୍ବରୁ ଆଲୋଚିତ ରୂପବର୍ଣ୍ଣନା ଅପେକ୍ଷା ଅଧିକ ରମଣୀୟ । ବିରାଟ ପର୍ବରେ ମଧ୍ୟ ଦ୍ରୌପଦୀଙ୍କ ରୂପବର୍ଣ୍ଣନାରେ କବି ଶତମୁଖ ହୋଇଅଛନ୍ତି । ପୁରୁଷ ରୂପ ବର୍ଣ୍ଣନାରେ ମଧ୍ୟ କବି ନିଜର ଦକ୍ଷତା ପ୍ରଦର୍ଶନ କରିବାକୁ ଭୁଲି ନାହାନ୍ତି । ଆଦି ପର୍ବାନ୍ତର୍ଗତ କର୍ଣ୍ଣଙ୍କର ଶୈଶବ ରୂପ-ବର୍ଣ୍ଣନା ଏହାର ସତ୍ୟତା ପ୍ରତିପାଦନ କରେ । ପ୍ରାକୃତିକ ଦୃଶ୍ୟବର୍ଣ୍ଣନା ସାରଳାଦାସଙ୍କ ଗ୍ରନ୍ଥରେ ବିଶେଷ ଭାବେ ଲକ୍ଷିତ ହେଉ ନ ଥିଲେ ମଧ୍ୟ ହିମାଳୟ ଓ ଅନ୍ୟାନ୍ୟ କେତେକ ସ୍ଥାନର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କ ସ୍ୱକୀୟତା ପ୍ରମାଣିତ । କବି ବିଭିନ୍ନ ସ୍ଥାନରେ

ବିଭିନ୍ନ ଋତୁର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । କାର୍ତ୍ତିକା ପର୍ବରେ ଇନ୍ଦ୍ର ଯେତେବେଳେ ମେନକାଙ୍କୁ ବିଶ୍ୱାମିତ୍ରଙ୍କର ତପଭଙ୍ଗ କରିବା ନିମନ୍ତେ ପଠାଇଛନ୍ତି, ସେଠାରେ କବି 'ଗୀତଗୋବିନ୍ଦ' ଶୈଳୀରେ ବସନ୍ତ ଋତୁର ବର୍ଣ୍ଣନାର କେତୋଟି ପଙ୍‌କ୍ତି ହେଲି—

"ବହଇ ସମୀର ସୁସଞ୍ଚ ମଳୟାନଳ
ବାତ ବିଘାତେ ଦେହରୁ ଉଡ଼ଇ ଅଞ୍ଚଳ ।
ଅସମ୍ଭାଳ ହୋଇ ଯେ ଦେଖାଏ ସ୍ତନବେନି
ଦିଶେ ବେନି ଜାନୁ ୍କିଣ ଝୀନ ପତନି ।
ମଳୟ ବସନ୍ତ ଯେଣିଣ ସହୁଂ ବହଇ ମସ୍ଥାଣ
ପଲ୍ଲବିତ ହେଲେ ତହୁଂ ଶୁଖିଲ ବୃକ୍ଷମାନ ।
ପୃଥିବୀ ଆପ ତେଜ ବାଇବ ଆକାଶ
ପଞ୍ଚ ଧାତୁ ସନ୍ଧିଲେ ସେ ଧର୍ମଗଲା ନାଶ ।
ପାଷାଣ ତରଳ ଯେ ନିର୍ଝର ବହଇ
ଖଣ୍ଡ ଖଣ୍ଡ ହୋଇଣ ଶିଳା ଗିରିରୁ ଖସଇ ।
ବସନ୍ତ ଋତୁରେ କୋକିଳ ରାବଇ ଘନ ଘନ
ଅକାଳେ ପଲ୍ଲବିତ ହୋଇଲେ ତରୁଲତାଗଣ ।
ବନଜୀବ ଆଦି କରି ହରିଣ ହରିଣୀ
କୋକିଳନାଦ ଶୁଣିଣ ହୋଇଲେ ବିରହିଣୀ ।" (ପୃ: ୬୭)

ସାରଳା ମହାଭାରତ ବିବାହ ବିଷୟକ ବର୍ଣ୍ଣନାରେ ପୂର୍ଣ୍ଣ । ଏ ପ୍ରକାର ବର୍ଣ୍ଣନାବଳୀ ଅଧିକାଂଶ ଗ୍ରାମ୍ୟ ଓ ଲୌକିକ । ସ୍ୱର୍ଗାରୋହଣ ପର୍ବରେ ସୁହାଣୀ କନ୍ୟାର ବିବାହ ଉତ୍ସବ ଉପଲକ୍ଷେ ନିର୍ମିତ ବିବାହ ମଣ୍ଡପର ବର୍ଣ୍ଣନା କବି ନିମ୍ନମତେ ଦେଇଅଛନ୍ତି—

"ଗ୍ରୀଷ୍ମା ମଣ୍ଡୋପରେ ହୋଇଛି କଣସ୍ତ ରତ୍ନବେଦୀ
ସ୍ଫଟିକର ଖମ୍ବ ରୁଅ ରୂପାରେ ସମାଦି ।
ସୁବର୍ଣ୍ଣର କଳସ ନେତର ପାତାଙ୍ଗ ଉଡ଼ାନ୍ତି
ଦିବ୍ୟ ବସ୍ତ୍ରମାନ ଗ୍ରୀଷ୍ମାଘରମାନ ମଣ୍ଡାନ୍ତି ।
ଯୁଗତେ ହରିମାହୁ ଗନ୍ଧ ଯେ ବଣିଆ
କସ୍ତୁରୀ ଟିକାମାନ ମାରନ୍ତି ଗ୍ରାମୁଣ୍ଡିଆ ।" (ପୃ: ୧୬)

ବିରାଟ ପର୍ବରେ ବିଭିନ୍ନ କୁରୁ ସେନାପତିଙ୍କ ପରିଚୟ ପ୍ରଦାନ ପ୍ରସଙ୍ଗରେ ଯେଉଁ ରଥର ବର୍ଣ୍ଣନା ଦିଆଯାଇଛି, ସେଥିରୁ କବିଙ୍କ ବର୍ଣ୍ଣନା ଚାତୁରୀର ସମ୍ୟକ୍ ପରିଚୟ ମିଳେ । ବର୍ଣ୍ଣନାଟି ଏହିପରି---

"ତାହାଙ୍କର ସନ୍ନିଧେ ଦେଖ ସ୍ୟନ୍ଦରଥ
ଉଦୟ କାଳେ ଯେସନ୍ତେ ଦିନକର ନାଥ ।

ଅଷ୍ଟବ୍ରତେକ ପାତାଙ୍ଗ ଉଡ଼ନ୍ତି ରଥର ଉପରେ ।
ଫରହର ଦାସୀନେତ ଉଡ଼ଇ ଗଗନ ଭିତରେ ।

ହାଥୀଦନ୍ତ ରଥ ସେ କଣସ୍ତ ସ୍ତମ୍ଭଶ୍ରେଣୀ
ତଥିର ଉପରେ ଘଟଣ ଶୁଭ୍ରମଣି ।

ମାଣିକ୍ୟ ଗଜମୁକୁତା ଢନ ଢନ ପନ୍ତି
ତହିଁର ଉପରେ ସ୍ୱର ପାଞ୍ଚପନ୍ତି ଝଲକନ୍ତି ।

ସ୍ୱର ପାଖରେ ମର୍କତ ସାତଧାଡ଼ି
ସୂକା ରଥେ ମଣ୍ଡିଲ ରତ୍ନ ଭଣ୍ଡାର ସ୍ୱର ।

ନୀଳା ପଦ୍ମ ପାଖୁଡ଼ାରେ ଖଞ୍ଜିତ ମୁକୁତା
ଲମ୍ବନ୍ତି ଝଡ଼ାସ୍ତେ ଗୁନ୍ଥିଣ ପାଟସୂତା ।

ଚଉଷଠୀ ପନ୍ତୀ ସ୍ୱର ପୀତ ସ୍ୱରରେଖ
କଣସ୍ତୁ କ୍ଷୁଦ୍ର ଘଣ୍ଟି ବାଜନ୍ତି ଚଉପାଖ ।

ଲମ୍ବନ୍ତି ମୁକୁତା ମାଳ ଚଉସରି
ରଥରେ ପୁଞ୍ଜି ପୁଞ୍ଜି ମାଣିକ୍ୟର ଝରି…" ଇତ୍ୟାଦି

( ପୃ—୫୬୮-୬୯ )

ପଞ୍ଚପାଣ୍ଡବ 'ବ୍ରାହ୍ମଣ ବେଶ' ପରିଧାନ କରି ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାକୁ ଯାଇଅଛନ୍ତି । ସେମାନଙ୍କ ଏହି ଛଦ୍ମବେଶ ଅବସ୍ଥା ଦୃଷ୍ଟିରୁ ସହଜ ଓ ସୁବିଧାଜନକ ମନେହୁଏ । ସେମାନଙ୍କର ବେଶ ନୈଷ୍ଠିକ ବ୍ରାହ୍ମଣର ବେଶ, ଯାହାକି ବର୍ତ୍ତମାନ ମଧ୍ୟ ଶୁଦ୍ଧ-ବ୍ରାହ୍ମଣ ବେଶ ରୂପେ ଗ୍ରହଣ କରାଯାଏ । ସେମାନଙ୍କ ମଥାରେ ଦ୍ୱାଦଶ ଟିକା, ସ୍କନ୍ଧରେ ଉତ୍ତରୀୟ, ପଇତା, ମସ୍ତକରେ ଲମ୍ବିତ ଜୁଡ଼ା, ଶରୀରରେ ଚିକ୍କଣି ବସନ; କାଖରେ ବେଦମନ୍ତ୍ର ପୁସ୍ତକ, ଏକ ହସ୍ତରେ କୁଶବଟୁ, ଅନ୍ୟ ହସ୍ତରେ ତାଳପତ୍ର ଛତା, ଅଣ୍ଟାରେ ମେଖଳା ଦଉଡ଼ି, କଣ୍ଠରେ ରୁଦ୍ରାକ୍ଷମାଳ ଇତ୍ୟାଦି ବର୍ଣ୍ଣନା ବାସ୍ତବିକ ଅତି ଜୀବନ୍ତ । ଏହିପରି ବେଶ ପରିପାଟିରେ ଭୂଷିତ ପାଣ୍ଡବଗଣ ସ୍ୱୟମ୍ବର ସଭାରେ ପ୍ରବେଶ କରି ଆସନ ଗ୍ରହଣ କରିଅଛନ୍ତି । ଏହି ଅଂଶର ପାଠ ସମୟରେ ଶ୍ରୋତା ଏବଂ ପାଠକ ଉଭୟଙ୍କ ମାନସ ଚକ୍ଷୁରେ ସେହି ଦୃଶ୍ୟ ଦିଶିଯାଏ, ଜଣାଯାଏ ସତେ ଯେମିତି ପଞ୍ଚପାଣ୍ଡବ ସେମାନଙ୍କ ସମ୍ମୁଖରେ ନୈଷ୍ଠିକ ବ୍ରାହ୍ମଣ ବେଶରେ ଉପସ୍ଥିତ । ଏହାହିଁ କବିଙ୍କ ବର୍ଣ୍ଣନା ଶୈଳୀର ସାର୍ଥକତା । କବିଙ୍କ ବର୍ଣ୍ଣନା ଏହିପରି :—

"ବ୍ରାହ୍ମଣ ବେଶ ଯେ ଧଇଲେ ପଞ୍ଚ ଭ୍ରାରେ
ଝିନଚ୍ଛ ବସନ ଆରୋପିଲେ କଟୀରେ ।
ନବଗୁଣ ପଇତା କନ୍ଧରେ ଉତ୍ତରୀୟ ଅଛୁ
ଆଧାନ ମନ୍ତ୍ର ପୋଥି କାଖରେ ସବୁଶ ଅଛୁ ।
ଦ୍ୱାଦଶ ଟିକା ଯେ ଶ୍ରୀବତ୍ସ ଲକ୍ଷଣ
କାଖେ ବେଦ କରଣ୍ଡି ତେଜମସ୍ତେ ବ୍ରାହ୍ମଣ ।
କାନ୍ଧେଣ ଛତା ତଥି ପ୍ରୋକ୍ଷଣୀ ଯେ ଶ୍ରୁଆ
ଚମ୍ପାର ବର୍ଣ୍ଣ ଜାଣି ବିକାଶଇ ସର୍ବକାୟା ।
ଗୋପ୍ୟାନ ଦୋହର ଅଣ୍ଟାରେ କୁଶବନ୍ତ
ଚନ୍ଦ ସ୍ୱାମୀ ଦେବତା ବିଜୟେ କରଣ୍ଡି ।"

( ଆଦିପର୍ବ—ପୃ ୭୭୭ )

ମହାଭାରତର ଛନ୍ଦେ ଛନ୍ଦେ କବିଙ୍କର କୋମଳ କବିତ୍ୱର କମନୀୟ ସ୍ଫୁରଣ ପରିଲକ୍ଷିତ ହୁଏ । ବିଶେଷ କରି ଯେଉଁଠି ଯୁଦ୍ଧ ବିଗ୍ରହ, ବିବାହ-ସ୍ୱୟମ୍ବର, ବାଦ-ବିସମ୍ବାଦ ଆଦିର ଚିତ୍ର କବି ଅଙ୍କନ କରିଛନ୍ତି, ସେସବୁ ସ୍ଥଳରେ କବିଙ୍କ ଅନର୍ଗଳ, ଅନିବାରିତ ଓ ସ୍ୱାଭାବିକ ସ୍ୱର ଫୁଟି ଉଠିଛି, ଯାହା ଦେଖି ଆଧୁନିକ ପାଠକ ମଧ୍ୟ ପଞ୍ଚଦଶ ଶତାବ୍ଦୀର ଜଣେ କୃଷକ କବିର ଏପରି ଅସାଧାରଣ ବର୍ଣ୍ଣନା ସ୍ୱରର ପ୍ରଶଂସା ନ କରି ରହିପାରେନା ।

ସାରଳା ଦାସଙ୍କ 'କଳ୍ପନା-ପ୍ରବଣତା' ପାଠକକୁ ବିସ୍ମୟାଭିଭୂତ କରିଥାଏ । ତାଙ୍କ ଗ୍ରନ୍ଥରେ ଆମେ ଏକ ପକ୍ଷରେ ଦେଖିବାକୁ ପାଉ ଜୀବନକୁ ଏକ କୃଷକର ବାସ୍ତବ ଦୃଷ୍ଟିକୋଣରୁ; ଅନ୍ୟ ପକ୍ଷରେ ଦେଖୁ ମଧୁର ଅନାବିଳ ଅତିରଞ୍ଜନ, ଯାହା ଗ୍ରାମ୍ୟ ଜନର ଚିତ୍ତବୃତ୍ତିର ଏକ ଅପରିହାର୍ଯ୍ୟ ଅଙ୍ଗ । ସଂଖ୍ୟାର ସୂଚନା ଦେବାର ଅବସର ଯେଉଁଠି ମିଳିଛି, ସେଠାରେ କବି ସହସ୍ର, ଲକ୍ଷ, କୋଟି, ଅର୍ବୁଦ ଆଦିରୁ ତଳକୁ ଖସି ନାହାନ୍ତି । ଉଦାହରଣ ସ୍ୱରୂପ, ସ୍ୱୟମ୍ବର ସଭାରେ ଉପସ୍ଥିତ ହେବା ନିମନ୍ତେ ଦ୍ରୁପଦ ନନ୍ଦିନୀ ଏକ ଶୋଭାଯାତ୍ରାରେ ବାହାରିଛନ୍ତି । ଏହି ସମୟରେ ତାଙ୍କ ସହିତ ସହସ୍ର ସହସ୍ର ପରିଚାରିକା ଉପସ୍ଥିତା । ପୁନଶ୍ଚ ତାଙ୍କ ସମ୍ମୁଖରେ ସହସ୍ରେ ବନିତା ନୃତ୍ୟରତା । ଏଠାରେ ପ୍ରଶ୍ନ ଉଠେ, ଜଣକର ଅବିଅଳୀ କୁମାରୀ ନିମନ୍ତେ ପଞ୍ଚାଳ ନରେଶ ଯଦି ଏତେ ସଂଖ୍ୟକ ପରିଚାରିକା ନିଯୁକ୍ତ କରିପାରିଥିଲେ, ତେବେ ତାଙ୍କ ରାଜ ସଭାର ଆକାର କେତେ ବିସ୍ତୃତ ଥିଲା ଏବଂ ତାଙ୍କ ରାଜ୍ୟର ଜନସଂଖ୍ୟା କେତେ ଥିଲା ? ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଏ ପ୍ରକାର ବର୍ଣ୍ଣନା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ତେବେ ଏ ପ୍ରକାର ଉଦାର କଳ୍ପନା ବିଳାସିତାକୁ ପ୍ରଶ୍ରୟ ଦେବା ପଛରେ କବିଙ୍କର କି ଉଦ୍ଦେଶ୍ୟ ଥିଲା ? ଏହାର ଉତ୍ତର ସ୍ୱରୂପ କୁହାଯାଇପାରେ ଯେ କବିଙ୍କ

ପ୍ରିୟ ପାଠକ ଥିଲେ ସାଧାରଣ ଗ୍ରାମ୍ୟ ଜନତା, ଯେଉଁମାନଙ୍କ ମନସ୍ତତ୍ତ୍ୱ ତାଙ୍କୁ ଅଜଣା ନ ଥିଲା । ଯେତେବେଳେ ଏତେବଡ଼ ରାଜାଙ୍କର ଏତେ ସୁନ୍ଦର ଝିଅର ସ୍ୱୟମ୍ବର ହେଉଛି, ସେଥିରେ କିଛି ବିଶେଷ କଥା ଲକ୍ଷ୍ୟ କରିବାକୁ ସାଧାରଣ ପାଠକ ଉତ୍କଣ୍ଠା ପ୍ରକାଶ କରିବ । ପୁନଶ୍ଚ ସେହିଭଳି କିଛି ଅସାଧାରଣ ବର୍ଣ୍ଣନା ନ ରହିଲେ ସାଧାରଣ ପାଠକ ସେଥିରୁ କିଛି ଉତ୍ତେଜନା ସଂଗ୍ରହ କରି ପାରିବ ନାହିଁ । ଏଣୁ ଏପରି ପରିକଳ୍ପନାର ସୃଷ୍ଟି ।

"ସାରଳାଙ୍କ କଲମରେ ସୈନ୍ୟମାନଙ୍କର ସଂଖ୍ୟା କୋଟି, ଅର୍ବୁଦରୁ ତଳକୁ ଖସେନା । ଭୀମଙ୍କ ଅରଣ୍ୟ-ପତ୍ନୀ ହିଡ଼ମ୍ବିକା ପୁତ୍ର ଘଟୋତ୍କଚକୁ ଧରି ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଆସିଲବେଳେ, ଶହେ ଶଗଡ଼ କସ୍ତୁରୀ, ଏକ ଲକ୍ଷ ଶଗଡ଼ ସୁଗନ୍ଧ ଅଁଳା, ପୁଣି ବହୁଲକ୍ଷ ଶଗଡ଼ ଆମ୍ବ ଆଣିଥିଲ । ସମ୍ରାଟ କପିଳେନ୍ଦ୍ରଙ୍କ ସାମ୍ରାଜ୍ୟସାକ ଦରିଣ୍ଡି ଥିଲେ ହୁଏତ ଗାଡ଼ିଏ କସ୍ତୁରୀ ମିଳିଥାନ୍ତା କ ନାହିଁ ସନ୍ଦେହ; କିନ୍ତୁ ଏହି ପ୍ରକାର ଅତିରଞ୍ଜନ ଓ ନରଙ୍କୁଶ କଳ୍ପନା ଗ୍ରାମ୍ୟ କୃଷକ ଜନତାର ଅତ୍ୟନ୍ତ ସ୍ୱାଦ୍ୟ । ଗ୍ରାମ୍ୟ କବିର ପ୍ରତିଭା ସ୍ୱାଭାବିକ ଭାବରେ ତାହା ଜାଣି ପାରି ପରିବେଷଣ କରି ଚାଲିଲ ।" *

ସାରଳା ଦାସ ସାଧାରଣ ପାଠକର ମନୋରଞ୍ଜନ ନିମନ୍ତେ କଳ୍ପନା-ବିଳାସକୁ ପ୍ରଧାନ ଅଙ୍ଗ ରୂପେ ଗ୍ରହଣ କରି ବହୁ କାଳ୍ପନିକ ଚରିତ୍ର, ଚରିତ, ମିଥକଥା, ପ୍ରବଚନ ସ୍ୱଗ୍ରନ୍ଥରେ ସ୍ଥାନ ଦେଇ ଅଛନ୍ତି । ଏଥିରୁ ସେ ଜଣେ ସୁଦକ୍ଷ କଥାକାର ଏବଂ ସମାଜ ସଂସ୍କାରକ ଥିବାର ପ୍ରମାଣ ମିଳେ । ମହାଭାରତ ଯୁଦ୍ଧର ଅବସାନ ପରେ ଯୁଦ୍ଧକ୍ଷେତ୍ରରେ ପ୍ରବାହିତ ରକ୍ତ ନଦୀରେ ମାନଗୋବିନ୍ଦ ଦୁର୍ଯ୍ୟୋଧନର ସନ୍ତରଣ ପ୍ରସଙ୍ଗ, ନାଗାର୍ଜ୍ଜୁନ ଅର୍ଜ୍ଜୁନ ଯୁଦ୍ଧ, ଋଷିଶୃଙ୍ଗ ଜନ୍ମ । ଅର୍ଜ୍ଜୁନ-ହନୁମାନ ଭେଟ, ଜୟସିଂହ ଦୈତ୍ୟ ଉପାଖ୍ୟାନ, ନୃସିଂହ ଅବତାର, କଳଙ୍ଗସେନ ପ୍ରସଙ୍ଗ, ଭୀମଙ୍କ ସିଂହାସନପ୍ରାପ୍ତି ପ୍ରସଙ୍ଗ, କଦମ୍ବାସୁର ଉପାଖ୍ୟାନ ବଳବାମନ ଚରିତ, ଶାମ୍ବ ଉପାଖ୍ୟାନ, ବେଲ୍ଲଳସେନ ଚରିତ, ଭାରଦା ଉପାଖ୍ୟାନ, ରୋହିଣୀ କନ୍ୟା ବିବାହ ପ୍ରସଙ୍ଗ, ସୁଭଦ୍ରା ହରଣ ପ୍ରସଙ୍ଗ, କଳି ଅବତରଣ ପ୍ରସଙ୍ଗ, ମେରୁଶୂଳ ଚରିତ, ଧନୁମୁନରେ ଧରାଧାରଣ ପ୍ରସଙ୍ଗ, ଯୁଗନ୍ୟାସ ରାଜାଙ୍କ ଚରିତ, ତେତିକଳିଷ ରାଜା ଚରିତ, କାମଦେବ ରାଜା ଚରିତ, ବେଲ୍ଲବଲୀ ଚରିତ, ବଳବାମନ ଚରିତ ପ୍ରଭୃତି ବହୁ ଚରିତ ଓ ଉପାଖ୍ୟାନ ସାରଳାଙ୍କ ଅସାଧାରଣ କଳ୍ପନା ଶକ୍ତିର ପରିଚୟ ପ୍ରଦାନ କରେ । ବିଭିନ୍ନ ପ୍ରସଙ୍ଗ କ୍ରମରେ ଅଜନ୍ତାକଥା, ବାବନାଭୂତ କଥା, ହରପାର୍ବତୀ କଥା, ତୃଳାମୁହାଁ କାଙ୍କ କଥା, ତୁଳସୀବଣ ବାଘ କଥା ପ୍ରଭୃତି କେତେକ ମିଥକଥା କବି ସ୍ୱକଳ୍ପନା ଶକ୍ତି ବଳରେ ଅତି ନିପୁଣ ଭାବରେ ବର୍ଣ୍ଣନା କରିଅଛନ୍ତି । ପୁନଶ୍ଚ ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ

* ଓଡ଼ିଆ ସାହିତ୍ୟର ଇତିହାସ— ଡଃ ମାୟାଧର ମାନସିଂହ—ପୃ-୧୦୭ ।

ଥିବା ଅଗଣିତ ଜନପ୍ରିୟ ପ୍ରବାଦ-ପ୍ରବଚନ ସାରଳା ଦାସଙ୍କ କଳ୍ପନା-ପ୍ରସୂତ ଅଟେ । ଏଗୁଡ଼ିକ ମଧ୍ୟରେ 'ଗଙ୍ଗା କହିଲେ ଥିବ, ଗାଙ୍ଗୀ କହିଲେ ଯିବ', 'ଦ୍ୱିମିଟି ଖେଳରୁ ମହାଭାରତ', 'ଅର୍ଜୁନ ମଲେ ପାଞ୍ଚ କର୍ଣ୍ଣ ମଲେ ପାଞ୍ଚ', ମନଜାଣେ ପାପ; ମାଆ ଜାଣେ ବାପ', 'ଶିମିଳି ଗଛରେ ଦେହ ଘଷିବା', 'ନରେବା କୁଞ୍ଜରେ ଅଶ୍ୱତ୍ଥାମା ହତ' ଇତ୍ୟାଦି କେତୋଟି ପ୍ରଧାନ । ତତ୍କାଳୀନ ଜନସମାଜର କାହାଣୀ-କ୍ଷୁଧା ନିବାରଣ ନିମନ୍ତେ ବୋଧହୁଏ କବି ସ୍ୱକାବ୍ୟର ଆଙ୍ଗିକରେ ଏହି ମନୋମୁଗ୍ଧକର, ଶିକ୍ଷାପ୍ରଦ ଏବଂ ବହୁଚର୍ଚ୍ଚିତ କାହାଣୀ, ନୀତିକଥା ଏବଂ ପ୍ରବଚନଗୁଡ଼ିକର ପରିକଳ୍ପନା କରିଅଛନ୍ତି ।

ପ୍ରତି ଗଳ୍ପ, ନୀତିକଥା ଓ ପ୍ରବଚନ ଅନ୍ତରାଳରେ କବିଙ୍କ ସାହିତ୍ୟିକ ଛଟା ରହିଥିବାର ଲକ୍ଷ୍ୟ କରାଯାଇପାରେ । 'ଗଙ୍ଗା କହିଲେ ଥିବ, ଗାଙ୍ଗୀ କହିଲେ ଯିବ' ପ୍ରବଚନରେ ଜଣେ ଉଗ୍ରଚଣ୍ଡୀ ସ୍ୱେଚ୍ଛାଚାରିଣୀ ନାରୀର ପ୍ରକୃତି, 'ବସୁଛୁ ହୋ ଗୋଲକ ପୁନି'ର ନାଟକୀୟତା, ପାଣ୍ଡବମାନଙ୍କ କୁମ୍ଭାରଶାଳରେ ବାସ କରିବାର ବାସ୍ତବ ଚିତ୍ର, 'ସତ୍ୟ-ଆମ୍ବ ଗଳ୍ପ'ରେ ନାରୀର ମନସ୍ତାତ୍ତ୍ୱିକ ଚିତ୍ର ଏବଂ 'କୋକୁଆଭୟ' ଉପାଖ୍ୟାନରେ ଏକ ବିବେକ-ବିବର୍ଜିତ ବିକାରଗ୍ରସ୍ତ ସମାଜର ନିଖୁଣ ଚିତ୍ର ଦେଖିବାକୁ ମିଳେ ।

ପ୍ରସଙ୍ଗକ୍ରମେ ଆମେ ଦେଖିବାକୁ ପାଉ କେତେକ ଆଖ୍ୟାନ ପୁରୁଷ, ପ୍ରସିଦ୍ଧ ନଦନଦୀ, ନଗର, କାନନ ପ୍ରଭୃତି ପଦର ବ୍ୟୁତ୍ପତ୍ତିକ୍ରମ ସାରଳାଙ୍କ ଗ୍ରନ୍ଥର ବିରାଟ କଳେବର ମଧ୍ୟରେ । ସେମାନଙ୍କ ମଧ୍ୟରୁ କେତେକ ମୂଳଗ୍ରନ୍ଥ ସହିତ ଏବଂ ଅନ୍ୟାନ୍ୟ ପୁରାଣ ବର୍ଣ୍ଣିତ ବ୍ୟୁତ୍ପତ୍ତି ସହିତ ସମତା ରକ୍ଷା କରିଥିଲେ ମଧ୍ୟ ଅନ୍ୟ କେତେକ ସମ୍ପୂର୍ଣ୍ଣ ନୂତନ । ଏହି ନୂତନ ବ୍ୟୁତ୍ପତ୍ତିଗୁଡ଼ିକ ସାରଳାଙ୍କ ସ୍ୱକଳ୍ପନା ଶକ୍ତିରୁ ଜାତ । ଓଡ଼ିଶା, କୋଣାର୍କ, ପରୀକ୍ଷ, ପାଣ୍ଡବ, କର୍ଣ୍ଣ, ଯୁଧିଷ୍ଠିର, ନକୁଳ, ସହଦେବ, ଶିଖଣ୍ଡି, କେତୁକା ପ୍ରଭୃତି ପଦ ଭଳି ଅନେକ ପଦର ବ୍ୟୁତ୍ପତ୍ତିକ୍ରମ ସାରଳାଙ୍କ ଅନନ୍ୟ ସାଧାରଣ କଳ୍ପନା ଶକ୍ତିର ପରିଚୟ ପ୍ରଦାନ କରେ ।

## ବିଭିନ୍ନ ରସ :

ସାରଳାଙ୍କ ମହାଭାରତ ଗ୍ରନ୍ଥରେ ବିଭିନ୍ନ ରସ ପରିବେଷିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଶୃଙ୍ଗାର ରସର ପ୍ରାବଲ୍ୟ ଏଥିରେ ଲକ୍ଷିତ ହେଲେ ହେଁ ବୀର ବୀଭତ୍ସ ଓ କରୁଣ ରସ ମଧ୍ୟ ବିଭିନ୍ନ ବର୍ଣ୍ଣନାରେ ଫୁଟି ଉଠିଛି । କବି ରସ ପରିବେଷଣରେ ଏତେ ସିଦ୍ଧହସ୍ତ ଯେ ତାଙ୍କର କୌଣସି ରସାତ୍ମକ ବର୍ଣ୍ଣନାଟି ପାଠକଲା ମାତ୍ରେ ପାଠକ ହୃଦୟରେ ସେହି ରସ ଭାବର ଉଦ୍ରେକ ହୁଏ ।

ନାରୀ ରୂପ ବର୍ଣ୍ଣନାରେ ଅନେକତ୍ର ଶୃଙ୍ଗାର ରସର ସୂଚନା ମିଳେ । ପୂର୍ବ ଆଲୋଚିତ ନାରୀ ରୂପ ବର୍ଣ୍ଣନାମାନ ଏହାର ଏକ ଏକ ଉଦାହରଣ । ପୁନଶ୍ଚ ବିଭିନ୍ନ

ହରଣ, ଭୀମ ଓ ଅର୍ଜୁନଙ୍କ ସହିତ କେତେକ ଦେବା, ମାନବୀ ଓ ରାକ୍ଷସୀଙ୍କ ଶୃଙ୍ଗାର ବର୍ଣ୍ଣନାରେ ଆଦିରସ ବା ଶୃଙ୍ଗାର ରସର ଅବତାରଣା କରି କବି ନିଜର କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ମଧ୍ୟପର୍ବରେ ସୁଭଦ୍ରା ଓ ଅର୍ଜୁନଙ୍କ କାମକ୍ରୀଡ଼ା ଅତି ନଗ୍ନଭାବେ ବର୍ଣ୍ଣିତ । (ମଧ୍ୟପର୍ବ-ପୃ. ୬୨୬-୬୩ ଦ୍ରଷ୍ଟବ୍ୟ) ।

ବୀରରସ ବର୍ଣ୍ଣନାରେ ମଧ୍ୟ କବିଙ୍କର କୃତିତ୍ୱ କିଛି କମ୍ ନୁହେଁ । ମହାଭାରତରେ ରାଶି ରାଶି ଯୁଦ୍ଧ ବର୍ଣ୍ଣନା ଦେଖିବାକୁ ମିଳେ, ଯାହାର ମୁଖ୍ୟ ଅବଲମ୍ବିତ ରସ ହେଉଛି ବୀରରସ । ସଭାପର୍ବରେ ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ପ୍ରସଙ୍ଗରେ କାମପାଳ ରାଜାଙ୍କ ସହ ଯୁଦ୍ଧ, ଉତ୍ତର ଦିଗ୍‌ବିଜୟ ସମୟରେ ଅର୍ଜୁନଙ୍କ ସହିତ ଦରଦସେନ ରାଜା ଓ ଜମାଗୋଷ୍ଠ ରାଜାଙ୍କ ଯୁଦ୍ଧ; ଅର୍ଜୁନ ଓ ନାଗାର୍ଜୁନଙ୍କ ମଧ୍ୟରେ ଯୁଦ୍ଧ, ଭୀମ ଓ ଜରାସନ୍ଧ ମଧ୍ୟରେ ମଲ୍ଲଯୁଦ୍ଧ, ବନପର୍ବରେ ସଚଳା ହରଣ ପ୍ରସଙ୍ଗରେ ଦେବତା ଓ ଯାଦବାଦିଗଣଙ୍କ ମଧ୍ୟରେ ବହୁ ପ୍ରସାରିତ ଯୁଦ୍ଧ, ଗଦା ପର୍ବରେ ଭୀମ ଓ ଦୁର୍ଯୋଧନଙ୍କର ଗଦାଯୁଦ୍ଧ ଆଦି ବର୍ଣ୍ଣନାରେ ବୀରରସର ଆଭାସ ମିଳେ । ଉଦାହରଣ ସ୍ୱରୂପ ଗଦାପର୍ବରେ ଭୀମ ଓ ଦୁର୍ଯୋଧନଙ୍କ ମଧ୍ୟରେ ହୋଇଥିବା ଗଦାଯୁଦ୍ଧ ଓ ବାହୁଯୁଦ୍ଧ ବର୍ଣ୍ଣନାର କିଛି ଅଂଶ ଉଲ୍ଲେଖ କରାଯାଇପାରେ ।

"ହାବୋଡ଼ା ହୋବୋଡ଼ି ହୋଇ ସେ ହୁଅନ୍ତି ପେଲପେଲି
ଅଧରେ ଦାନ୍ତ ଚାପି କଟୁବଚନ ବୋଲିବୋଲି ।

ରେ ରେ ଶବଦେ ଗର୍ଜନ୍ତି କାଳାନଳ ତଡ଼ତୋଳେ
ମାରନ୍ତି ବଜ୍ରମୁଠ ଆକ୍ଷେପେ କପାଳେ ।

ଭୁଜେଣ ଭୁଜ ସେ ହୋଅନ୍ତି ଛନ୍ଦାଛନ୍ଦି
ପାଦେଣ ପାଦ ଛନ୍ଦି ଦୃଢ଼ କରି ବାନ୍ଧି ।

ଭୀମକୁ ହାବୁଡ଼ାଇ ସେ ପକାଇଲା କୁରୁନାଥେ
ରେ ରେ ଭୀମ ବୋଲି ମାଡ଼ିବସିଲା ହୃଦଗତେ ।

ମାନଗୋବିନ୍ଦ ମାଡ଼ି ବସି ପ୍ରତିଜ୍ଞାଂ କଲା ଅପାର
ରେ ରେ ପାଣ୍ଡବା ଆଜ ଆୟୁ ପୂରିଲା ତୋହୋର ।

କୋପେ ଲେଉଟାଇଲା ତାକୁ ବୀର ବୃକୋଦର
ମାନ ଗୋବିନ୍ଦକୁ ମାଡ଼ି ବସିଲା ହୃଦୟର ।

× × ×

ରଟ ରଟ ମଟ ମଟ ବାଜନ୍ତି ବେନିପାଟି
ଚାପନ୍ତେ ଅସ୍ଥି ଚର୍ମ ଯାଉଥାଇ ଫାଟି ।

ବେଳାଂକ ପ୍ରହାରେ ଗଳିତ ମହାଘୁମ
ଝର ଝର ରୁଧିର ସ୍ଫୁଟିଣ ରୋମେ ରୋମ ।

ମୁଥ ପ୍ରହାରନ୍ତେ ନାକରୁ ବହଇ ରକତ
ଦେହେଂ ଦେହେଂ ଜଡ଼ିତ ହୋଇ ଉଠିଲେ ସ୍ୱେଦଗାତ ।

ସତ୍ୟଯୁଗେ ଯେସନେକେ କେତୁ ଯେ ମଙ୍ଗଳ
ତେସନେକ ଫଳାତ ଦଶନ୍ତି ବେନବୀର ।"

(ପୃ : ୭୫-୭୭)

ବୀଭତ୍ସ ରସାଶ୍ରିତ ବର୍ଣ୍ଣନା କବିଙ୍କ ଲେଖନୀରେ ଅତି ଜୀବନ୍ତ ରୂପ ପ୍ରାପ୍ତ ହୋଇଅଛି । ଏହି ବର୍ଣ୍ଣନାଗୁଡ଼ିକ ଯେତିକି ବୀଭତ୍ସ, ସେତିକି ଲୋମହର୍ଷଣକାରୀ । ଗଦା ପର୍ବରେ କୁରୁକ୍ଷେତ୍ରର ଦୃଶ୍ୟ ଅତି ଭୟଙ୍କର ଭାବରେ ବର୍ଣ୍ଣିତ । ରଣାଙ୍ଗନର ଚତୁର୍ଦ୍ଦିଗରେ କୁଢ଼ କୁଢ଼ ଶବ ମନରେ ଭୀତି ସଞ୍ଚାର କରିବା ସ୍ୱାଭାବିକ । ତତ୍‌ସହିତ ଅନ୍ଧକାର ରାତ୍ରିର ବକ୍ଷ ଚିରି ଛିନ୍ନ କବନ୍ଧମାନଙ୍କରୁ ରକ୍ତପାନ କରି ସାରିବା ପରେ କଙ୍କାଳୀ, ବେତାଳ, ଭୈରବୀ, ବୈତାଳୀ, ଯୋଗିନୀ ପ୍ରଭୃତି ନବକୋଟି ଚଣ୍ଡୀଙ୍କର ଉଦ୍‌ଦଣ୍ଡ ନୃତ୍ୟ ପରିବେଶର ବୀଭତ୍ସତାକୁ ବହୁଗୁଣିତ କରେ । ଏହି ଭୀତିପ୍ରଦ ଦୃଶ୍ୟର ବର୍ଣ୍ଣନାରୁ କେତେକ ପଙ୍କ୍ତି ଏଠାରେ ଉଦ୍ଧାର କରାଯାଇପାରେ ।

"ନବଲକ୍ଷ ମୂର୍ତ୍ତି ଯେ ଦେବୀ ରୁମଣ୍ଡା
ମୃତ୍ୟୁପିଣ୍ଡ ଆବୋରଣ କରେ ଖପର ଖଣ୍ଡା ।

× × ×

ମର୍ଦ୍ଦଳ ଘୁମୁରୀ ଯେ ବଜଘୋଷ ଦାରୁଣି
ଅଷ୍ଟବନ୍ଧ ହୋଇଣ ନାଚନ୍ତି ଖେମଟା ନାଟ ଖଣ୍ଡି ।

ଡାକନ୍ତି ଡାକେଶ୍ୱରୀ ଯେ ଶବଦ କଳ କଳ
ଭକ୍ଷନ୍ତି ମେଦ ମେଦା ଯେ ଉଠନ୍ତି ହୁଳହୁଳ ।

ସମସ୍ତ ଦେବୀମାନେ ବାରୁଣୀବନ୍ତେ ଭୁଣ୍ଡ
ଦଶନହି ରୂପନ୍ତେ କମ୍ପଇ ବ୍ରହ୍ମାଣ୍ଡ ।"

(ଗଦାପର୍ବ—ପୃ. ୧୦)

ସେହି ଗଦାପର୍ବରେ ବର୍ଣ୍ଣିତ ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ ପ୍ରସଙ୍ଗ ପାଠକଲେ ପାଠକ ମନରେ କରୁଣ ରସ ଜାତ ହୁଏ । ମହାଭାରତ ଯୁଦ୍ଧକ୍ଷେତ୍ର ରକ୍ତନଦୀରେ ପ୍ଲାବିତ । ଏହି ରକ୍ତନଦୀ ଅତିକ୍ରମ କରିବା ନିମନ୍ତେ ଦୁଃଶାସନ, କର୍ଣ୍ଣ

ଦ୍ରୋଣ, ଶଲ୍ୟ, ଭୂରିଶ୍ରବା, ଶକୁନି ପ୍ରମୁଖଙ୍କ ଶବର ଆଶ୍ରୟ ନେଇଛନ୍ତି ଦୁର୍ଯ୍ୟୋଧନ; ମାତ୍ର କୌଣସିଟି ତାଙ୍କୁ ସାହାଯ୍ୟ କରି ନାହିଁ । ବରଂ ରକ୍ତ ନଦୀର ସ୍ରୋତରେ ପାଞ୍ଚତାଳ ଗଭୀରରେ ନିମଜ୍ଜିତ ହୋଇଯାଇଛୁ । ସର୍ବଶେଷରେ ସେ ଏକ ଶବ ପାଇଛନ୍ତି, ଯାହା ଅନ୍ୟ ଶବ ଭଳି ବୁଡ଼ି ନ ଯାଇ ତାଙ୍କୁ ନଦୀର ଅପର ପାର୍ଶ୍ୱରେ ପହଞ୍ଚାଇ ଦେଇଅଛୁ । ଏହି ଶବଟି କାହାର ବୋଲି ଜାଣିବା ନିମନ୍ତେ ସେ ଯେତେବେଳେ ଏହାକୁ ଓଲଟାଇ ଦେଇଛନ୍ତି, ସେତେବେଳେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯାଇଅଛୁ । ଏ ଶବଟି ତାଙ୍କ ପ୍ରିୟ ପୁତ୍ର, ସୋମବଂଶର ଏକମାତ୍ର କୁଳନନ୍ଦନ ଲକ୍ଷ୍ମଣ କୁମାରର ବୋଲି ସେ ଚହ୍ନିବା ପରେ ପିତୃହୃଦୟ ତାଙ୍କର ବିଳପି ଉଠିଛୁ । ଶେଷ ଜୀବନର ଏକମାତ୍ର ଅବଲମ୍ବନ ପୁତ୍ରର ମୃତ ଶରୀର ଦେଖି କେଉଁ ପିତା ଧୈର୍ଯ୍ୟ ଧରି ରହିପାରିବ ? ମହାମାନୀ ଦୁର୍ଯ୍ୟୋଧନଙ୍କର ଶୋକାଭିଭୂତ ଅବସ୍ଥାର ଯେଉଁ ହୃଦୟ-ବିଦାରକ ଚିତ୍ର ସାରଳା ପ୍ରଦାନ କରିଛନ୍ତି, ତାହା ଯେ କୌଣସି ପାଠକର ନୟନରେ ଲୋତକ ଭରିଦିଏ । କବିଙ୍କ ଲେଖନୀରେ ଏହି କରୁଣ ପରିବେଶଟି ଏହିପରି ଫୁଟି ଉଠିଛୁ—

"ଅନ୍ଧର ନଉଡ଼ି ପୁତ୍ରରେ ଅନାସ୍ତ ମୋତେ କଲୁ
ଗଭୀର ସମୋଦ୍ରେ ମୋର ଭେଳା ବୁଡ଼ାଇଲୁ ।

× × ×

କଉଣ୍ଡେବ ବଳକୁ ତୁରେ ଦ୍ୱିତୀୟ ଚନ୍ଦ୍ର ଗୋଟି
ତୋହର ବନ୍ଧନେ ପୁଣି ମୋତେ ଅନ୍ଧାର ନବସୃଷ୍ଟି ।

× × ×

ବାବୁ ହୃଦେ ତୋତେ ଧରିଣ ଯେ ରଜା ଧୃତରାଷ୍ଟ୍ର
ତୋହୋର ମୁଖ ଦେଖନ୍ତେ ପାସୋରନ୍ତେ ଅନେଶ୍ୱତ ପୁତ୍ରଙ୍କର କଷ୍ଟ ।
ବାବୁରେ ହୃଦୟେ ଧରିଛୁ ତୋହୋର ମୃତପିଣ୍ଡ ଗୋଟି
ଯେ ମୋହୋର ଶରୀର ନ ଯାଏ କଂପା ଫାଟି ।"

(ଗଦାପର୍ବ— ପୃ. ୧୭-୧୯)

ଏହି ପ୍ରସଙ୍ଗରେ ଶ୍ରୀ ସୁରେନ୍ଦ୍ର ମହାନ୍ତି କହନ୍ତି—"ସମଗ୍ର ଗ୍ରୀକ୍ ଟ୍ରାଜେଡ଼ି-ସାହିତ୍ୟରେ କର୍ମଫଳର ନିର୍ମମ ପ୍ରଚଣ୍ଡତା ଓ ତାହାର ନିଷ୍ଠୁର ମର୍ମାନ୍ତିକ ଚିତ୍ରଣ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣର ପ୍ରଖରତା ନିକଟରେ ମଳିନ ଓ ନିଷ୍ପ୍ରଭ ହୋଇଅଛୁ କହିଲେ ଅତ୍ୟୁକ୍ତି ହେବ ନାହିଁ ।"

## ଅଳଙ୍କାର :

ସାରଳା ମହାଭାରତରେ ଶବ୍ଦାଳଙ୍କାରର ବ୍ୟବହାର ଦେଖାଯାଏ ନାହିଁ । ମାତ୍ର ଉପମା, ରୂପକ ଉତ୍ପ୍ରେକ୍ଷାଦି ଅର୍ଥାଳଙ୍କାରର ସାବଲୀଳ ତଥା ଆବେଗମୟୀ ସ୍ଫୁରଣ ପରିଲକ୍ଷିତ ହୁଏ, ଯାହା କାବ୍ୟର ଶ୍ରୀବୃଦ୍ଧି କରେ । ଏଗୁଡ଼ିକୁ କବି ଉଭୟ ପ୍ରକୃତି ଓ ସାଧାରଣ ଜୀବନରୁ ସଂଗ୍ରହ କରି ପରିବେଷଣ କରିଅଛନ୍ତି । କବିଙ୍କର ଉପମା ପ୍ରୟୋଗର କେତୋଟି ନମୁନା ହେଲା—

(କ) "ବିରାଟ ଅଗ୍ରତେ ସେ ଉତ୍ତର ଯେମନ୍ତେ ବୋଇଲେ
ପର୍ବତ ଚୂର ହୋଇ କି ନାଥ ଝେଲା ସେ ମାଇଲେ ।
ସମୁଦ୍ର ପୋତ ହୋଇ କି ପକାଇଲେ ବାଲି
ଜଷ୍ଟି ପିଟିଲେ କି ଭାଙ୍ଗଇ କି ଲୁହାର ଲଉଡ଼ି ।"

(ବିରାଟ ପର୍ବ – ପୃ. ୬୩୮)

(ଖ) "କଦଳୀ ବନ ଯେହ୍ନେ ବାତ ଘାତରେ ପଡ଼ନ୍ତି
ସହଦେବ ବାଣେ ଅସୁରବଳ ତେସନେ ଛିଡ଼ନ୍ତି ।"

(ମଧ୍ୟପର୍ବ—ପୃ. ୭୭୭)

(ଗ) "ଯେସନେକ ଚୂତଫଳ ଝଡ଼ଇ ବାତଘାତେ
ପଡ଼ିଲେ ଅନେକ ରଥୀ ଶିଖଣ୍ଡୀ ବିଘାତେ ।"

(ଭୀଷ୍ମପର୍ବ—ପୃ. ୬୯୫)

ବିରାଟ ପର୍ବରେ ଅଭିମନ୍ୟୁ ଓ ଉତ୍ତରା ବିବାହ ପ୍ରସଙ୍ଗରେ ଉତ୍ପ୍ରେକ୍ଷା ଅଳଙ୍କାରର ପ୍ରୟୋଗ ଦେଖାଯାଏ ।

"କି ଅବା ଦିଶଇ ଅଲକାର ପତି
କି ଅବା ଅଇରାବତ ତେଜି ଆସଇ ସୁରପତି ।
କି ଅବା ରତି ତେଜ୍ୟା କରି ଅଇଲା ଅନଙ୍ଗ
ଯେସନେକ ଦିଶୁଅଛି ଯେ ଅଭିମନ୍ୟୁ ଦିବ୍ୟ ଅଙ୍ଗ ।"

(ପୃ: ୬୭୫)

## ସଂଳାପ ଓ ନାଟକୀୟତା :

ମହାଭାରତରେ ବିଷୟ ପରିବେଷଣରେ ସାରଳାଙ୍କ ନାଟକୀୟ ରୀତି ଓ ଚତୁରତାପୂର୍ଣ୍ଣ ସଂଳାପ ଏହାକୁ ଏକ ସାର୍ଥକ ସୃଷ୍ଟିରେ ପରିଣତ କରିଅଛି । ଏହାର

ଆଲୋଚନା କେତୋଟି ଦୃଷ୍ଟାନ୍ତ ସହ କରାଯାଇପାରେ । ବିଷ୍ଣୁଙ୍କ ସହଧର୍ମିଣୀ ଲକ୍ଷ୍ମୀ ଓ ଶିବଙ୍କ ସହଧର୍ମିଣୀ ପାର୍ବତୀ କୋଟି କୋଟି ହିନ୍ଦୁଙ୍କର ଆରାଧ୍ୟା ଦେବତା । ସେମାନଙ୍କୁ ଭକ୍ତି ସହକାରେ ଆରାଧନା କରି ଫଳପ୍ରାପ୍ତ ହେବାର ଅନେକ ବର୍ଣ୍ଣନା ପୁରାଣ ଶାସ୍ତ୍ରମାନଙ୍କରେ ଦେଖିବାକୁ ମିଳେ; କିନ୍ତୁ ଏହି ଦେବୀ ଦ୍ୱୟଙ୍କୁ ସାରଳା ଦାସ ମଧ୍ୟପର୍ବରେ ସାଧାରଣ ମାନବୀ ରୂପେ ପରିକଳ୍ପନା କରିଅଛନ୍ତି । ଆମ ସମାଜରେ ଦୁଇଜଣ ସାଧାରଣ ସ୍ତ୍ରୀ ଯେପରି କଳହରେ ମାତି ଯାଆନ୍ତି, ଲକ୍ଷ୍ମୀ ଓ ପାର୍ବତୀ ସେହିପରି କଳହରତା ହୋଇପଡ଼ିଛନ୍ତି । ସେମାନଙ୍କର ପରସ୍ପର ପ୍ରତି ଆକ୍ଷେପୋକ୍ତିରେ ଯେଉଁ ପ୍ରକାରର ସଲାପ ଅତି ଚତୁରତାର ସହିତ କବି ଖଞ୍ଜି ଦେଇଛନ୍ତି, ତାହା ଆଧୁନିକ ପାଠକଙ୍କୁ ମଧ୍ୟ ବିସ୍ମିତ କରେ ।

ପାର୍ବତୀଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ଲକ୍ଷ୍ମୀ ତାଙ୍କୁ ପଚାରିଛନ୍ତି—

"ଲଂଗଟ ଭୁକ୍ରଟ ବୃଦ୍ଧ ଯୋଗୀ ଯେ ଗୋଟାଏ
ହାଡ଼ମାଳ ଆଭରଣ ଚର୍ମ ଛ ବଇଲ ପିଠିଏ ।
ତାହାକୁ ଦେଖିଲ କି ସ୍ୱେ ବାଟେ ଯାଉଂ ଯାଉଂ

(ପୃ. ୨୨୪)

ପାର୍ବତୀ ଭଲଭାବେ ବୁଝିପାରିଲେ ଏହି ଶ୍ଳେଷୋକ୍ତି ମଧ୍ୟରେ ତାଙ୍କର ପତି ଶିବଙ୍କୁ ଆକ୍ଷେପ କରାଯାଇଛି । ଏଥିରେ ସେ ଅପମାନିତ ବୋଧକଲେ ସତ; ମାତ୍ର ସେ କ'ଣ ସହଜରେ ପରାଜୟ ସ୍ୱୀକାର କରିବାର ପାତ୍ରୀ । ତେଣୁ ସେ ମଧ୍ୟ ଉତ୍ତରରେ ଦୁଇପଦ କଡ଼ା କଥା ଶୁଣାଇ ଦେଇଛନ୍ତି—

"ତୁ ଯାହା ପଚ୍ଚରିଲୁ ବୋଲନ୍ତି ପାର୍ବତୀ
ଗୋରୁଂକର ବାରତା ହାଦେ ଗଉଡ଼େ ଜାଣନ୍ତି ।
ଗଉଡ଼ଂକୁ ପଚ୍ଚର ଯାଇଂ ସ୍ୱେସନେକ ବାରତାଯେ
ବୋଲିବ ସ୍ୱେ ବାଟେ ଗଲା କି ବଇଲ ଗୋଟାଏ ।"

(ପୃ. ୨୨୫)

ପାର୍ବତୀ ଲକ୍ଷ୍ମୀଙ୍କ ପ୍ରଶ୍ନର ଏହିପରି ଟାଣ ଉତ୍ତର ଦେଇଛନ୍ତି । ନିଜେ ନିକ୍ଷେପ କରିଥିବା ବୁମେରାଂ ଦ୍ୱାରା ଲକ୍ଷ୍ମୀ ନିଜେ ଆଘାତ ପାଇଛନ୍ତି ।

ଆଦି ପର୍ବରେ ସହଜ ସୁନ୍ଦରୀ ଉପାଖ୍ୟାନରେ ରାଧିକା ଏବଂ ସହଜ ସୁନ୍ଦରୀର କଥୋପକଥନ ନାଟକୀୟତା ସୃଷ୍ଟି କରେ । ରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କ କାମକ୍ରୀଡ଼ା ଚନ୍ଦ୍ରସେଣା ଆଖିରେ ପଡ଼ିଯିବା ପରେ ସମ୍ଭବତଃ ସେମାନଙ୍କ ମଧ୍ୟରେ ପୁନର୍ବାର ମିଳିତ ହେବାର ସୁଯୋଗ ଆସି ନାହିଁ । ଏଣୁ ରାଧା ଅତି ଗୋପନରେ ଗୋପପୁର ଜନଶୂନ୍ୟ

ହେବାପରେ ସହଜ ସୁନ୍ଦରୀ ନାମକ ଜଣେ ବୃଦ୍ଧା ଦୂତୀକୁ ଶ୍ରୀକୃଷ୍ଣଙ୍କୁ ଡାକ ଆଣିବା ନିମନ୍ତେ ପଠାଇଛନ୍ତି । ଏହି ବୃଦ୍ଧା ଦୂତୀକୁ ସେ ନିଜର ଝୀନ ଶାଢ଼ୀ ପିନ୍ଧାଇ ଦେଇଛନ୍ତି । ତା'ର ଗଳାରେ ନିଜର ଝୁମ୍କାଯୁକ୍ତ ରତ୍ନମାଳ ଦେଇଛନ୍ତି, ତା'ର କବରୀ ପୁଷ୍ପମାଳାରେ ଅତି ଯତ୍ନର ସହିତ ବାନ୍ଧି ଦେଇଛନ୍ତି, ତା'ର ସର୍ବାଙ୍ଗରେ କସ୍ତୁରୀ ଲେପନ କରିଦେଇଛନ୍ତି ଏବଂ ପାଦରେ ନିଜ ପାଦର ନୂପୁର ପିନ୍ଧାଇ ଦେଇଛନ୍ତି ।

ଏଣେ ଶ୍ରୀକୃଷ୍ଣ କାମଜର୍ଜରିତ ହୋଇ ଯମୁନା କୂଳରେ ଜଳ ପାଇଁ ଆସୁଥିବା ଯେ କୌଣସି ଗୋପିକା ପାଇଁ ଅପେକ୍ଷାରତ । ରାଧାଙ୍କ ବସନ ଭୂଷଣ-ମଣ୍ଡିତା ଦୂତୀ ତାଙ୍କ ମନରେ ରାଧାଙ୍କ ଭ୍ରମ ଆଣିଛି । କାମ ପୀଡ଼ାରେ ଅତିଷ୍ଠ ହୋଇ ପଡ଼ିଥିବାରୁ ତାଙ୍କର ଯୁବତୀ, ବୃଦ୍ଧା, ରାଧା ଅବା ଦୂତୀର ବିଚାର ରହି ନାହିଁ । ସେ ସହଜ ସୁନ୍ଦରୀକୁ କୋଲକରି ମାଳତୀ ଲତା ତଳକୁ ନେଇଯାଇଛନ୍ତି ଏବଂ ଅନ୍ଧକାରରେ ତା' ସହିତ କାମକ୍ରୀଡ଼ାରେ ମଜ୍ଜି ଯାଇଛନ୍ତି । ରମଣାନ୍ତେ ସେ ଅବଶ୍ୟ ଏହି ବୃଦ୍ଧା ଦୂତୀକୁ ଚିହ୍ନି ପାରିଛନ୍ତି ଏବଂ ଉଭୟେ ଲଜ୍ଜିତ ହୋଇଛନ୍ତି । ଦୂତୀ ଅସମ୍ଭାଳ ହୋଇ ସେଠାରୁ ପଳାଇ ଯିବାକୁ ବସିଛି । ତରତରରେ ସେ ନିଜର ବସ୍ତ୍ର ନ ପାଇ ଶ୍ରୀକୃଷ୍ଣ ବସ୍ତ୍ର ପିନ୍ଧି ପକାଇଛି । ରମଣକ୍ଳାନ୍ତ ଦୂତୀ ପୁରୁଷ ବସ୍ତ୍ର ପରିଧାନ କରି ବିପର୍ଯ୍ୟସ୍ତ ବେଶଭୂଷା ସହିତ ରାଧାଙ୍କ ନିକଟରେ ପହଞ୍ଚିଛି । ଏହି ସମୟରେ ଯେ କୌଣସି ପାଠକ ମନରେ ଉତ୍କଣ୍ଠା ଜାତ ହେବା ସ୍ୱାଭାବିକ ଯେ କି ପ୍ରକାର କୈଫିୟତ୍ ସେ ରାଧାଙ୍କ ଆଗରେ ବାଢ଼ିବ ? ରାଧାଙ୍କ ପ୍ରଶ୍ନର ସେ କି ଉତ୍ତର ଦେବ ? କବିଙ୍କ ଲେଖନୀରେ ରାଧା ଓ ଦୂତୀର ପ୍ରଶ୍ନୋତ୍ତର ଅତି ମଞ୍ଜୁଳଭାବେ ଫୁଟି ଉଠିଛି ।

"ରାଧିକା ବୋଇଲା ଆଇ ଯେ ତୋହୋର ଅଧର
ବିରସ ଦିଶଇ ତ ଚୁମ୍ବିଲା ଆକାର ।

ଦୂତିକା ବୋଇଲା ନେ ଶୁଣ ସଙ୍ଗାତୁଣୀ
ତୋହର ପାଇଁ ବୋଇଲି ଅନେକ ଚାଟୁବାଣୀ ।

ଅନେକ ଚାଟୁ ପଢ଼ିଲ କଲି ଉଜାଇଂ ପ୍ରକାଶ
କହି କହି କଣ୍ଠ ଶୁଖିଲା ତେଣୁ ମୋହର ଅଧର ବିରସ ।

× × ×

ରାଧିକା ବୋଇଲେ ଆଇ ଯେ ତୋହୋର କାଯ୍ୟେ
ବିଦାରି ହୋଇଅଛି ଲକ୍ଷ ଦନ୍ତ କ୍ଷତ ପ୍ରାୟେ ।

ଦୂତୀ ବୋଇଲା ଅପାର ଘାନ୍ତ ଯହୁଂ ଶୁଝିଲ ଗଡ଼ିଘାଲା
ନ ଯାଇଂ ନ ଯାଇଂ ବୋଲି ମୋତେ ପାଦରେ ଦଳି ଦେଲା ।

କଣ୍ଟିକା ଲଟାଗ୍ଯେ ମୁଁ ପଡ଼ିଲି ମୁହିଂ ମାଡ଼ି
କଣ୍ଟାମାନ ଲଗି ଶରୀର ମୋର ଛଡ଼ି ।

ରାଧିକା ବୋଇଲେ ମୁହିଂ ତୋତେ ପିନ୍ଧାଇଲି ମୋହର ଝିନଶାଢ଼ୀ
ପୁରୁଷ ବସ୍ତ୍ର ଗୋଟିଏ ଅଣିଲୁ କପର ପିନ୍ଧିକରି ।

ଦୂତୀକା ବୋଇଲି ମୁଂ ବୋଇଲି ବନୋଇ
ଯେତେ କଷ୍ଟ ଦେଖି ଆସିବାକୁ ସନମତ କଲି ସେହି ।

ଯେତେ କଷ୍ଟରେ ସେ ସନମତ କଲି
ଆଜ ରାତ୍ରେ ତାହାର ପୁରକୁ ଯିବ ସେ ବୋଇଲି ।

ମୁହିଂ ବୋଇଲି ଯେବେ ଯିବୁ ଆଜର ନଶି
ମୋହର ହାଥେ ରାଧିକାକୁ ସନ୍ତକ ଦେସି ।

ରାଧା ସମ୍ପ୍ରତେ ଯାଉ ତୋହୋର ସନ୍ତକ ଦେଖି
ସନ୍ତକ ଦେଖିଲେ ସମ୍ପ୍ରତେ ଯାଉ ଚନ୍ଦ୍ରମୁଖି ।

କୃଷ୍ଣ ବୋଇଲେ କିଛି ସନ୍ତକ ନାହିଂ ଗୋ ଦୂତୀକା ।
ପିନ୍ଧିଲର ବସ୍ତ୍ର ଅଛି ମାତ୍ର ମୋର ଯେକା ।

ମୁହିଂ ବୋଇଲି ଯେହା ଦେବୁ ନ ପାରିଲି
ତୁ ପିନ୍ଧ କହ୍ନାଇ ରାଧିକା ଶାଢ଼ି ଗୋଟି ।

ତୋର ବସ୍ତ୍ର ବୋଲି ହୋଇଲା ଉପତ
ସେ ଶାଢ଼ି ଆପଣେ ପିନ୍ଧିଲେ ଜଗନ୍ନାଥ ।

ତାହାଂକର ପିନ୍ଧିଲା ବସ୍ତ୍ର ମୁହିଂ ପିନ୍ଧିଲି
ପରତେ କମନ୍ତେ ମୁହିଂ ସନ୍ତକ ଆଣିଲି ।"

( ଆଦିପର୍ବ—ପୃ : ୫୨୮-୩୦ )

ସେହିପରି ବନପର୍ବରେ ବର୍ଣ୍ଣିତ 'ସତ୍ୟ-ଆମ୍ବ' କଥା ପ୍ରସଙ୍ଗରେ ଉତ୍କଣ୍ଠା ପ୍ରକାଶିତ ହୋଇ ନାଟକୀୟତା ସୃଷ୍ଟି ହୋଇଛି । ସାରଳା ମହାଭାରତରେ ଅନେକ ଉପାଖ୍ୟାନ ଏହିପରି ନାଟକୀୟ ଭାବରେ ପରିବେଷିତ ହୋଇଥିବାର ଦେଖିବାକୁ ମିଳେ ।

**ଗଦ୍ୟ :**

ସାରଳା ମହାଭାରତରେ ତତ୍କାଳୀନ ଗଦ୍ୟର ନମୁନା ମଧ୍ୟ ଦେଖିବାକୁ ମିଳେ । କେତେକ ପର୍ବରେ 'ଚଟାଉ', 'ଆଜ୍ଞା ପତ୍ରିକା', 'ମନ୍ତ୍ର' ପ୍ରଭୃତି ଗଦ୍ୟରେ ଲିଖିତ । ଏଥିରୁ କେବଳ ମଧ୍ୟ ପର୍ବରେ କେତୋଟି ଚୈଳ—ଭ୍ରମର ଆଜ୍ଞା ପତ୍ରିକା,

ସୃଷ୍ଟି ବର୍ଣ୍ଣନା, ଦୁର୍ଯୋଧନଙ୍କ ନିକଟକୁ ବଳରାମଙ୍କ ପତ୍ର, ଗୋରେଖନାଥଙ୍କ ନାମୋଲ୍ଲେଖ ଥିବା ମନ୍ତ୍ର ଇତ୍ୟାଦି । ଉଦାହରଣ ସ୍ୱରୂପ ଏଠାରେ ଦୁର୍ଯୋଧନଙ୍କ ନିକଟକୁ ବଳରାମଙ୍କ ପତ୍ରର କେତେକାଂଶ ଉଦ୍ଧାର କରାଯାଇପାରେ ।

## ଶ୍ରୀମୁଖ ଲେଖନ

ଜୟ ଜୟ ଶ୍ରୀ ଅନନ୍ତ ବିଶ୍ୱଭୂତ
ସପତ ବିଶ୍ୱ ଭାରଭର ବହିତ ।
ସୁର ସନକାଦି ବନ୍ଦିତ । ଅର୍କ ବିଧୁ ଉଦିତ ।
ତ୍ରଇଲୋକ୍ୟ ନାଥ । ବଳେ ବଳବନ୍ତ । ବିକ୍ରମ ସିଂହ ମତ୍ତ ।
ରୋହିଣୀ ଗର୍ଭ ସମ୍ଭୂତ । ଅଶେଷ କୋଟି ବ୍ରହ୍ମାଣ୍ଡ ଆଧିପତ୍ୟ ।
ଶ୍ରୀ ବିଶ୍ୱଯୋଗେଶ୍ୱର । ଶ୍ରୀ ଅନାଦି ଦେବ ପରଂବ୍ରହ୍ମ ଈଶ୍ୱର ।

× × ×

କାଦମ୍ବୀ ମୋହିଣ । କରାସନ୍ଧ ମର୍ଦ୍ଦନ । ଦୁର୍ବିଦ ବାନର ନାଶନ ।

× × ×

ଗୋମନ୍ତ ପର୍ବତ ଗିରି ମଣ୍ଡନ । ବୃନ୍ଦାବନ ମୋହନ ।
ଅସତ୍ୟ ଧ୍ୱଂସ କାରକ । ତମ ନାଶକ ।···ଇତ୍ୟାଦି

( ମଧ୍ୟପର୍ବ— ପୃ : ୬୧୪ )

## ପରବର୍ତ୍ତୀ କବିଙ୍କ ଉପରେ ପ୍ରଭାବ :

ସାରଳାଙ୍କ ପ୍ରଚଣ୍ଡ ପ୍ରତିଭା ତାଙ୍କର ପରବର୍ତ୍ତୀ କବିମାନଙ୍କୁ ସାହିତ୍ୟ କ୍ଷେତ୍ରରେ ଆଗକୁ ମାଡ଼ିଯିବା ନିମିତ୍ତ ପ୍ରେରଣା ଯୋଗାଇଅଛି । ତାଙ୍କ ମହାଭାରତରେ ବ୍ୟବହୃତ ଦାଣ୍ଡିବୃତ୍ତ ସେହିଦିନଠାରୁ ଅନ୍ୟ ଅନେକ ଗ୍ରନ୍ଥକାରଙ୍କ ଦ୍ୱାରା ଗୃହୀତ ହୋଇଅଛି । ମହାଭାରତର ବିଭିନ୍ନ ଆଖ୍ୟାନ, ସ୍ୱୟମ୍ବର, ହରଣ ଇତ୍ୟାଦି ବିଷୟବସ୍ତୁକୁ ଆଧାର କରି ଅନେକ କବି ଚଉତିଶାଠାରୁ ଆରମ୍ଭ କରି କାବ୍ୟ, କବିତା, ପୁରାଣ, ନାଟକ ସମୂହ ରଚନା କରି ଯାଇଅଛନ୍ତି । ଏହି ସାହିତ୍ୟକ କୃତିଗୁଡ଼ିକ ମହାଭାରତ ଭଳି ଓଡ଼ିଶାର ପୁରପଲ୍ଲୀରେ ଅତ୍ୟନ୍ତ ଜନପ୍ରିୟ ହୋଇଅଛି ।

ସାରଳା ମହାଭାରତର କଥାବସ୍ତୁକୁ ନେଇ ୧୭ଶ ଓ ୧୮ଶ ଶତାବ୍ଦୀର କବିଗଣଙ୍କ ସମେତ ଅନେକ କବି କ୍ଷୁଦ୍ରାକାରର ମହାଭାରତ ବା ଟୀକା ମହାଭାରତ ରଚନା କରିଅଛନ୍ତି ।

୧ । ବିପ୍ର ଦିବାକର ଦାସ—ମହାଭାରତ ଟୀକା
୨ । ପୁରୁଷୋତ୍ତମ ଦାସ—ଟୀକା ମହାଭାରତ
୩ । ବିଶ୍ୱମ୍ଭର ଦାସ—ବିଚିତ୍ର ଭାରତ
୪ । କେଶବ ପଟ୍ଟନାୟକ - ଛାନ୍ଦ ମହାଭାରତ
୫ । ମଧୁସୂଦନ ହରିଚନ୍ଦନ—ବିଚିତ୍ର ମହାଭାରତ
୬ । ଗଙ୍ଗାଧର—ଭାରତ ଚରିତାମୃତ

ମହାଭାରତର ନିର୍ଦ୍ଦିଷ୍ଟ ଉପାଖ୍ୟାନ, ହରଣ, ସ୍ୱୟମ୍ବର ଆଦି ବିଷୟବସ୍ତୁ ଅବଲମ୍ବନରେ ଯେଉଁ ପ୍ରାଚୀନ କବିଗଣ ସେମାନଙ୍କ ରଚନାକୁ ପୁଷ୍ଟ କରି ସାରଳାଦାସଙ୍କ ନିକଟରେ ଋଣୀ ରହି ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେକ ହେଲେ—

୧ । ଦୀନକୃଷ୍ଣ ଦାସ—ସୁଭଦ୍ରା ହରଣ
୨ । ଉପେନ୍ଦ୍ର ଭଞ୍ଜ— { ସୁଭଦ୍ରା ପରିଣୟ / ସୁବର୍ଣ୍ଣରେଖା }
୩ । ଶିଶୁ ଶଙ୍କର ଦାସ— { ଉଷାଭିଳାଷ / ଶଶିସେଣା }
୪ । ହରିଦାସ —ଚନ୍ଦ୍ରାବତୀ ହରଣ
୫ । ଦାମ ଦାସ ଦେଉଳ ତୋଳା
୬ । ଗୋପୀନାଥ ଦାସ—ପାରିଜାତ ହରଣ
୭ । ଗୋପୀନାଥ ସିଂ ନୀଳଗିରି ବିହାର କାବ୍ୟ ।
୮ । ବୈଶ୍ୟ—ଦ୍ରୌପଦୀ ସ୍ୱୟମ୍ବର ।

ଏହା ବ୍ୟତୀତ ଚୈତନ୍ୟ ଦାସ, ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଦାସ ପ୍ରଭୃତି କବିଗଣଙ୍କର କେତେକ ରଚନା ସାରଳା ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ବଳରାମ ଦାସଙ୍କ ଲକ୍ଷ୍ମୀ ପୁରାଣ, ସାରଳାଙ୍କ ଲକ୍ଷ୍ମୀ ପୁରାଣ ବଚନିକାର ଏକ ପରିବର୍ଦ୍ଧିତ ଓ ପରିମାର୍ଜିତ ସଂସ୍କରଣ ଭାବେ ଗ୍ରହଣ କରାଯାଇପାରେ ।

ଆଧୁନିକ ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ସାରଳା ଦାସଙ୍କ ରଚନାରୁ କଥାବସ୍ତୁ ଆହରଣ କରି 'ବାଣ ହରଣ' 'ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ' ଆଦି ପଦ୍ୟମାନ ରଚନା କରିଅଛନ୍ତି । ପୁନଶ୍ଚ ଏହି ମହାକବିଙ୍କର'ମହାଯାତ୍ରା' ମହାକାବ୍ୟରେ ସାରଳା ମହାଭାରତର ପ୍ରଭାବ ପଡ଼ିଥିବାର ଜଣାଯାଏ । ସ୍ୱଭାବ କବି ଗଙ୍ଗାଧର ମେହେର ମଧ୍ୟ ମହାଭାରତ କଥାବସ୍ତୁ ଉପରେ ନିର୍ଭର କରି 'କୀଚକ ବଧ' କାବ୍ୟ ରଚନା

କରିଅଛନ୍ତି । ଗଣକବି ବୈଷ୍ଣବ ପାଣି, ବାଲକୃଷ୍ଣ ମହାନ୍ତି ଓ ଅନ୍ୟାନ୍ୟ କେତେକ ନାଟ୍ୟକାରଙ୍କ ଅନେକ ପୌରାଣିକ ଗୀତିନାଟ୍ୟ ଓ ନାଟକ ମଧ୍ୟ ସାରଳା ମହାଭାରତର ବିଷୟବସ୍ତୁ ଉପରେ ଆଧାରିତ । ଆଧୁନିକ ଯୁଗରେ ମଧ୍ୟ ବହୁ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକଙ୍କ କୃତି ସାରଳାଙ୍କ କଥାବସ୍ତୁର ଭିତ୍ତିରେ ଗଢ଼ି ଉଠିଛି ।

କେବଳ ଓଡ଼ିଶାରେ ନୁହେଁ ଓଡ଼ିଶା ବାହାରର ସାହିତ୍ୟିକମାନେ ମଧ୍ୟ ସାରଳା ମହାଭାରତର ପ୍ରାଚୁର୍ଯ୍ୟରେ ମୁଗ୍ଧ ହୋଇ ଏହାଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ବଙ୍ଗଳା ଭାଷାରେ ମହାଭାରତ ରଚିତ ହେବାର ପ୍ରାୟ ଦୁଇଶତ ବର୍ଷ ପୂର୍ବରୁ ସାରଳା ମହାଭାରତ ରଚିତ ହୋଇଥିଲା । ଏହାର ଲୋକପ୍ରିୟତା ଏତେ ବେଶୀ ଥିଲା ଯେ ବଙ୍ଗଳାରେ ଏହା ଅନୂଦିତ ହୋଇ ପଠିତ ହେଉଥିଲା । ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ଓ ଶ୍ରୀ ଦୀନେଶ ଚନ୍ଦ୍ର ସେନ ପ୍ରମୁଖ ବଂଗୀୟ ସାହିତ୍ୟିକ ଓ ସମାଲୋଚକମାନେ ମଧ୍ୟ ସ୍ୱୀକାର କରନ୍ତି ଯେ ଏକଦା ସାରଳା ମହାଭାରତ ବଙ୍ଗଳାରେ ପ୍ରଚଳିତ ଥିଲା । ପରବର୍ତ୍ତୀ କାଳରେ ଏହାର ପ୍ରଭାବ ବଙ୍ଗୀୟ ଜନସମାଜରେ ଏତେ ବେଶୀ ଅନୁଭୂତ ହେଲା ଯେ ବଙ୍ଗଳା ଭାଷାରେ ସାରଳା ମହାଭାରତ ଅନୁକରଣରେ ମହାଭାରତ ରଚିତ ହେଲା । ବଙ୍ଗଳାର ମହାଭାରତକାର କାଶୀରାମ ସାରଳା ଦାସଙ୍କ ଭଳି ନିଜ ଗ୍ରନ୍ଥରେ ଭୀମଙ୍କୁ ନାୟକ ଭାବରେ ଗ୍ରହଣ କରିଅଛନ୍ତି । ସଭାପର୍ବର 'ଜରାସନ୍ଧ ବଧ' ଓ ବନ ପର୍ବର 'ସତ୍ୟ-ଆମ୍ବ' ଉପାଖ୍ୟାନ ଦୁଇଟିକୁ କାଶୀରାମ ଦାସ ଆତ୍ମସାତ୍ କରି ନେଇଛନ୍ତି । ଏହା ବ୍ୟତୀତ ସାରଳା ମହାଭାରତ ସହିତ ବଙ୍ଗଳା ମହାଭାରତର ଆହୁରି ଅନେକ ସାମଞ୍ଜସ୍ୟ ଯେ ନିଶ୍ଚୟ ଥିବ, ଏହା କେବଳ ଗ୍ରନ୍ଥ ଦ୍ୱୟର ଏକ ତୁଳନାତ୍ମକ ବିଶ୍ଳେଷଣ ବଳରେ ପ୍ରମାଣିତ କରିହେବ ।

ଭାଷା ଦୃଷ୍ଟିରୁ ବିଚାର କଲେ, ସାରଳାଙ୍କ ଭାଷା ଓଡ଼ିଆ ଭାଷାର ଅଭ୍ୟୁଦୟଠାରୁ ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୁ ପ୍ରଭାବିତ କରି ଆସିଛି । ତାଙ୍କ ଦ୍ୱାରା ପ୍ରୟୋଗ କରାଯାଇଥିବା ଶବ୍ଦାବଳୀର ବହୁଳ ବ୍ୟବହାର ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ଅନ୍ୟ ପଞ୍ଚସଖା ସାହିତ୍ୟ ସାଧକଙ୍କର ଅନ୍ୟାନ୍ୟ ରଚନାରେ ଦେଖିବାକୁ ମିଳେ । ଅଷ୍ଟାଦଶ ଶତାବ୍ଦୀର କବି ବ୍ରଜନାଥ ବଡ଼ଜେନାଙ୍କ ଗଦ୍ୟ ଓ ପଦ୍ୟ ରଚନାରେ ମଧ୍ୟ ସାରଳାଙ୍କ ଭାଷାର ଛାପ ଦେଖାଯାଏ । ଆଧୁନିକ ଯୁଗରେ ବ୍ୟାସକବି ଫକୀରମୋହନ ମଧ୍ୟ ନିଜ ଗଦ୍ୟ ରଚନାରେ ସାରଳାଙ୍କ ଭାଷା ବ୍ୟବହାର କରି ଓଡ଼ିଆ ଭାଷାର ଅଦ୍ଭୁତ ପ୍ରକାଶକ୍ଷମ ଶକ୍ତି ପ୍ରଦର୍ଶନ କରିଛନ୍ତି । ଫକୀରମୋହନଙ୍କ ପରବର୍ତ୍ତୀ ସାହିତ୍ୟିକଗଣ ଲୋକ କଥିତ ଭାଷାକୁ ସାହିତ୍ୟରେ ବ୍ୟବହାର କରିବା ପାଇଁ କ୍ରମଶଃ ଆଗ୍ରହୀ ହେଉଅଛନ୍ତି । ଫଳରେ ସଂସ୍କୃତ ପ୍ରଭାବିତ ଶୈଳୀର ଆଦର କମି ଯାଇଅଛି ଏବଂ ତାହା କ୍ରମଶଃ ଓଡ଼ିଆ ସାହିତ୍ୟ କ୍ଷେତ୍ରରୁ

ଦୂରେଇ ଯାଉଛି । ପ୍ରତ୍ୟାଗ୍ରର ଅକ୍ଷର ସମାନ ନ ଥିବା ସାରଳାଙ୍କ ଦାଣ୍ଡିବୃତ୍ତ ବା ଗଦ୍ୟ ଛନ୍ଦ ବର୍ତ୍ତମାନ ଆଧୁନିକ କବିତାରେ ଦେଖିବାକୁ ମିଳୁଛି । ପୁରାତନ ହେଲେ ମଧ୍ୟ ସାରଳାଙ୍କ ବ୍ୟବହୃତ ଭାଷାର ଆଦର୍ଶରେ ସେମାନେ ଉଦ୍‌ବୁଦ୍ଧ ହେଉଅଛନ୍ତି ।

ଏଥିରୁ ପ୍ରତିପାଦିତ ହୁଏ ଯେ ଦୀର୍ଘ ପାଞ୍ଚଶହ ପଚାଶ ବର୍ଷ ଧରି ବହୁ ପୁରାଣକାର, କାବ୍ୟକାର, ଲୀଳା, ଯାତ୍ରା, ସୁଆଙ୍ଗ ପ୍ରଭୃତିର ଲେଖକଗଣ ସାରଳାଙ୍କ ଗ୍ରନ୍ଥଦ୍ୱାରା ଅନୁପ୍ରାଣିତ ହୋଇ ଆସୁଅଛନ୍ତି । ତେଣୁ ତାଙ୍କୁ କେବଳ କବିଭାବେ ନୁହେଁ, କବିଗୁରୁ ଭାବେ ସମ୍ମାନିତ କରାଯାଇପାରେ ।

ପ୍ରଖ୍ୟାତ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ମତ ଉଦ୍ଧାର କରି ଏ ଆଲୋଚନା ସମାପ୍ତ କରାଯାଇପାରେ । ତାଙ୍କ ମତରେ—"ସାରଳାଙ୍କ ଓଡ଼ିଆ ମହାଭାରତ, ପ୍ରାଚୀନ କାବ୍ୟର ଏକ ମହାପ୍ରବାହ । ଏହା କେଉଁଠାରେ ଅଯତ୍ନ-ବନ୍ୟସ୍ତ ଓ ରୁକ୍ଷ, କେଉଁଠାରେ ରୁଦ୍ର ଓ ଭୟଙ୍କର, କେଉଁଠାରେ ବୀଭତ୍ସ ଓ ବିକଟ, ପୁଣି କେଉଁଠାରେ କାନ୍ତ, କମନୀୟ ପ୍ରସାଦଗୁଣଯୁକ୍ତ ଓ କାବ୍ୟୈଶ୍ୱର୍ଯ୍ୟମୟ । ସାରଳାଙ୍କର ଏହି ଗୌରବମୟ ଭିତ୍ତି ଓଡ଼ିଆ ସାହିତ୍ୟର ଭିତ୍ତି ଉପରେ କେବଳ ନିର୍ମିତ ହୋଇ ନ ଥିଲା, ସାରଳାଙ୍କ ପ୍ରଭାବ ଆଧୁନିକ ଯୁଗ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟ ସାହିତ୍ୟକୁ ଓତଃପ୍ରୋତ ଭାବରେ ପ୍ରଭାବିତ କରିଥିଲା ।"

(ଓଡ଼ିଆ ସାହିତ୍ୟର ଆଦିପର୍ବ—ପୃ. ୨୪୮)

[ ବି. ଦ୍ର.—ଏହି ଆଲୋଚନାରେ ସ୍ଥାନ ପାଇଥିବା କେତେକ ବିଭାଗ ଏବଂ ସେଗୁଡ଼ିକର କଥାବସ୍ତୁର ବିଶଦ ବ୍ୟାଖ୍ୟା ପୁସ୍ତକର ଅନ୍ୟାନ୍ୟ ପ୍ରବନ୍ଧ । ଆବଶ୍ୟକ ସ୍ଥଳେ ସେଗୁଡ଼ିକର ସାହାଯ୍ୟ ନିଆଯାଇପାରେ । ପୁନଶ୍ଚ ଏଥିରେ ଯେଉଁ ବିଭାଗଗୁଡ଼ିକର ବିଶଦ ବ୍ୟାଖ୍ୟା ଦିଆଯାଇଅଛି, ସେଗୁଡ଼ିକ ଆବଶ୍ୟକାନୁସାରେ ସଂକ୍ଷିପ୍ତ କରାଯାଇପାରେ ।]

## ଐତିହାସିକ ମୂଲ୍ୟ

ସାରଳା ମହାଭାରତ ଏକ ପୁରାଣ । ଏଣୁ ଏଥିରେ ଇତିହାସର ବିବରଣୀ ଖୋଜି ବସିଲେ ଆମକୁ ହତାଶ ହେବାକୁ ପଡ଼ିବ; କିନ୍ତୁ ସାରଳା ମହାଭାରତର ବିଭିନ୍ନ ବର୍ଣ୍ଣନା, ଆଖ୍ୟାନ ଓ ଆଖ୍ୟାୟିକା ମଧ୍ୟରେ ଇତିହାସ କିପରି ଲୁକ୍‌କାୟିତ ରହିଛି; ତାର ବିସ୍ତୃତ ବିବରଣୀ ବିଶିଷ୍ଟ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଝଙ୍କାର' ମାସିକ ପତ୍ରିକାରେ ବହୁ ଗବେଷଣାମୂଳକ ପ୍ରବନ୍ଧ ଜରିଆରେ ପ୍ରଦାନ କରି ଗବେଷଣା କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରି ଅଛନ୍ତି । ସୁଖର କଥା, ଏହି ପ୍ରବନ୍ଧଗୁଡ଼ିକ ଏକତ୍ରିତ ହୋଇ ପୁସ୍ତକାକାରରେ ( ସାରଳା ସାହିତ୍ୟର ଐତିହାସିକ ଚିତ୍ର ) ଆମ ପାଖରେ ପହଞ୍ଚି

ପାରନ୍ତି । ଯେଉଁସବୁ ଐତିହାସିକ ବିବରଣୀ ଆଲୋଚ୍ୟ ଗ୍ରନ୍ଥରେ ପ୍ରଚ୍ଛନ୍ନ ଭାବରେ ଥିଲା, ସେସବୁ ସେ ସାଧାରଣ ପାଠକ ସମ୍ମୁଖରେ ଉପସ୍ଥାପିତ କରି ସାରଳା ଦାସଙ୍କ ଇତିହାସ ଜ୍ଞାନର ପରିଚୟ ଦେବା ସଙ୍ଗେ ସଙ୍ଗେ ପ୍ରମାଣ କରିଅଛନ୍ତି ଯେ ସାରଳା ମହାଭାରତ କେବଳ ମହାକାବ୍ୟ ବା ପୁରାଣ ନୁହେଁ, ଏହା ଇତିହାସ ମଧ୍ୟ । ଡଃ ପାଣିଗ୍ରାହୀଙ୍କ ଆଲୋଚ୍ୟ ସମସ୍ତ ଐତିହାସିକ ତଥ୍ୟକୁ ଯଦି ଏ ଆଲୋଚନାର ପରିସର-ଭୁକ୍ତ କରାଯାଏ, ଏହା ତାଙ୍କ ଗ୍ରନ୍ଥଭଳି ଏକ ନୂତନ ଗ୍ରନ୍ଥରେ ପରିଣତ ହେବ । ଏଣୁ ଏଠାରେ ଅଳ୍ପ କେତେକ ଐତିହାସିକ ତଥ୍ୟର ଆଲୋଚନା କରାଯାଇପାରେ ।

ସାରଳା ମହାଭାରତରେ ଐତିହାସିକ ବିବରଣୀ ଯେତେ ପରୋକ୍ଷ ଭାବରେ ଆଉନା କାହିଁକି, ଏଥିରେ ସାରଳାଙ୍କ ସମୟର ଐତିହାସିକ ଚିତ୍ର ଯେ ଫୁଟି ଉଠିଛି, ଏଥିରେ ମଧ୍ୟ ଦ୍ୱିରୁକ୍ତିର ଅବକାଶ ନାହିଁ । ସାରଳା ଦାସ ଯେ ପଞ୍ଚଦଶ ଶତାବ୍ଦୀର କବି, ଏଥିରେ ମଧ୍ୟ ସନ୍ଦେହ ପ୍ରକାଶ କରାଯାଇ ନ ପାରେ । କାରଣ ଏ ସମ୍ପର୍କରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ ଓ ଯୁକ୍ତିଯୁକ୍ତ ମତାମତ ମିଳେ । ପଣ୍ଡିତ ଗୋପୀନାଥ ନ[redacted]ର୍ମା, ବିଜୟ ଚନ୍ଦ୍ର ମଜୁମ୍‌ଦାର, ତାରିଣୀ ଚରଣ ରଥ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ସ୍ୱର୍ଗତ ମନମୋହନ ଚକ୍ରବର୍ତ୍ତୀ, ଡଃ ହରେକୃଷ୍ଣ ମହତାବ, ଡଃ ମାୟାଧର ମାନସିଂହ, ଶ୍ରୀ ପ୍ରଭାତ କୁମାର ମୁଖାର୍ଜି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡଃ ବଂଶୀଧର ମହାନ୍ତି, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଡଃ କୃଷ୍ଣଚରଣ ସାହୁ ପ୍ରମୁଖ ପଣ୍ଡିତଗଣ ସାରଳାଦାସଙ୍କୁ ପଞ୍ଚଦଶ ଶତାବ୍ଦୀରେ ସ୍ଥାନ ଦେଇଅଛନ୍ତି । ସୁତରାଂ ସାରଳା ଦାସ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ଶେଷଭାଗ ଓ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ଜୀବିତ ଥିବାର ପୂର୍ବରୁ ଆଲୋଚିତ ହୋଇଅଛି । ଏଣୁ ବର୍ତ୍ତମାନ ଏହା କହିବାରେ କିଛି ବାଧା ନାହିଁ ଯେ ସାରଳା ଦାସ ସେ ସମୟର ଇତିହାସ ସମ୍ବନ୍ଧରେ ସଚେତନ ଥିଲେ ଏବଂ ସମକାଳୀନ ଐତିହାସିକ ଉପାଦାନଗୁଡ଼ିକ ମହାଭାରତର ବିଭିନ୍ନ ଉପାଖ୍ୟାନରେ ଅନ୍ତର୍ଭୁକ୍ତ କରିଥିଲେ । ସାରଳାଙ୍କ ପ୍ରଦତ୍ତ ଐତିହାସିକ ତଥ୍ୟ ପଞ୍ଚଦଶ ଶତକର ଇତିହାସ ମଧ୍ୟରେ କିପରି ପ୍ରଚ୍ଛନ୍ନ ରହିଅଛି, ସେ ସମ୍ବନ୍ଧୀୟ ଏକ ସଂକ୍ଷିପ୍ତ ଆଲୋଚନା ଏଠାରେ କରାଯାଇପାରେ ।

ଐତିହାସିକମାନେ ମତ ଦିଅନ୍ତି ଯେ ଗଜପତି କପିଳେନ୍ଦ୍ର ଦେବଙ୍କ ପୂର୍ବରୁ ଓଡ଼ିଶାରେ ଗଙ୍ଗବଂଶର ରାଜାମାନେ ଶାସନ କରୁଥିଲେ । ଏହି ରାଜାମାନେ ସୁଶାସକ ଥିଲେ ଏବଂ ନିରବଚ୍ଛିନ୍ନ ଭାବେ ତିନିଶହ କୋଡ଼ିଏ ବର୍ଷକାଳ ଶାସନ ଚଳାଇଥିଲେ । ଏହି ସମୟରେ ଓଡ଼ିଶା ଏକ ପ୍ରବଳ ପରାକ୍ରମୀ ରାଜ୍ୟ ରୂପେ ଭାରତ ତଥା ଭାରତ ବାହାରେ ପରିଚିତ ଥିଲା । ଏହି ବଂଶର ପ୍ରବଳ ପ୍ରତାପୀ ରାଜା ଚୋଡ଼ଗଙ୍ଗ ଦେବ ଖ୍ରୀ: ୧୦୭୮ରୁ ଖ୍ରୀ: ୧୧୪୭ ପର୍ଯ୍ୟନ୍ତ ଦୀର୍ଘକାଳ ରାଜତ୍ୱ କରିଥିଲେ । ତାଙ୍କ ଦ୍ୱାରା

ନିର୍ମିତ ଚୂଡ଼ଙ୍ଗ ଦୁର୍ଗ ବା ଚୂଡ଼ଙ୍ଗ ନଗରର ନାମୋଲ୍ଲେଖ ସାରଳା ଦାସ ବିରାଟ ପର୍ବରେ ଭୀମଙ୍କ ପ୍ରଦେଶୀ ମଲ୍ଲ ସହ ଯୁଦ୍ଧ ପ୍ରସଙ୍ଗରେ କବି ଏହିପରି କହିଛନ୍ତି—

"ବୀର ଚୂଡ଼ଙ୍ଗ ବୋଲିଣ ନଗ୍ର ପଶ୍ଚିମ କୋଣେ
ବଜ୍ରବାହୁ ମାଲ ପଡ଼ିଲ ସେ ନବସହସ୍ର ଯୋଜନେ ।"

(ବିରାଟ ପର୍ବ ପୃ ୨୨୩)

ପୁନଶ୍ଚ —

"ମହାକେଶରୀ ପୁତ୍ର ସେ ମେରୁକେଶରୀ ବୀର
ସେହିହାର ମୁଥଘାତେ ଖଣ୍ଡଗିରି ହୋଇଲା ଶତେଚୂର୍ଣ୍ଣ ।"

(ବିରାଟ ପର୍ବ—ପୃ: ୨୨୪)

ଖଣ୍ଡଗିରି ଓ ଚୂଡ଼ଙ୍ଗ ନଗର—ଏହି ଦୁଇଟି ନାମକୁ ବିଚାର କଲେ ଦେଖାଯାଏ ଯେ ଖଣ୍ଡଗିରି ଭୁବନେଶ୍ୱର ନିକଟରେ ଏବଂ ଚୂଡ଼ଙ୍ଗ ବା ସାରଙ୍ଗଗଡ଼ ବାରଙ୍ଗ ନିକଟରେ ଅବସ୍ଥିତ । ଏ ଦୁଇଟି ସ୍ଥାନ ମଧ୍ୟରେ ଦୂରତା ବେଶୀ ନୁହେଁ । ଏଣୁ ଚୂଡ଼ଙ୍ଗ ନଗର ହେଉଛି ବାରଙ୍ଗ ନିକଟବର୍ତ୍ତୀ ବୀର ଚୂଡ଼ଙ୍ଗ ଗଡ଼ ।

ଚୋଡ଼ଗଙ୍ଗ ଦେବଙ୍କ ପରେ ତାଙ୍କ ତିନି ପୁଅ ଜଣକ ପରେ ଜଣେ ରାଜତ୍ୱ କରିଥିଲେ । ରାଜରାଜ ଦେବ ତିନି ଭାଇଙ୍କ ମଧ୍ୟରେ କନିଷ୍ଠ ଥିଲେ ଏବଂ ସେ ଖ୍ରୀ. ୧୧୭୦ରୁ ୧୧୯୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମାଦଳା ପାଞ୍ଜି ଅନୁସାରେ ମଦନ ମହାଦେବଙ୍କ ନାମ ରାଜରାଜେଶ୍ୱର । ଏଥିରୁ ଅନୁମିତ ହୁଏ, ରାଜରାଜ ଦେବଙ୍କ ଅନ୍ୟନାମ ହେଉଛି ମଦନ ମହାଦେବ । ଏହି ନାମଟି ଆଲୋଚ୍ୟ ଗ୍ରନ୍ଥରେ ଏହିପରି ସ୍ଥାନ ପାଇଅଛି—

ଭୀମଦେଶ ରାଜା ବୀରଭଦ୍ର ନରପତି
ମଦନ ମହାଦେବ ତା ସଙ୍ଗରେ ଅଛନ୍ତି ।

(ମଧ୍ୟପର୍ବ)

ଗଙ୍ଗବଂଶର ତୃତୀୟ ଅନଙ୍ଗଭୀମ ଦେବଙ୍କ ସମୟରୁ ଅର୍ଥାତ୍ ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀରୁ ବଙ୍ଗର ମୁସଲମାନ ଶାସକଗଣ ବାରମ୍ବାର ଓଡ଼ିଶା ଆକ୍ରମଣ କରିଥିଲେ; ମାତ୍ର ପ୍ରତ୍ୟେକ ଥର ପରାସ୍ତ ହୋଇ ପଳାୟନ କରୁଥିଲେ । କାଳକ୍ରମେ ଓଡ଼ିଶାର ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିଥିଲା । ଫଳରେ ଖ୍ରୀ. ୧୩୬୧ରେ ଦିଲ୍ଲୀର ଶାସକ ଫିରୋଜ ଶାହ ତୋଗଲକ ତୃତୀୟ ଭାନୁଦେବଙ୍କୁ ପରାସ୍ତ କରି ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିଥିଲେ ଓ ଓଡ଼ିଶାର ଅଗଣିତ ନରନାରୀଙ୍କୁ ହତ୍ୟା କରିଥିଲେ । ତାପରେ

ଦେଶରେ ନୈଷାଗନ୍ତ ଅଭୂତପୂର୍ବ ଅନ୍ତର୍ବିପ୍ଳବ, ଯେତେବେଳେ ଚତୁର ସେନାପତି କପିଳ ରାଉତ କପିଳେନ୍ଦ୍ର ଦେବ ରୂପେ ଓଡ଼ିଶାର ସିଂହାସନ ଅଧିକାର କଲେ ।

ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର, ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର କପିଳେନ୍ଦ୍ର ଦେବ ଜଣେ ସୁଶାସକ ଏବଂ ପ୍ରବଳ ପ୍ରତାପୀ ସମ୍ରାଟ ଥିଲେ । ତାଙ୍କର ଉକ୍ତ ଦୀର୍ଘ ଉପାଧିଟି ଏପର୍ଯ୍ୟନ୍ତ ମଧ୍ୟ ଗଜପତି ମହାରାଜାମାନଙ୍କ ନାମ ପୂର୍ବରେ ବ୍ୟବହୃତ ହେଉଅଛି । ଏହି ଉପାଧିଗୁଡ଼ିକ ସେ କିପରି ପ୍ରାପ୍ତ ହୋଇଥିଲେ, ତାହାର ବିବରଣୀ ଆଲୋଚ୍ୟ ଗ୍ରନ୍ଥରେ ବର୍ଣ୍ଣିତ ଥିବାର ଦେଖାଯାଏ । ଖ୍ରୀ. ୧୪୫୦ରେ ସେ ବଙ୍ଗର ସୁଲତାନ ନାସିରୁଦ୍ଦିନଙ୍କୁ ପରାସ୍ତ କରି 'ଗୌଡ଼େଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ । ପୂର୍ବରୁ ବର୍ଣ୍ଣିତ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟକୁ କପିଳେନ୍ଦ୍ର ଦେବ ଶାସନଗତ ସୁବିଧା ଦୃଷ୍ଟିରୁ ନଅଗୋଟି ପାରିଦଣ୍ଡ ବା ଦଣ୍ଡପାଟରେ ବିଭକ୍ତ କରିଥିଲେ । ଏହି ନବ ଦଣ୍ଡପାଟକୁ ଘେନି ଗଠିତ ଉତ୍କଳ-ସାମ୍ରାଜ୍ୟ ନବକୋଟି ନାମରେ ପରିଚିତ ଥିବାର ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି ଅନୁମାନ କରନ୍ତି । ପୁନଶ୍ଚ ଖ୍ରୀ. ୧୪୬୧ରେ ବାହମନୀ ରାଜ୍ୟର ରାଜଧାନୀ 'ଗୁଲବର୍ଗ'କୁ ଅଭିଯାନ ଚଳାଇ ସେଠାରେ ଆଲାଉଦ୍ଦିନ ଅହମ୍ମଦ ଦ୍ୱିତୀୟଙ୍କୁ ଦେବରକୋଣ୍ଡାଠାରେ ପରାସ୍ତ କରିଥିଲେ । ବାହମନି ସୁଲତାନ ତାଙ୍କ ସହିତ ସନ୍ଧି ସ୍ଥାପନ କରିଥିଲେ ଏବଂ ତାଙ୍କୁ ଗୁଲବର୍ଗ ବା କଲବର୍ଗ ଅଞ୍ଚଳ ପ୍ରଦାନ କରିଥିଲେ । ଏହି 'ଗୁଲ୍‌ବର୍ଗ'ରୁ ହିଁ ଓଡ଼ିଆରେ କଳବର୍ଗ ନାମଟିର ସୃଷ୍ଟି ହୋଇଥିଲା ଏବଂ ସେହି ଦିନଠାରୁ କପିଳେନ୍ଦ୍ରଙ୍କ ପ୍ରଶସ୍ତିରେ 'କଳବର୍ଗେଶ୍ୱର' ଉପାଧି ସଂଯୋଜିତ ହୋଇଥିଲା । ସାରଳାଦାସ ଏହି କଳବର୍ଗ ନାମଟିକୁ ଆହୁରି ଟିକିଏ ପରିବର୍ତ୍ତନ କରି କାଳେବର କହିଛନ୍ତି ଏବଂ ଗ୍ରାମ ଶିବପୁରର ରାଜା ହୋଇଥିବାବେଳେ ତାଙ୍କୁ 'କାଳେବର ମହାରାଜା' ବୋଲି ବର୍ଣ୍ଣନା କରିଛନ୍ତି ।

"ଅନେକ ବ୍ରାହ୍ମଣ ଯେ କରନ୍ତି ପାଦପୂଜା
ବନ ନଗ୍ର ଦେଶେ କାଳେବର ମହାରାଜା ।"

( ଆଦିପର୍ବ—ପୃ-୭୦୫ )

ସଭାପର୍ବରେ ବର୍ଣ୍ଣିତ ରାଜସୂୟ ଯଜ୍ଞ ପ୍ରସଙ୍ଗ ସହିତ ସମ୍ପୃକ୍ତ ପାଣ୍ଡବମାନଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ ସାରଳାଦାସ ଲେଖିଛନ୍ତି ଯେ ବିଭିନ୍ନ ଦେଶର ରାଜାମାନଙ୍କୁ ନିମନ୍ତ୍ରଣ କରିବା ନିମନ୍ତେ ଭୀମ ପଶ୍ଚିମକୁ, ଅର୍ଜୁନ ଉତ୍ତରକୁ, ନକୁଳ ଦକ୍ଷିଣକୁ ଏବଂ ସହଦେବ ପୂର୍ବକୁ ଗମନ କରିଥିଲେ । ପାଣ୍ଡବମାନଙ୍କର ଏହି ଦିଗ୍‌ବିଜୟ ବର୍ଣ୍ଣନ କଲାବେଳେ, କବି କପିଳେନ୍ଦ୍ର ଦେବଙ୍କ ଦିଗ୍‌ବିଜୟକୁ ଆଖି ଆଗରେ ରଖି ସେଥି ମଧ୍ୟରୁ ଅନେକ ଏଥିରେ ସ୍ଥାନ ଦେଇଅଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦଶର୍ମା କହନ୍ତି ଯେ ସଂସ୍କୃତ ମହାଭାରତରେ ଏହି ଦିଗ୍‌ବିଜୟ ମାତ୍ର ୨୧୮ ଶ୍ଳୋକରେ ସମାପ୍ତ

ହୋଇଅଛି ; ମାତ୍ର ସାରଳା ଦାସ ଏହି ବିବରଣୀକୁ ନିଜ ଗ୍ରନ୍ଥରେ ନାନାବିଧ ଅବାନ୍ତର କଥାମାନଙ୍କରେ ସୁସଜ୍ଜିତ କରିଅଛନ୍ତି । କିନ୍ତୁ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତବ୍ୟକ୍ତ କରନ୍ତି ଯେ ମୂଳ ମହାଭାରତର ସଭାପର୍ବ ଓ ସାରଳା ମହାଭାରତର ସଭାପର୍ବ ମଧ୍ୟରେ ସମ୍ପର୍କ ନାହିଁ କହିଲେ ଚଳେ । ପୁନଶ୍ଚ ସାରଳାଙ୍କ ସଭାପର୍ବକୁ ଅବାନ୍ତର କହିବା ନିତାନ୍ତ ଅସମୀଚୀନ । ସାରଳା ଦାସଙ୍କୁ ତାଙ୍କ ସମୟର ଯେତେକ ଐତିହାସିକ ଓ ଭୌଗୋଳିକ ବିବରଣୀ ଜଣାଥିଲା, ସେସବୁକୁ ସେ ଏହି ପର୍ବର ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରେ ସନ୍ନିବେଶ କରିବା ପାଇଁ ଚେଷ୍ଟା କରିଅଛନ୍ତି । ଏଣୁ ଭାରତୀୟ ପ୍ରାଚୀନ ସାହିତ୍ୟରେ ଏହା ଏକ ଅଦ୍ୱିତୀୟ ମୌଳିକ ରଚନା ।

ଭୀମଙ୍କ ପଶ୍ଚିମ ଦିଗର ଦିଗ୍‌ବିଜୟ ପ୍ରସଙ୍ଗରେ ଯେଉଁ ଯେଉଁ ରାଜ୍ୟ ସମ୍ପୃକ୍ତ, ସେମାନଙ୍କ ମଧ୍ୟରୁ କେତୋଟି ହେଲେ—ପଶ୍ଚିମ ସୋମନାଥ ଓ ଶିବ ସମୁଦ୍ର, ଯାହା ଆନ୍ଧ୍ର ପ୍ରଦେଶର ଶ୍ରୀକାକୋଲ ଜିଲ୍ଲାସ୍ଥ ମୁଖଲିଙ୍ଗମ୍ ; ମାନସା ନନ୍ଦ—ନନ୍ଦପୁର କରିଣ ପର୍ବତ କୂର୍ମ ପର୍ବତ ; ମନୋହର ଦେଶ—ଶ୍ରୀକାକୋଲ ଓ ଗୋଦାବରୀ ନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ ; କୁଣ୍ଡୀନଗର—କୋଣ୍ଡବିଡ଼ୁ, ପଦ୍ମଦଳ—ପଦ୍ମପୁର ; ହିରଣ୍ୟପୁର ସୁବର୍ଣ୍ଣପୁର ; ଉଜାଣିକାନ୍ତି ଉଜ୍ଜୟିନୀ ; କୌଶିକ ନଗର କାନ୍ୟ-କୁବ୍‌ଜ ବା ଆଧୁନିକ କନଉଜ ; କରବୀର ଦେଶ—ବିଜୟ ନଗର ସାମ୍ରାଜ୍ୟ ; କାଉଁରୀ ଦେଶ—ଆସାମର ଗୌହାଟି ଅଞ୍ଚଳ ଇତ୍ୟାଦି । ଏହି ଦିଗ୍‌ବିଜୟ ସମୟରେ ଭୀମଙ୍କର କୁଣ୍ଡୀନଗର ରାଜା ଭୀଷ୍ମକଙ୍କ ସହିତ ହୋଇଥିବା ଯୁଦ୍ଧ ଭିତରେ ତତ୍‌କାଳୀନ ଓଡ଼ିଶାରେ ଘଟିଯାଇଥିବା କୁଣ୍ଡାବିଡୁ ସମର୍ପ ଆତ୍ମଗୋପନ କରିଅଛି । କାରଣ ଇତିହାସରୁ ଜଣାଯାଏ ଯେ ଖ୍ରୀ. ୧୪୪୭ରେ କପିଳେନ୍ଦ୍ର ଦେବ ରେଡ୍‌ଡ଼ୀ ରାଜ୍ୟ ତଥା କୁଣ୍ଡାବିଡୁ ଦୁର୍ଗ ଆକ୍ରମଣ କରି ନିଜ ଅଧିକାରଭୁକ୍ତ କରିଥିଲେ । ପୁନଶ୍ଚ ସାରଳା ବର୍ଣ୍ଣିତ କରବୀରପୁରର ରାଜା ପୁଣ୍ଡରିକ ବାସୁଦେବ, ଇତିହାସ ବର୍ଣ୍ଣିତ ବିଜୟ ନଗରର ରାଜା ମଲ୍ଲିକାର୍ଜ୍ଜୁନ ବ୍ୟତୀତ ଅନ୍ୟ କେହି ନୁହନ୍ତି ବୋଲି ଡଃ ପାଣିଗ୍ରାହୀ ମତ ଦିଅନ୍ତି । ଇତିହାସ କହେ ଯେ ବିଜୟ ନଗରରେ ମଲ୍ଲିକାର୍ଜ୍ଜୁନ ନାମକ ଜଣେ ରାଜା ଥିଲେ ଏବଂ କପିଳେନ୍ଦ୍ର ଦେବଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ଉପରୋକ୍ତ ଦୁଇଗୋଟି ଘଟଣା ମଧ୍ୟ ମାଦଳାପାଞ୍ଜି ଦ୍ୱାରା ସମର୍ଥିତ । କପିଳେନ୍ଦ୍ର ଦେବଙ୍କ ରାଜ୍ୟଜୟ ପ୍ରସଙ୍ଗରେ ମାଦଳା ପାଞ୍ଜିରେ ଅଛି "୧୯ ଅଙ୍କେ କୁଣ୍ଡମେରୁ ଗଲେ । ୨୧ ଅଙ୍କେ ମଲ୍ଲିକାକୁ ମାଇଲେ ।" ଏଠାରେ 'ମଲ୍ଲିକା' 'ମଲ୍ଲିକାର୍ଜ୍ଜୁନ'ର ସଂକ୍ଷିପ୍ତ ରୂପ ବା ନାମାନ୍ତର । ଏଥିରୁ ଜଣାଯାଏ ଯେ କୁଣ୍ଡାବିଡୁ ଜୟ ପରେ କପିଳେନ୍ଦ୍ର ଦେବ ବିଜୟ ନଗର ଆକ୍ରମଣ କରିଥିଲେ ଏବଂ ସେଠାକାର ରାଜା ମଲ୍ଲିକାର୍ଜ୍ଜୁନ ଯୁଦ୍ଧରେ ନିହତ ହୋଇଥିଲେ ।

ଅର୍ଜ୍ଜୁନ ନିମନ୍ତ୍ରଣ ପ୍ରଦାନ ନିମିତ୍ତ ଉତ୍ତର ଦିଗକୁ ଗମନ କରି ଯେଉଁ ଯେଉଁ ରାଜ୍ୟରେ ପହଞ୍ଚିଥିଲେ ତାହାର ବିସ୍ତୃତ ଆଲୋଚନା ଡଃ ପାଣିଗ୍ରାହୀ ପ୍ରଦାନ

କରିଅଛନ୍ତି । ସେଗୁଡ଼ିକ ମଧ୍ୟରୁ କେତୋଟି ହେଲେ, ନିଗର୍ତ୍ତି—ଇରାବତୀ, ବିପାଶା ଓ ଶତଦ୍ରୁ, ଏହି ତିନୋଟିନଦୀର ଅବବାହିକା ଅଞ୍ଚଳ ( ପଞ୍ଜାବ ); ପ୍ରାନ୍ତଲ—ପଞ୍ଜାବ; ମାଳବ; ବଙ୍ଗଦେଶ—ଆଧୁନିକ ବଙ୍ଗଦେଶର ପୂର୍ବାଞ୍ଚଳ ( ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଭୁକ୍ତ ); କାଶୀ ବାରାଣସୀ; ରୁଦ୍ରପୁର--ଗୋରକ୍ଷପୁର ନିକଟବର୍ତ୍ତୀ ସ୍ଥାନ, ସିନ୍ଧୁ ମନ୍ଦାର—ପଶ୍ଚିମବଙ୍ଗ ; ଲକ୍ଷ୍ମୀପୁର ଆସାମର ଲକ୍ଷୀପୁର; ନେପାଳ ଇତ୍ୟାଦି । ଏହି ସମସ୍ତ ମଧ୍ୟରେ ଅର୍ଜୁନ ଦରିଦସେନ ଓ ଜମାଗୋଷ୍ଠ ରାଜାଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଥିବା ବିଷୟ ସାରଳାଙ୍କ ଗ୍ରନ୍ଥରେ ବର୍ଣ୍ଣିତ । ଏହା ମଧ୍ୟ ଇତିହାସ ସମର୍ଥିତ । ଖ୍ରୀ ୧୪୫୮ ରେ ହୁମାୟୁନ ଦିଲ୍ଲୀର ସିଂହାସନ ଆରୋହଣ କଲେ ଏବଂ ତାଙ୍କ ସୈନ୍ୟମାନେ ସେନାପତି ଜଲାଲ୍ ଖାଁଙ୍କ ନେତୃତ୍ୱରେ ବାହୁଦନ ଧରି ଦେବରକୋଣ୍ଡା ଦୁର୍ଗ ଅବରୋଧ କଲେ । ଏହି ସମୟରେ ଦକ୍ଷିଣର ବେଲମବଂଶୀ ହିନ୍ଦୁ ରାଜାଗଣଙ୍କ ଆମନ୍ତ୍ରଣକ୍ରମେ କପିଳେନ୍ଦ୍ର ଦେବ ଜଲାଲ ଖାଁଙ୍କୁ ଆକ୍ରମଣ କରି ପରାସ୍ତ କଲେ । ସମାଲୋଚକଗଣ ମତ ଦିଅନ୍ତି ଯେ ସାରଳାଦାସଙ୍କ ଜରଦସେନ ହେଉଛନ୍ତି ହୁମାୟୁନ୍, ଜମାଗୋଷ୍ଠ ହେଉଛନ୍ତି ତାଙ୍କ ସେନାପତି ଜଲାଲ ଖାଁ ଏବଂ ଅମରଚୂଡ଼ ପର୍ବତ ହେଉଛି ଦେବରକୋଣ୍ଡା ଦୁର୍ଗ । ପୁନଶ୍ଚ ସାପ୍ରତିକ ପଶ୍ଚିମବଙ୍ଗକୁ ସାରଳା ଦାସ ସିନ୍ଧୁ-ମନ୍ଦାର କହିବାର ତାତ୍ପର୍ଯ୍ୟ ହେଉଛି, ଏଠାରେ ସିନ୍ଧୁ ଅଛି ଓ ହୁଗୁଳି ଜିଲାର ଆରାମବାଗ ନିକଟରେ ମନ୍ଦାର ଦୁର୍ଗ ମଧ୍ୟ ଅଛି । ଏଠାରେ କବିଙ୍କ ବର୍ଣ୍ଣିତ ତ୍ରିବେଣୀ ମଧ୍ୟ ଅଛି । ଏ ଦେଶର ରାଜା କାଳୁଘଣ୍ଟ ବଙ୍ଗ ସୁଲତାନ ଜଲାଲ୍ ଉଦ୍ଦିନ୍ ( ୧୪୧୫—୧୪୩୧ ) ଙ୍କ ଛଦ୍ମନାମ ବୋଲି ଅନୁମାନ କରାଯାଏ । ସେ ଥିଲେ ବ୍ରାହ୍ମଣ ରାଜା ଗଣେଶଙ୍କ ପୁତ୍ର ଏବଂ ତାଙ୍କର ନାମ ଥିଲା ଯଦୁ । ଧର୍ମାନ୍ତରିତ ହେବା ପରେ ସେ ଜଲାଲ୍ ଉଦ୍ଦିନ ନାମରେ ପରିଚିତ ହେଲେ । ଏଣୁ କବି ତାଙ୍କୁ କାଳୁଘଣ୍ଟ ବ୍ରାହ୍ମଣ ବୀର ପରଶୁରାମ ରୂପେ ବର୍ଣ୍ଣନା କରିଅଛନ୍ତି ।

ବିରାଟ ପର୍ବରେ ପାଣ୍ଡବମାନେ ବନବାସ କରିବା ସମୟରେ ସେମାନଙ୍କର ସନ୍ଧାନ ନେବା ପାଇଁ ଦୁର୍ଯ୍ୟୋଧନ ଚତୁର୍ଦ୍ଦିଗକୁ ଗୁପ୍ତଚରମାନଙ୍କୁ ପଠାଇଥିଲେ । ସେମାନେ ଫେରିଆସି ଯେଉଁ ଯେଉଁ ଦେଶ, ନଗର, ପର୍ବତ ଆଦିରେ ପାଣ୍ଡବମାନଙ୍କୁ ଖୋଜିଥିଲେ ତା'ର ସୁଦୀର୍ଘ ବିବରଣୀ ଦୁର୍ଯ୍ୟୋଧନଙ୍କୁ ଦେଇଥିଲେ । ( ଅବଶ୍ୟ ଶୁଦ୍ଧ ସଂସ୍କରଣ ସାରଳା ମହାଭାରତରେ ଏ ଅଂଶକୁ ଉକ୍ଷିପ୍ତତାର ସହିତ ବାଦ୍ ଦିଆଯାଇଥିବା ଦର୍ଶାଇ ଡଃ ପାଣିଗ୍ରାହୀ ଏହାଫଳରେ ସାରଳା-ସାହିତ୍ୟକୁ ହତ୍ୟା କରାଯାଇଥିବାର ଅଭିଯୋଗ କରନ୍ତି । ) ଏହି ବିବରଣୀମାନଙ୍କରେ ତତ୍କାଳୀନ ଐତିହାସିକ ଓ ଭୌଗଳିକ ତଥ୍ୟମାନ ଦେଖିବାକୁ ମିଳେ ।

ପୁନଶ୍ଚ କପିଳେନ୍ଦ୍ର ଦେବଙ୍କ ଅଧିକୃତ ରାଜ୍ୟ ମାହେନ୍ଦ୍ରୀ ନଗର (ରାଜମାହେନ୍ଦ୍ରୀ) ଏବଂ ମନ୍ଦାର ( ମନ୍ଦାରନ୍ ଦୁର୍ଗ)ର ନାମୋଲ୍ଲେଖ ଆଲୋଚ୍ୟ ଗ୍ରନ୍ଥରେ ଦେଖିବାକୁ ମିଳେ । ଭାନୁମତୀ ସ୍ୱୟମ୍ବରରେ କବି ଲେଖିଛନ୍ତି—

"କୁଣ୍ତୀନଗର ମାହେନ୍ଦ୍ରନଗର ଆବର
ନଳ ଅନଳ ଦେଶ ଯେ ପୁଣି ହିଁ ମନ୍ଦାର ।"

( ଆଦିପର୍ବ )

କପିଳେନ୍ଦ୍ର ଦେବ ଖ୍ରୀ: ୧୪୪୩ ରେ ସିଂହାଚଲମ୍‌ଠାରେ ରେଡ୍‌ଡ଼ୀମାନଙ୍କ ସଙ୍ଗେ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଥିଲେ ଓ ରେଡ୍‌ଡ଼ି ରାଜ୍ୟକୁ ନିଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିଥିଲେ । ସେହି ରେଡ୍‌ଡ଼ି ରାଜ୍ୟ କୃଷ୍ଣା ଓ ଗୋଦାବରୀର ଉର୍ବର ଅବବାହିକାରେ ଅବସ୍ଥିତ ଥିଲା ଏବଂ ଅତ୍ୟନ୍ତ ସମୃଦ୍ଧିଶାଳୀ ରାଜ୍ୟରୂପେ ପରିଚିତ ଥିଲା । ଏହାର ରାଜଧାନୀର ନାମ ଥିଲା ମାହେନ୍ଦ୍ର ନଗର ବା ରାଜମାହେନ୍ଦ୍ରି । ପାଣ୍ଡବଙ୍କ ସନ୍ଧାନରେ ଯାଇଥିବା ଦକ୍ଷିଣ ଦିଗର ଚର ମୁଖରେ ଏହି ମାହେନ୍ଦ୍ର ନଗର 'ମହାନ୍ଦ୍ର' ଭାବେ ମଧ୍ୟ ବର୍ଣ୍ଣିତ ହୋଇଅଛି ।

ଖ୍ରୀ: ୧୪୫୦ ରେ କପିଳେନ୍ଦ୍ର ଦେବ ବଙ୍ଗଳାର ସୁଲତାନ ନାସିରୁଦ୍ଦିନ୍‌ଙ୍କୁ ପରାସ୍ତ କରି ଗଙ୍ଗାତୀରବର୍ତ୍ତୀ ଏହି ସମୟର ପ୍ରସିଦ୍ଧ 'ମନ୍ଦାରନ' ଦୁର୍ଗ ଅଧିକାର କରିଥିଲେ । ସାରଳା ଏହାକୁ କେବଳ 'ମନ୍ଦାର' ବୋଲି ଉଲ୍ଲେଖ କରିଅଛନ୍ତି । ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ ଖୋଜିବା ପାଇଁ ଉତ୍ତର ଦିଗକୁ ପଠାଇଥିବା ଚର ଫେରିଆସି ଯେଉଁ ରାଜ୍ୟମାନଙ୍କର ବିବରଣୀ ଦେଇଅଛି, ସେଥିରେ ମଧ୍ୟ ଏହି 'ମନ୍ଦାରନ୍' ଦୁର୍ଗ 'ମନ୍ଦାର' ନାମରେ ସୂଚିତ ହୋଇଅଛି ।

ଅନ୍ୟ ଏକ ସମସାମୟିକ ଘଟଣାକୁ ଭାନୁମତୀ ସ୍ୱୟମ୍ବର ପ୍ରସଙ୍ଗରେ କବି କପରି ପ୍ରଚ୍ଛନ୍ନ ଭାବେ ପ୍ରକାଶ କରିଅଛନ୍ତି, ତାହା ଆଲୋଚନା କରାଯାଇପାରେ । "ଅଧ୍ୟାପକ ପ୍ରଭାତ ମୁଖାର୍ଜି ସମସାମୟିକ ବଙ୍ଗଳା ଓ ଓଡ଼ିଆ ଲେଖାରୁ ପ୍ରମାଣ କରିଅଛନ୍ତି, ପୁରୁଷୋତ୍ତମ ଦେବଙ୍କର ତିନୋଟି ରାଣୀ ଥିଲେ ଓ ତାଙ୍କ ପ୍ରଧାନ ରାଣୀଙ୍କ ନାମ ଥିଲା ଭାନୁମତୀ । ଏହି ଭାନୁମତୀ ରାଣୀ କେଉଁ ଦେଶର ରାଜାଙ୍କ କନ୍ୟା ଥିଲେ, ତାହା ଜଣାଯାଇ ନାହିଁ । ଆଦି ପର୍ବରେ ଭାନୁମତୀ ସ୍ୱୟମ୍ବର ନାମକ ଉପାଖ୍ୟାନରେ ସାରଳା ଦାସ ନିମ୍ନଲିଖିତ ପଦ୍ୟାଂଶରେ ଭାନୁମତୀଙ୍କ ପରିଚୟ ଦେଇ ଅଛନ୍ତି—

"ବିଦ୍ୟା ନଗରୀ ବୋଲିଣ ଦକ୍ଷିଣ କୋଣରେ
ଭୂମନ୍ତୁ ବୋଲିଣ ତହିଁ ଅଛି ମହୀପାଳେ ।
ଭୁବନବତୀ ଅଟଇ ତା ଭାର୍ଯ୍ୟା ନାମ
ପରମ ସାଧ୍ୱୀ ସେହି କରେ ଧର୍ମ କର୍ମ ।
ଦୁହିତା ହେଲା ତାର ନାମ ଭାନୁମତୀ
ତିନି ଭୁବନରେ ସେହି ଏକା ରୂପବତୀ ।" ※

---

※ ସାରଳା ମହାଭାରତ ଶୁଦ୍ଧ ସଂସ୍କରଣରେ ଏହିପରି ଅଛି—

ଟିପ୍ପଣୀ—

ବଦ୍ୟାନଗରୀ—ରାଜମହେନ୍ଦ୍ରୀର ଅପର ନାମ ଥିଲା ବଦ୍ୟାନଗରୀ । ରେଡ୍ଡି ରାଜବଂଶର ଧ୍ୱଂସ ହେବାପରେ କପିଳେନ୍ଦ୍ର ସର୍ବପ୍ରଥମେ ଦକ୍ଷିଣାଞ୍ଚଳର ଏହି ରାଜମହେନ୍ଦ୍ରୀ ରାଜ୍ୟ ଅଧିକାର କରିଥିଲେ । ପୁରୁଷୋତ୍ତମ ଦେବଙ୍କ ପ୍ରଧାନ ମହିଷୀ ଭାନୁମତୀ ଏହି ଦେଶର କନ୍ୟା ହୋଇଥିବା ଅତ୍ୟନ୍ତ ସମ୍ଭବ ।" ❋

ଚଣ୍ଡୀପୁରାଣ ଏବଂ ମହାଭାରତ ଉଭୟରେ କବି ମହିଷାପୁରର ପିତାର ନାମ କପିଳ ସିଂହ ରଖିଅଛନ୍ତି । ସମାଲୋଚକମାନଙ୍କ ମତରେ ଏହି କପିଳ ସିଂହ ନିଶ୍ଚିତ ଭାବରେ ପ୍ରବଳ ପରାକ୍ରମୀ ଗଜପତି କପିଳେନ୍ଦ୍ର ଦେବଙ୍କୁ ନିର୍ଦ୍ଦେଶ କରେ । କପିଳ ସିଂହ ଚରିତ ସମ୍ବନ୍ଧୀୟ ବର୍ଣ୍ଣନା ଚଣ୍ଡୀପୁରାଣରେ ବିସ୍ତୃତ ଭାବେ ପ୍ରଦତ୍ତ ହୋଇଥିଲେ ହେଁ ଆଲୋଚ୍ୟ ପୁସ୍ତକର ମଧ୍ୟ ପର୍ବରେ ମଧ୍ୟ ଦେଖିବାକୁ ମିଳେ ।

"କପିଳସିଂହ ରାକ୍ଷସ ତନୟେ ମହାସିଂହ ରାକ୍ଷସା
ସ୍ନେହାର ନନ୍ଦନ ଯେ ହୋଇଲା ମସ୍ୟେଂଷା ।

× × ×

ଚଉରାଣୀ ଷଉଣୀ ବଳ ତାହାକୁ ଖଟନ୍ତି
କପିଳ ସିଂହର ବଂଶ ସେ ପ୍ରତାପୀ ଅଟଇ ।"

( ମଧ୍ୟ ପର୍ବ—ପୃ: ୧୬୯ )

ଏତଦ୍‌ବ୍ୟତୀତ, ଯେଉଁ ଯେଉଁ ରାଜ୍ୟର ରାଜାମାନେ ହସ୍ତିନା ଆସି ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ ଏବଂ ଯେଉଁମାନେ ଯୋଗ ଦେଇ ନ ଥିଲେ, ତାହାର ବିବରଣୀ ପ୍ରଦାନ କରି କବି ତତ୍କାଳୀନ ଦେଶମାନଙ୍କର ସମ୍ୟକ୍ ପରିଚୟ ପ୍ରଦାନ କରିଅଛନ୍ତି । କପିଳେନ୍ଦ୍ର ଦେବ କୌରବ ପକ୍ଷରେ ଯୋଗଦେବା ନିମନ୍ତେ ହସ୍ତିନା ଆସି ନ ଥିଲେ । କାରଣ ସେ ଥିଲେ ସମ୍ରାଟ ଓ ରାଜଚକ୍ରବର୍ତ୍ତୀ । ତେଣୁ ଅନ୍ୟ ସାମନ୍ତ ରାଜାଙ୍କ ଭଳି ସୈନ୍ୟବଳ ଧରି କୁରୁକ୍ଷେତ୍ରକୁ ସେ ଆସିବାକୁ ପସନ୍ଦ କରି ନ ଥିଲେ । ଏହାଙ୍କ ଭଳି ଆଉ କେତେକ ରାଜା ମଧ୍ୟ ଯୁଦ୍ଧରେ ଯୋଗଦେବାକୁ ଆସି ନ ଥିଲେ । ଏ ସମ୍ବନ୍ଧରେ କବି ଲେଖିଛନ୍ତି—

"ପଶ୍ଚିମ କୋଣଲୁଂ ରାଜା ନଇଲା ମୃଗସେନ
ଉତ୍ତରୁ ଯମାପୃଷ୍ଟ ଯେ ନ କଲା ଗବନ ।

❋ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ—ସାରଳା ସ୍ମରଣିକା (୧୯୬୪)— ପୃ-୩୧

"ଶୁଣ ହୋ ରାଜନ ବଜସ୍ଥ ନଗ ବୋଲଣ ସେ ଦକ୍ଷିଣ କୋଣରେ
ଭୂମନୁ ବୋଲି କର ତହିଁର ମହୀପାଳେ
ତାହାର ଭାରିଜା ନାମ ଭୁବନାବତୀ
ତାହାର ଦୁହିତାର ନାମ ହୋଇଲା ଭାନୁମତୀ ।
ବଡ଼ାଇ ସୁନ୍ଦର ସେ ଅଟଇ ମହାରାଣୀ
ବେଦ ଶାସ୍ତ୍ର ନିର୍ମିତ ଯେ ଅଟଇ ପୁଣ୍ୟମାଣି ।"

( ଆଦିପର୍ବ---ପୃ-୩୬୪ )

"କପିଳ ସେନ ରାଜା ନଇଲା ପୂର୍ବଦେଶୁଂ
ଦକ୍ଷିଣୁଂ ନଇଲା ଉତ୍ପନ୍ନ ସୂର୍ଯ୍ୟବଂଶୁ ।...ଇତ୍ୟାଦି"

( ଉଦ୍‌ଯୋଗ ପର୍ବ - ପୃ-୮୭ )

ଏଥିରୁ ଐତିହାସିକ ବିବରଣୀ ସଙ୍ଗେ ସଙ୍ଗେ ଭୌଗଳିକ ବିବରଣୀ ମଧ୍ୟ ମିଳିଥାଏ ।

ପୁନଶ୍ଚ ଯେଉଁ ରାଜ୍ୟମାନେ ଏ ଯୁଦ୍ଧରେ ଯୋଗ ଦେଇଥିଲେ ସେମାନଙ୍କ ନାମର ବର୍ଣ୍ଣନା ଦେବାକୁ ଯାଇ କବି ଲେଖିଛନ୍ତି—

ଉଡ଼ଙ୍ଗଗଉଡ଼ ଚନ୍ଦ୍ରଗଡ଼ ମାଳବ କାଞ୍ଚନ
କର୍ଣ୍ଣାଟ ତଇଲଙ୍ଗ ଆବର ମଲ୍ହାର ଗାଜନ ।
ଚୀର ବୀର ମହାବୀର ଭୋଟ ଯେ ମନ୍ଦାର
ଖିର ଖାଂକର ମାଳବ ଓଡ଼ରାଷ୍ଟ୍ର ଗୁଜ୍ଜର ।
କନ୍ଧାଣ ପାରଜାତକ ନେପାଳ ବାରସର୍ଣ୍ଣୀ
ଭାନ୍ଦା ଅରବନ୍ଦ ଯେ ତାହାଳ ଗ୍ରେଡ଼ ଇଭ ।"

( ଉଦ୍‌ଯୋଗ ପର୍ବ—ପୃ-୮୫ )

ଉପରୋକ୍ତ ଛଅଗୋଟି ପଙ୍କ୍ତିରେ କବି ସମଗ୍ର ଉତ୍ତର ଭାରତରେ ଅବସ୍ଥିତ ବିଶିଷ୍ଟ ବିଶିଷ୍ଟ ରାଜ୍ୟଗୁଡ଼ିକର ଭୌଗଳିକ ଚିତ୍ର ପ୍ରଦାନ କରିଅଛନ୍ତି, ଯାହା ତାଙ୍କ ଭୌଗଳିକ ଜ୍ଞାନର ପରିଚାୟକ । କବି ଏପରି କେତେକ ରାଜ୍ୟର ଉଲ୍ଲେଖ କରିଛନ୍ତି, ଯାହାର ଐତିହାସିକତା ବା ଭୌଗଳିକତା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ସଂସ୍କୃତ ମହାଭାରତ ଭଳି ସାରଳା ମହାଭାରତରେ କେତେକ ନଦୀନଦୀ, ପର୍ବତର ନାମୋଲ୍ଲେଖ କରାଯାଇଛି, ଯାହା ସମ୍ପୂର୍ଣ୍ଣ କାଳ୍ପନିକ । ପୁନଶ୍ଚ ଏପରି କେତେକ ନଦୀନଦୀ ଇତିହାସ ପ୍ରସିଦ୍ଧ ପର୍ବତ ଆଦିର ବର୍ଣ୍ଣନା ଆଲୋଚିତ ଗ୍ରନ୍ଥରେ ପ୍ରଦତ୍ତ, ଯେଉଁଗୁଡ଼ିକ ବର୍ତ୍ତମାନ ମଧ୍ୟ ଦେଖିବାକୁ ମିଳେ ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହୁଏ ଯେ ସାରଳା ମହାଭାରତ କେବଳ କାବ୍ୟ ବା ପୁରାଣ ନୁହେଁ, ଏହା ଇତିହାସ ମଧ୍ୟ । ପୁନଶ୍ଚ ସାରଳା ଦାସ ଜଣେ ପୌରାଣିକ କବି କେବଳ ନୁହନ୍ତି, ସେ ଜଣେ ଦୂରଦୃଷ୍ଟିସମ୍ପନ୍ନ ଐତିହାସିକ ମଧ୍ୟ । ସାରଳା ମହାଭାରତରେ ଯେଉଁ ଐତିହାସିକ ଓ ଭୌଗଳିକ ଚିତ୍ର ଫୁଟି ଉଠିଛି, ତାହା କବିଙ୍କ ଅଗାଧ ପାଣ୍ଡିତ୍ୟ ଏବଂ ଗମ୍ଭୀର ସ୍ମରଣ ଶକ୍ତିର ପରିଚୟ ପ୍ରଦାନ କରେ । ମନେହୁଏ, ସତେ ଯେପରି ସମଗ୍ର ଭାରତର ଐତିହାସିକ ଓ ଭୌଗଳିକ ଚିତ୍ର ଏହି ସିଦ୍ଧକବିଙ୍କ ନଖଦର୍ପଣରେ ପ୍ରତିଫଳିତ ହୋଇ ଉଠୁଥିଲା । କାରଣ ସେତେବେଳେ ମାନଚିତ୍ରର ପ୍ରଚଳନ ନ ଥିଲା କିମ୍ବା ଇତିହାସ ଓ ଭୂଗୋଳ ସମ୍ବନ୍ଧୀୟ ତଥ୍ୟ ସମ୍ବଳିତ ପୁସ୍ତକ ଲବ୍ଧ ହେଉ ନ ଥିଲା । ଏଗୁଡ଼ିକର ପ୍ରଚଳନ ସମକାଳୀନ ସମାଜରେ ଥିଲା ବୋଲି ଯଦି ଧରାଯାଏ, ତେବେ ଏଗୁଡ଼ିକର ସଠିକତା ସମ୍ବନ୍ଧରେ ସନ୍ଦେହ ଜନ୍ମିବା ସ୍ୱାଭାବିକ; ମାତ୍ର ସମ୍ମୁଖରେ କୌଣସି ଆଦର୍ଶ ନ ଥାଇ ଏପରି ଏକ ବିଶାଳ ଗ୍ରନ୍ଥ ରଚନା କରିବା, ପୁଣି ତା ମଧ୍ୟରେ ଏପରି ବ୍ୟାପକ ସମସାମୟିକ ଐତିହାସିକ ଓ ଭୌଗଳିକ ଚିତ୍ର ପ୍ରଦାନ କରିବା କବିଙ୍କର ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ପ୍ରମାଣ କରେ । ପଞ୍ଚଦଶ ଶତକର ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ, ଐତିହାସିକ ଏବଂ ଭୌଗଳିକ ଆଦି ବିଭାଗର ଏପରି କୌଣସି ଦିଗ ନାହିଁ, ଯାହା ସାରଳା ମହାଭାରତରେ ପ୍ରତିଫଳିତ ହୋଇ ନାହିଁ । ସୁତରାଂ ତତ୍କାଳୀନ ଓଡ଼ିଶାକୁ ଜାଣିବା ନିମନ୍ତେ ସାରଳା ମହାଭାରତ ହେଉଛି ଏକ ଜ୍ଞାନକୋଷ ଏବଂ ଏ ସମ୍ପର୍କରେ 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ' ବୋଲି ଯାହା କୁହାଯାଏ, ତାହା ଅକ୍ଷରେ ଅକ୍ଷରେ ସତ୍ୟ ।

## ଭାଷା

ସରଳା ଦାସ ଯେଉଁ ସମୟରେ ଲେଖନୀ ଧରିଲେ, ସେ ସମୟରେ ସଂସ୍କୃତ ଭାଷାର ନିରଙ୍କୁଶ ରାଜତ୍ୱ ଚାଲିଥିଲା । କାରଣ ରାଜପୃଷ୍ଠପୋଷକତା ଲାଭ କରି ସଂସ୍କୃତ ସାହିତ୍ୟ ଏକାଦଶ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉନ୍ନତିର ଶୀର୍ଷ ଦେଶରେ ଉପନୀତ ହୋଇଥିଲା । ଏହି ସମୟ ମଧ୍ୟରେ ଓଡ଼ିଶାର ଉଦୟନାଚାର୍ଯ୍ୟ, ଜୟଦେବ, ଉମାପତି, କବିରାଜ ଶଙ୍ଖଧର, ବିଦ୍ୟାଧର, ନାରାୟଣ ଦାସ, ଗୋବର୍ଦ୍ଧନାଚାର୍ଯ୍ୟ, କୃଷ୍ଣାନନ୍ଦ ମହାପାତ୍ର, ମୁରାରି ମିଶ୍ର, ଦିବାକର ମିଶ୍ର, ବଡ଼ଜେନା ମହାପାତ୍ର, ବିଶ୍ୱନାଥ କବିରାଜ ପ୍ରମୁଖ ସଂସ୍କୃତ ସାହିତ୍ୟକାରଗଣ ସମସ୍ତ ଭାରତବର୍ଷରେ ସ୍ୱକୀୟ ପାଣ୍ଡିତ୍ୟ ଓ ସାହିତ୍ୟକୃତି ଦ୍ୱାରା ସମ୍ମାନିତ ହୋଇସାରିଥିଲେ । ଏମାନଙ୍କର ବଳିଷ୍ଠ ପ୍ରଭାବରେ ଓଡ଼ିଶାରେ ସଂସ୍କୃତ ସାହିତ୍ୟର ଦ୍ରୁତ ବିକାଶ ସାଧିତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ କାହାର ଦୃଷ୍ଟି ପଡ଼ୁ ନ ଥିଲା । ବରଂ ସଂସ୍କୃତ ପଣ୍ଡିତମାନେ ଏହାକୁ ହୀନ ଦୃଷ୍ଟିରେ ଦେଖୁଥିଲେ ଏବଂ ଘୃଣା କରୁଥିଲେ । ପ୍ରାକୃତ

ଭାଷାରେ ଅନୂଦିତ ଯେ କୌଣସି ଗ୍ରନ୍ଥ ନିନ୍ଦିତ ଓ ଘୃଣିତ ହେଉଥିଲା । ଓଡ଼ିଆ ଭାଷା ପ୍ରତି ଓଡ଼ିଆ ଲେଖକ ଓ ପାଠକମାନଙ୍କ ଏପରି ମନୋଭାବ ଏହି ପ୍ରାଚୀନ ଭାଷାର ସତ୍ତାକୁ ଲୋପ କରିଦେବା ନିମନ୍ତେ ମାର୍ଗ ପ୍ରସ୍ତୁତ କରିସାରିଥିଲା । ସଂସ୍କୃତ ସାହିତ୍ୟର ଚରମ ବିକାଶ ଓ ଓଡ଼ିଆ ସାହିତ୍ୟର ଚରମ ଦୁର୍ଦ୍ଦିନ—ଏହିପରି ଏକ ସନ୍ଧିକ୍ଷଣରେ ସାରଳା ଦାସ ମହାଭାରତ ରଚନା କରି ଯେଉଁ ପ୍ରଚଣ୍ଡ ବୈପ୍ଳବିକତା ପ୍ରଦର୍ଶନ କଲେ, ତାହା ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସାରଳାଙ୍କ ପୂର୍ବରୁ ଓଡ଼ିଆ ଭାଷାରେ କୌଣସି ସାର୍ଥକ ସାହିତ୍ୟିକ ନିଦର୍ଶନର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ । ନବମ ଶତାବ୍ଦୀର ଅପଭ୍ରଂଶ ଭାଷାରେ ବୌଦ୍ଧ ସହଜଯାନୀ ସିଦ୍ଧ ସାଧକଙ୍କ ଦ୍ୱାରା ରଚିତ ଚର୍ଯାଗୀତିକାଗୁଡ଼ିକୁ ଓଡ଼ିଆ ଭାଷାରେ ଆଦି ରଚନା ଭାବେ ଗ୍ରହଣ କରାଯାଉଥିଲେ ହେଁ ଏହାକୁ ବିକଶିତ ଓଡ଼ିଆ ଭାଷା ଭାବେ ସ୍ୱୀକାର କରାଯାଇ ନ ପାରେ । ନାଥ ସାହିତ୍ୟର 'ଶିଶୁବେଦ' ଓ ଅନ୍ୟାନ୍ୟ ଗ୍ରନ୍ଥର ଭାଷା ମଧ୍ୟ ଚର୍ଯାଗୀତିକାର ଭାଷାଠାରୁ ଭିନ୍ନତା ରକ୍ଷା କରିପାରି ନାହିଁ । ପୁନଶ୍ଚ ମତଦ୍ୱୈଧ ସତ୍ତ୍ୱେ ସାରଳାଙ୍କ ପୂର୍ବକାଳୀନ ରଚନା ଭାବେ ଗ୍ରହଣ କରାଯାଉଥିବା ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ଗଦ୍ୟପଦ୍ୟ ମିଶ୍ରିତ 'ରୁଦ୍ରସୁଧାନିଧି'ର ଭାଷା ସମ୍ପୂର୍ଣ୍ଣ ରୂପେ ସଂସ୍କୃତ କାବ୍ୟ ପ୍ରଭାବିତ ଭାଷା । ସୁତରାଂ ଏହା ନିଃସନ୍ଦେହରେ କୁହାଯାଇ-ପାରେ ଯେ ସାରଳାଙ୍କ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ କୌଣସି ମୌଳିକ ଗ୍ରନ୍ଥ ରଚିତ ହୋଇ ନ ଥିବାରୁ ସାରଳା ହେଉଛନ୍ତି ଯଥାର୍ଥରେ ଓଡ଼ିଆ ସାହିତ୍ୟର ଆଦିକବି ।

ସାରଳାଙ୍କ ପୂର୍ବରୁ ଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା ଆଧିପତ୍ୟ ବିସ୍ତାର କରିଥିଲେ । ଏଣୁ ସାରଳାଙ୍କ ସମୟରେ ଓଡ଼ିଆ ଭାଷା ଶୈଶବ ଅବସ୍ଥାରେ ଥିଲା । ତତ୍କାଳୀନ ଓଡ଼ିଆ ଉଭୟ ସଂସ୍କୃତ ଓ ପ୍ରାକୃତ ଭାଷା ଦ୍ୱାରା ପ୍ରଭାବିତ ହୋଇ-ଥିଲେ ହେଁ ଏଥିରେ ସଂସ୍କୃତ ଅପେକ୍ଷା ପ୍ରାକୃତ ସତ୍ତାର ଆଧିକ୍ୟ ପରିଲକ୍ଷିତ ହେଉଥିଲା । କାରଣ ଏହି ଶୈଶବାବସ୍ଥାରେ ଓଡ଼ିଆ ଭାଷା ପ୍ରାକୃତ ସୂତ୍ର ଅନୁସାରେ ବର୍ଦ୍ଧିତ ହେଉଥିଲା । ଏଣୁ ଅନତିକ୍ଲିଷ୍ଟ ସଂସ୍କୃତ ଶବ୍ଦ, ତଦ୍ଭବ ଶବ୍ଦ, ଓ ବିଶୁଦ୍ଧ ଓଡ଼ିଆ ଶବ୍ଦର ଏକ ସୁନ୍ଦର ସମନ୍ୱୟ ଦେଖିବାକୁ ମିଳେ ସାରଳା ମହାଭାରତରେ ।

ସାରଳା ନିଜ ଗ୍ରନ୍ଥରେ ସଂସ୍କୃତ ଶବ୍ଦଗୁଡ଼ିକର ବ୍ୟବହାରରେ ଏପରି କୌଶଳ ଅବଲମ୍ବନ କରିଅଛନ୍ତି ଯେ ସେଗୁଡ଼ିକ ପଢ଼ିବାରେ ବା ବୁଝିବାରେ ସାଧାରଣ ପାଠକକୁ କଷ୍ଟ ହୁଏ ନାହିଁ । ଏ ଶବ୍ଦଗୁଡ଼ିକ ମଧ୍ୟରୁ କେତେକ ହେଲେ—ଅପହାର, ଅପଚୟ, ଅମରାଧିନାଥ, ଆଳ, ଆଖଣ୍ଡଳ, ଉତ୍କର୍ଷ, ଉତ୍ତାନଶାୟୀ, ଋକ୍ଷ, କରପଟ୍ଟ, କୌଣପ, ଜମ୍ଭଭେଦୀ, ଜାହ୍ନବ, ଦର୍ଦ୍ଦୁର, ପଟ୍ଟଳ, ମଞ୍ଜୂଷ, ମମାପା, ମଘବା,

ଯାତୁଧାନ, ବାରଙ୍ଗନା, ବକୋଡ଼ା, ଭବନ୍ମ, ଭକ୍ଷାଣୀ, ରାତ୍ରିଚର, ଶୋଣିତ, ପୁନାସୀର, ସମସ୍ୟା ଇତ୍ୟାଦ ।

ସେ ସମୟରେ ଓଡ଼ିଆ ଭାଷା ଭଳି ଏକ ଅସମ୍ପୂର୍ଣ୍ଣ ଭାଷାରେ ବରାଟ ବରାଟ ଗ୍ରନ୍ଥମାନ ଲେଖିଥିଲେ ମଧ୍ୟ କବ ଏଗୁଡ଼ିକର କୌଣସି ସ୍ଥାନରେ ବଜାତୀୟ ଶବ୍ଦ ବ୍ୟବହାର କର ନାହାନ୍ତି । ଗ୍ରନ୍ଥ ରଚନାରେ ସେ ଖାଣ୍ଟି ଓଡ଼ିଆ ଶବ୍ଦ ଏବଂ ସହଜ ଓ ସରଳ ସଂସ୍କୃତ ଶବ୍ଦର ସାହାଯ୍ୟ ନେଇଅଛନ୍ତି । ଛାପା ପୁସ୍ତକରେ ଦେଖାଯାଉଥିବା ବଜାତୀୟ ଶବ୍ଦଗୁଡ଼ିକ ଅନୁଲିପିକାରଙ୍କ ପ୍ରକ୍ଷେପ ବ୍ୟତୀତ ଅନ୍ୟ କଛି ନୁହେଁ । ନଜର ଅଗାଧ ପାଣ୍ଡିତ୍ୟ ବଳରେ ସେ ସଂସ୍କୃତ ଶବ୍ଦରୁ ଶହ ଶହ ତଦ୍‌ଭବ ଶବ୍ଦ ସୃଷ୍ଟି କରି ଯାଇଛନ୍ତି । ସେଗୁଡ଼ିକ ମଧ୍ୟରୁ ଅଳ୍ପ କେତୋଟି ଉଦାହରଣ ସ୍ୱରୂପ ନମ୍ନରେ ପ୍ରଦତ୍ତ ହେଲା ।

| | |
|---|---|
| ଅମର୍ଷ = ଅମରଷ | ପଞ୍ଚାନନ = ପଞ୍ଚାଣ |
| ଉରଗ = ଉରଙ୍ଗ | ପତାକା = ପତାଙ୍ଗ |
| ଉରସଲ୍ୟ = ଉରସଲ | ପଙ୍କ = ପଙ୍କୁ, ପଂକୁ |
| ଉଭୟ = ଓହ | ମୋହପାଶ = ମୁହାଂସ |
| କନକ = କଣୟ | ମଦନ = ମୟାଣ |
| କାତ୍ୟାୟନୀ = କାନ୍ତାଣୀ | ରଜନୀ = ରୟଣୀ |
| ଦ୍ୱିତୀୟ = ଦ୍ୱିତ, ଦୁତ | ଭଗିନୀ = ବହଣୀ |
| ଦ୍ରୋହୀ = ଦୋରେହା | ସଦୃଶ = ସାରଷ |
| ଧିକ୍‌ଭାଷ = ଢିଙ୍ଗାସ | ସାଗର = ସାହେର |

ଏତଦ୍‌ବ୍ୟତୀତ ଆଦକବ ସାରଳା ଦାସ ସ୍ୱଗ୍ରନ୍ଥରେ ଅସଂଖ୍ୟ ବଶୁଦ୍ଧ ଓଡ଼ିଆ ଶବ୍ଦର ପ୍ରୟୋଗ କରିଅଛନ୍ତି । ତତ୍ପରବର୍ତ୍ତୀ କବମାନେ ନଜ ନଜ ପୁରାଣରେ ସେହ ସେହ ଶବ୍ଦଗୁଡ଼ିକ ବ୍ୟବହାର କରିଅଛନ୍ତି । ଅବଶ୍ୟ ସେହ ଶବ୍ଦଗୁଡ଼ିକ ପୌରାଣିକ ହୋଇଥିବାରୁ ସେଗୁଡ଼ିକର ବ୍ୟବହାର କ୍ରମଶଃ ହ୍ରାସ ପାଉଅଛି । ଯାହାହେଉ ସେଗୁଡ଼ିକ ମଧ୍ୟରୁ କେତେଗୋଟି ଉଦାହରଣ ସ୍ୱରୂପ ନମ୍ନରେ ପ୍ରଦର୍ଶିତ କରାଯାଇପାରେ ।

ଅଧାଟି, ଅଗୁଳ, ଅଲଟା, ଅଧାମ, ଆଗବଲି, ଉତପାତ, ଉଚ୍ଛାଉଳ, ଉଦଣ୍ଡ, କରାଣ୍ଡି, କଳଡ, କହ୍ଲର, କରୁଣି, କେରେଣ୍ଟ, କଳାଟି, କାକୁଆଳ, ଖୁରାଣି, ଖୁରୁଷାଣି, ଖଡ଼ଆଳ, ଗୁଗୁଚଆ, ଗୁଣ୍ଡୁର, ଜିପଣ୍ଡ, ତଜ୍ଜବ, ନଡ଼ପ, ମୁରାଟ, ଲଟ, ଶପୁଳ, ସିଂହଡ଼ା, ସକୋଡ଼, ହାଲହୋଳ ଇତ୍ୟାଦ ।

ହେର (ଦେଖି), ସ୍ନାହାନ (ସ୍ନାନ), ସବତଲୁ (ସବଡଲୁଳ) ପ୍ରଭୃତ କେତେକ ଗ୍ରାମ୍ୟ ଶବ୍ଦ ମଧ୍ୟ ସାରଳାଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ । ଚର୍ଯ୍ୟାପଦରେ

ବ୍ୟବହୃତ ଆଦି ଓଡ଼ିଆ ଭାଷାର କେତେକ ଶବ୍ଦର ପଦଚିହ୍ନ ସାରଳା ମହାଭାରତରେ ଦେଖିବାକୁ ମିଳେ । ଏହି ଶବ୍ଦଗୁଡ଼ିକ ମଧ୍ୟରେ କେରୁଆଳ, ଅଛନ୍ତେ, ଗୃହନ୍ତେ, ଜାଗନ୍ତେ ଆଦି ପ୍ରଧାନ ।

ମହାଭାରତରେ ବ୍ୟବହୃତ କେତେକ ଶବ୍ଦରେ ସ୍ୱରବର୍ଣ୍ଣର ପରିବର୍ତ୍ତନ ଦେଖାଯାଏ; ଯଥା-- ସମୁଦ୍ର—ସମୋଦ୍ର, ଦୁହିତା ଦୋହିତା, ହୁଏ—ହୋଏ, କାମିନୀ—କାମେନୀ, ଆରାଧନା—ଆରେଧନା ଇତ୍ୟାଦି । ଏତଦ୍‌ଭିନ୍ନ କେତେକ ସ୍ଥଳରେ 'ଉ' ଓ 'ଅ' ସ୍ୱରବର୍ଣ୍ଣ ଦ୍ୱୟ ମିଶି 'ଓ' ରୂପେ ବ୍ୟବହୃତ ହୋଇଅଛନ୍ତି । ଯେପରି—ହୁଅନ୍ତି—ହୋନ୍ତି । କେତେକ ଶବ୍ଦରେ ମଧ୍ୟ ବ୍ୟଞ୍ଜନ ବର୍ଣ୍ଣର ପରିବର୍ତ୍ତନ ଦେଖାଯାଏ । ଯଥା—ଖେଳ—ଖେଡ଼, ଭକତ—ଭଗତ, ଉପକାର—ଉପଗାର, ଅପସରି—ଅପଛରି, ଷଢ଼—ଛଢ଼ ଇତ୍ୟାଦି ।

ଉଚ୍ଚାରଣରେ ଶକ୍ତିପାତ ହେତୁ 'ହ' କାର ଆଗମ ହୋଇ ଅଳ୍ପପ୍ରାଣ ବ୍ୟଞ୍ଜନ ମହାପ୍ରାଣ ବ୍ୟଞ୍ଜନ ଧ୍ୱନିରେ ପରିଣତ ହୋଇଅଛି । ଯଥା—ହାଥ (ହାତ), ଭାରଥ (ଭାରତ), ଥାଠ (ଥାଟ), ଭ୍ରୁଥା (ଭ୍ରାତା), ସଘାତୁଣୀ (ସଙ୍ଗାତୁଣୀ) ଇତ୍ୟାଦି ।

କେତେକ ସ୍ଥଳରେ ବ୍ୟଞ୍ଜନ ଧ୍ୱନି ଲୋପ ହୋଇ କେବଳ ସ୍ୱରଧ୍ୱନି ରହିଯାଇଅଛି । ଯେପରି ନଅର (ନଗର), ଆର (ଅପର) ଇତ୍ୟାଦି ।

ସାରଳା ଦାସଙ୍କ ରଚନାରେ କେତେକ ବିଶେଷ୍ୟ ପଦ ବିଶେଷଣ ଭାବରେ ବ୍ୟବହୃତ ହେବାର ଲକ୍ଷ୍ୟ କରାଯାଏ । ଶାନ୍ତି, ତୃପ୍ତି, ଅତୃପ୍ତି, ବିସ୍ମୟ, ବିବେକ, ତୋଷ ପ୍ରଭୃତି କେତେକ ବିଶେଷ୍ୟ ଶବ୍ଦକୁ ସେ ବିଶେଷଣାର୍ଥରେ ପ୍ରୟୋଗ କରିଅଛନ୍ତି । ଯଥା—ସମସ୍ତ ଅରିଷ୍ଟି ସ୍ୱେହାର ହୋଇଲେ ଶାନ୍ତି । ଭୁଞ୍ଜିଣ ବୃଷଭ ତୃପ୍ତିତ ହୋଇଲା । ଅଧରେ ଶୃଙ୍ଗାରେ ଯେ ଅତୃପ୍ତି ଭାମା । ଆହାରେ, ସଗ୍ରାମେ, ଶୃଙ୍ଗାରେ ଅଟଇ ଅତୃପ୍ତି । ଯୁଧିଷ୍ଠି ବୋଇଲେ ତୁହି ଅତ୍ୟନ୍ତ ବିବେକ । ଦେଖିଣ ବିସ୍ମୟ ଯେ ହୋଇଲ ଜରାସନ୍ଧ । ଦେଖିଣ ଅସୁର ଯେ ଲେଉଡ଼ଇ ତୋଷମନେ ଇତ୍ୟାଦି ।

ସାରଳା ଦାସଙ୍କ ବିଭିନ୍ନ କାଳର କ୍ରିୟା ପ୍ରୟୋଗ ଅତ୍ୟନ୍ତ ଚମକ୍ରାର୍ଷକ । ବର୍ତ୍ତମାନ କାଳରେ 'ସି' ପ୍ରୟୋଗ ଅତୀତକାଳରେ 'କ' ପ୍ରୟୋଗ ଏବଂ ଭବିଷ୍ୟତ କାଳରେ 'ବ' ସ୍ଥାନରେ 'ମି'ର ପ୍ରୟୋଗ ତାଙ୍କ ରଚନାରେ ଦେଖିବାକୁ ମିଳେ । ଯେପରି—

| ବର୍ତ୍ତମାନ | ଅତୀତ | ଭବିଷ୍ୟତ |
|---|---|---|
| ଯାସି (ଯାଅ) | ଦେଲକ (ଦେଲା) | ଆଣିମି (ଆଣିବ) |
| ବୁଝସି (ବୁଝ) | କହିଲେକ (କହିଲେ) | ଜାଣିମୁ (ଜାଣିବୁ) |
| କହସି (କହ) | ବସି (ବସିଲା) | |

ଶୁଣସି (ଶୁଣ)   ନ ବସିଲ (ହେଲା ନାହିଁ)
ନ ଫୁଟିଲା (ପ୍ରକାଶ କଲା ନାହିଁ)

ଏଥିରେ କେତେକ ଅସମାପିକା କ୍ରିୟା ସମାପିକା କ୍ରିୟା ରୂପେ ବ୍ୟବହୃତ । କରି, ହରି, ବାଜି ପ୍ରଭୃତି ଅସମାପିକା କ୍ରିୟାଗୁଡ଼ିକ କରିବ, ହରିବ, ବାଜିବ କିମ୍ବା କରିଲା, ହରିଲା, ବାଜିଲା ଆଦି ସମାପିକା କ୍ରିୟା ପରିବର୍ତ୍ତେ ବ୍ୟବହୃତ ହୋଇଅଛି ।

ବିଭକ୍ତି ପ୍ରୟୋଗରେ ଏଥିରେ ଉଲ୍ଲେଖଯୋଗ୍ୟ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ପ୍ରଥମା ବିଭକ୍ତିରେ 'ମୁଁ' ପରିବର୍ତ୍ତେ 'ଆମ୍ଭ' ଓ 'ଆମ୍ଭର', ଦ୍ୱିତୀୟା ବିଭକ୍ତିରେ 'ମୋତେ' ପରିବର୍ତ୍ତେ 'ମୁକୁ' ଓ 'କୁ' ସ୍ଥାନରେ 'କଇ'ର ବ୍ୟବହାର କରାଯାଇଛି । ସଂସ୍କୃତ ତୃତୀୟା ବିଭକ୍ତି ଏକ ବଚନରେ 'ନରେଣ' ରୂପ ପରି 'ମଥାଏଣ', 'ତାହାରେଣ' ପ୍ରଭୃତିର ପ୍ରୟୋଗ ଅଛି । ଷଷ୍ଠୀ ବିଭକ୍ତିରେ 'ମୋର' ପରିବର୍ତ୍ତେ 'ଆମ୍ଭ', 'ଆମ୍ଭର' ପ୍ରୟୋଗ କରାଯାଇଛି । ଷଷ୍ଠୀ ବିଭକ୍ତି ପରିବର୍ତ୍ତେ ଚତୁର୍ଥୀ ବିଭକ୍ତିର ପ୍ରୟୋଗ ମଧ୍ୟ ଏଥିରେ ଦେଖିବାକୁ ମିଳେ । ଯେପରି—'ମୋର' ସ୍ଥାନରେ 'ମୋତେ' ।

ପ୍ରଥମ ପୁରୁଷ ଏକ ବଚନରେ 'ଏ' ସ୍ଥାନରେ 'ଇ'ର ପ୍ରୟୋଗ ଦେଖାଯାଏ । ଯେପରି 'ଖାଏ', 'ଯାଏ' ସ୍ଥାନରେ 'ଖାଅଇ', 'ଯାଅଇ' ଇତ୍ୟାଦି ।

କେତେକ ସ୍ଥଳରେ ବହୁବଚନ କରିବା ନିମନ୍ତେ ବହୁବଚନ ସୂଚକ ଶବ୍ଦର ପୁନଃ ପ୍ରୟୋଗ କରାଯାଇଛି । ଯଥା—ନାରୀଗଣମାନେ (ମଙ୍ଗଳ ଧ୍ୱନି କରନ୍ତେ ନାରୀଗଣମାନେ) । ପୁନଶ୍ଚ ଦ୍ୱିତୀୟା ବିଭକ୍ତିରେ ନ୍ତ, କ ଓ କଇଁର ପ୍ରୟୋଗ ଦ୍ୱାରା ବହୁବଚନ କରାଯାଇଥିବାର ଦୃଷ୍ଟାନ୍ତ ମଧ୍ୟ ପରିଲକ୍ଷିତ ହୁଏ । ଯେପରି—ମାନନ୍ତ, ଉମ୍ଭନ୍ତ, କନ୍ୟାକ, ଗଙ୍ଗାକଇଁ, ଭୁବନକଇଁ ଇତ୍ୟାଦି ।

ଶବ୍ଦ ସଂକୋଚନ ଯୋଗୁଁ 'ଯୁଧିଷ୍ଠିର' ସ୍ଥାନରେ 'ଯୁଧେଷ୍ଠି' ଏବଂ ଶବ୍ଦ ସଂପ୍ରସାରଣ ହେତୁ 'କୃଷ୍ଣା' ସ୍ଥାନରେ 'କୋଇନ୍ନା'ର ପ୍ରୟୋଗ ଦେଖିବାକୁ ମିଳେ । ଏଗୁଡ଼ିକ ପ୍ରାକୃତ ଭାଷା ଲେଖକଙ୍କର ନାମ ଅଟେ ବୋଲି ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମତ ଦିଅନ୍ତି । ※

ଆଜ୍ଞା ସ୍ଥାନରେ ଅଗ୍ୟାଂ ଏବଂ ଜ୍ଞାତା ସ୍ଥାନରେ ଗ୍ୟାଂତା ଲିଖିତ ହୋଇଥିବାର ଦେଖିବାକୁ ମିଳେ । ଅବଶ୍ୟ ଏହି ପ୍ରକାର ଲିଖନ ପଦ୍ଧତି ସମ୍ପୂର୍ଣ୍ଣ ଧ୍ୱନି ବିଜ୍ଞାନ ସମ୍ମତ । ଆହୁରି ମଧ୍ୟ ବାଞ୍ଛା ଶବ୍ଦଟି ବାଂଛା ଭାବେ ଲିଖିତ । ଅର୍ଥାତ୍ 'ଛ' ସ୍ଥାନରେ

※ ସାରଳା ସ୍ମରଣିକା—ପୃ. ୯

'କ୍ଷ' ବ୍ୟବହୃତ ହୋଇଅଛି । 'କ୍ଷ' ସ୍ଥାନରେ 'ଛ'ର ବ୍ୟବହାର ମଧ୍ୟ ଦେଖାଯାଏ । ଯେପରି—ଅନ୍ତରୀକ୍ଷ—ଅନ୍ତରୀଛ, ଚକ୍ଷୁ—ଚଛୁ, ନକ୍ଷତ୍ର—ନଛତ୍ର ଇତ୍ୟାଦି ।

ଏହି ଗ୍ରନ୍ଥରେ ଆଲଙ୍କାରିକ ଅନୁସ୍ୱାରର ବହୁଳ ବ୍ୟବହାର ଥିଲେ ମଧ୍ୟ ଚନ୍ଦ୍ରବିନ୍ଦୁ ସ୍ଥାନରେ ସର୍ବତ୍ର ଅନୁସ୍ୱାର ବ୍ୟବହୃତ । ଯେପରି—ତିହିଂ, ହେଂ, କୁଆଇଂ, ଯେଉଂ, ମୁହିଂ, ଯହୁଂ, ନାହିଂ ଇତ୍ୟାଦି ।

ପୁନଶ୍ଚ 'ଏ' ସ୍ଥାନରେ 'ଯ୍ୟେ' ବ୍ୟବହୃତ ହେବାର ଦେଖାଯାଏ । ଯଥା—ଯ୍ୟେ, ଯ୍ୟେଥୁଂ, ଯ୍ୟେସନେକ, କଥାଯ୍ୟେ, ଯ୍ୟେହାର ଇତ୍ୟାଦି ।

ସାହିତ୍ୟ ସୃଷ୍ଟି କରିବା ସାରଳାଙ୍କ ଉଦ୍ଦେଶ୍ୟ ନ ଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ସାଧାରଣ ଜନତାର ଭାଷାରେ ଜୀବନଗାଥା ନିବେଦନ । ଏଣୁ ସେ ଏପରି ଏକ ସର୍ବବୋଧଗମ୍ୟ ଭାଷା ଆବିଷ୍କାର କରିଅଛନ୍ତି ଏବଂ ତାକୁ ଗଦ୍ୟଧର୍ମୀ କରି ଏପରି ଲାଳିତ୍ୟପୂର୍ଣ୍ଣ ଭାବରେ ପ୍ରକାଶ କରିଅଛନ୍ତି ଯେ ସାଧାରଣ ଜନତା ତାଙ୍କ ଗ୍ରନ୍ଥ ପାଠ କଲାବେଳେ ଘଟଣାଗୁଡ଼ିକ ତା ଆଖି ଆଗରେ ଘଟିଗଲା ଭଳି ତାକୁ ଜଣାଯାଏ । ପୁନଶ୍ଚ ସାରଳା ହେଉଛନ୍ତି ଦାଣ୍ଡି ବୃତ୍ତର ସ୍ରଷ୍ଟା । ମୁକ୍ତ ଛନ୍ଦର ଏଇ ବୃତ୍ତ ଭାଷାକୁ ସହଜ ଓ ସ୍ୱଚ୍ଛନ୍ଦ କରିବାରେ ଏକ ବିଶେଷ ଭୂମିକା ଗ୍ରହଣ କରେ । ସୁତରାଂ ଏ ଦେଶରେ ସର୍ବଜନବୋଧ, ସରଳ ଓ ସାବଲୀଳ ସାହିତ୍ୟ ସୃଷ୍ଟି କରିବାରେ ସାରଳା ଦାସ ପ୍ରଥମ ବୋଲି ଧରିନିଆଯାଇପାରେ ।

ସାରଳା ମହାଭାରତର ଭାଷା ସମ୍ପର୍କରେ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମନ୍ତବ୍ୟ ଦିଅନ୍ତି—"ସାରଳାଦାସଙ୍କ କବିତାର ଭାଷା ସରଳା କୃଷକ କନ୍ୟା ପରି ସରଳ, ସ୍ୱାଭାବିକ ଓ ସାବଲୀଳ ଗତିରେ ନାଚି ନାଚି ଯାଇଛି । କୌଣସିଠାରେ କୃତ୍ରିମତାର ଗନ୍ଧସ୍ପର୍ଶ ପର୍ଯ୍ୟନ୍ତ ନାହିଁ । କବି ଭାବ ଚିନ୍ତା ବା ଅକ୍ଷର ଯୋଡ଼ି ଲେଖୁ ନ ଥିଲେ କିମ୍ବା ଯାହା ଲେଖୁଥିଲେ, ତାହା ସଂଶୋଧନ କରୁ ନ ଥିଲେ । ତାଙ୍କର ଲୌହ ଲେଖନ ଅକ୍ଳାନ୍ତ ଓ ଅବାଧ ବେଗରେ ଗତିକରି ଯାହା ଲେଖି ଯାଉଥିଲା, ତାହାହିଁ କବିତାରେ ପରିଣତ ହେଉଥିଲା । ଏହାହିଁ ତାହାଙ୍କର ଅସାଧାରଣ କବି-ପ୍ରତିଭାର ବିଶେଷତ୍ୱ ।"

ସାରଳାଙ୍କ ଭାଷା ତାଙ୍କ ପରବର୍ତ୍ତୀ ସାହିତ୍ୟ କୃତିରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ସାରଳାଙ୍କଦ୍ୱାରା ସୃଷ୍ଟ ଏବଂ ବ୍ୟବହୃତ ଅନେକ ଶବ୍ଦାବଳୀ ତାଙ୍କ ପରବର୍ତ୍ତୀ ପଞ୍ଚସଖା ସାହିତ୍ୟ-ସାଧକମାନଙ୍କ ରଚନାକୁ ପ୍ରଭାବିତ କରିଥିଲା । ରୀତିଯୁଗର କବିମାନେ ପୁନର୍ବାର ସଂସ୍କୃତାନୁସାରୀ ହୋଇଥିଲେ ମଧ୍ୟ ସେମାନଙ୍କ ପରବର୍ତ୍ତୀ ଯୁଗରେ ସାରଳାଙ୍କ ଲୋକକଥିତ ଭାଷାର ଆଦର ପୁନର୍ବାର ଦେଖାଗଲା । ଅଷ୍ଟାଦଶ ଶତାବ୍ଦୀର ଅମର କବି ବ୍ରଜନାଥ ବଡ଼ଜେନା ଓ ଊନବିଂଶ ଶତାବ୍ଦୀର ବ୍ୟାସକବି ଫକୀର ମୋହନ ସେନାପତି ସାରଳାଙ୍କ ଲୋକକଥିତ ଭାଷା ଦ୍ୱାରା ପ୍ରଭାବିତ ହୋଇ-

ଛନ୍ତି । ଆଧୁନିକ ସାହିତ୍ୟରେ ସାହିତ୍ୟିକ ଅଭିବ୍ୟକ୍ତିକୁ ସରଳ ଭାଷାରେ ପ୍ରକାଶ କରିବା ପାଇଁ ଚେଷ୍ଟା କରାଯାଉଛି । ତେଣୁ ପୁରାତନ ହେଲେ ମଧ୍ୟ ସାରଳାଙ୍କ ଆଦର୍ଶରେ ଆଧୁନିକ କବିଗଣ ଅନୁପ୍ରାଣିତ ହେଉଅଛନ୍ତି ।

ଓଡ଼ିଆ ଭାଷା ସଂସ୍କୃତ ଭାଷା କବଳିତ ହୋଇ ଯେତେବେଳେ ଲୁପ୍ତପ୍ରାୟ, ଠିକ୍ ସେତେବେଳେ ସାରଳାଙ୍କ ଆବିର୍ଭାବ । ଗ୍ରୀକ୍ ସାହିତ୍ୟକୁ ହୋମରଙ୍କ ଏବଂ ଇଂରାଜୀ ସାହିତ୍ୟକୁ ଚସର୍‌ଙ୍କ ଅବଦାନ ସହିତ ଓଡ଼ିଆ ଭାଷାକୁ ସାରଳାଙ୍କ ଅବଦାନ ତୁଳନା କରାଯାଇପାରେ । ଚସର୍ ଫରାସୀ ଭାଷା କବଳରୁ ଇଂରାଜୀ ଭାଷାକୁ ଉଦ୍ଧାର କରି ତାହାକୁ ପରିମାର୍ଜିତ ଏବଂ ସାହିତ୍ୟିକ ରୂପ ଦେଇଥିଲେ । ସାରଳା ଦାସ ଓଡ଼ିଆ ଭାଷାର ଉଦ୍ଧାର କ୍ଷେତ୍ରରେ ଅନୁରୂପ ଭୂମିକା ଗ୍ରହଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ରୀତିଯୁଗ ସାହିତ୍ୟ ସଂସ୍କୃତାନୁସାରୀ ହୋଇ ଆତ୍ମପ୍ରକାଶ କରିବା ପର୍ଯ୍ୟନ୍ତ ସାରଳାଙ୍କ ଭାଷା ଓଡ଼ିଆ ସାହିତ୍ୟରେ ଆଦର୍ଶ ଭାଷା ରୂପେ ଗୃହୀତ ହୋଇ ଆସିଅଛି । ଏଥିପାଇଁ ଓଡ଼ିଆ ଜାତି ସାରଳାଙ୍କ ପାଖରେ ଋଣୀ ଏବଂ ଚିରଦିନ ପାଇଁ ଋଣ ସ୍ୱୀକାର କରି ଆସୁଥିବ ।

## ସମାଜ ଚିତ୍ର

"ସାହିତ୍ୟ ସମସାମୟିକ ସମାଜର ପ୍ରତିଛବି ବହନ କରେ ।" ସାରଳା ମହାଭାରତ ପ୍ରତି ମଧ୍ୟ ଏହି ଉକ୍ତିଟି ପ୍ରଯୋଜ୍ୟ । କାରଣ ପଞ୍ଚଦଶ ଶତକର ଉତ୍କଳୀୟ ରାଜନୈତିକ, ସାମାଜିକ ତଥା ସାଂସ୍କୃତିକ ଜୀବନର ସୁସ୍ପଷ୍ଟ ଚିତ୍ର ଏହାର ଛନ୍ଦେ ଛନ୍ଦେ ପ୍ରତିଫଳିତ । ଓଡ଼ିଶା ଜାତୀୟ ଜୀବନର ଏପରି କୌଣସି ଦିଗ ନାହିଁ, ଯାହା ଏହି ନିପୁଣ କବିଙ୍କ ଲେଖନୀରେ ନିଖୁଣ ରୂପରେଖ ପାଇନାହିଁ । ତତ୍କାଳୀନ ସାମାଜିକ ରୀତିନୀତି, ଚଳଣି, ଆଚାର ବ୍ୟବହାରାଦିର ପ୍ରଭାବ ସାମ୍ପ୍ରତିକ ସମାଜ ଜୀବନରେ ମଧ୍ୟ ପରିଲକ୍ଷିତ ହୁଏ । ଏଣୁ ସାରଳା ମହାଭାରତକୁ ଓଡ଼ିଶାର 'ସାମାଜିକ ଇତିହାସ ଆଖ୍ୟା ଦେଲେ ଅଯଥାର୍ଥ ହେବ ନାହିଁ ।

ସାରଳା ଦାସଙ୍କୁ ଓଡ଼ିଶାର ଗଜପତି କପିଳେନ୍ଦ୍ର ଦେବଙ୍କ ସମସାମୟିକ କବି ଭାବରେ ଗ୍ରହଣ କରାଯାଇଥାଏ । କପିଳେନ୍ଦ୍ର ଦେବ ଖ୍ରୀ. ୧୪୩୫ରୁ ଖ୍ରୀ ୧୪୬୭ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ । ଏହି ସମୟର ରାଜନୈତିକ ଅବସ୍ଥା ଥିଲା ସଙ୍କଟମୟ । ପୂର୍ବରୁ ଗଙ୍ଗବଂଶର ରାଜାମାନେ ଦୁର୍ବଳ ଥିବାରୁ ରାଜ୍ୟ ମଧ୍ୟରେ ଅନ୍ତ-ର୍ବିପ୍ଳବ ଲାଗି ରହିଥିଲା ଏବଂ ବହିଃ ଶତ୍ରୁମାନଙ୍କର ଘନ ଘନ ଆକ୍ରମଣ ଫଳରେ ଦେଶର ରାଜନୈତିକ ବାତାବରଣ ଅଶାନ୍ତ ହୋଇ ପଡ଼ିଥିଲା । ଫଳତଃ ସାମାଜିକ ସ୍ଥିତି ମଧ୍ୟ ଦୋହଲି ଯାଇଥିଲା । କପିଳେନ୍ଦ୍ର ଦେବ ସିଂହାସନାରୋହଣ କରିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ଅଶାନ୍ତି ଏବଂ ବହିଃ ଆକ୍ରମଣରୁ ଦେଶକୁ ରକ୍ଷା କରିବା ନିମନ୍ତେ ଯତ୍ନ-

ପରାସ୍ତ କରିବାକୁ ଚେଷ୍ଟା କରିଥିଲେ । ତୀକ୍ଷ୍ଣ ବୁଦ୍ଧି ଓ ଅସାଧାରଣ ବୀରତ୍ୱ ବଳରେ ସେ ଅନ୍ତର୍ବିପ୍ଳବକୁ ଦମନ କରିପାରିଥିଲେ ଏବଂ ଖ୍ରୀ. ୧୪୫୪ରୁ ଖ୍ରୀ. ୧୪୬୭ ମଧ୍ୟରେ କେରଳ, କର୍ଣ୍ଣାଟ, ବାହମନ, ବିଜୟ ନଗରମ୍ ଆଦି ରାଜ୍ୟ ଜୟ କରି ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଉତ୍କଳର ସୀମା ବିସ୍ତୃତ କରିବା ନିମନ୍ତେ ସକ୍ଷମ ହୋଇଥିଲେ । ଖ୍ରୀ ୧୪୫୦ରେ ବଙ୍ଗଳାର ସୁଲତାନ ନାସିରୁଦ୍ଦିନଙ୍କୁ ପରାସ୍ତ କରି ସେ ଗୌଡ଼େଶ୍ୱର ଉପାଧିରେ ଭୂଷିତ ହୋଇଥିଲେ । ପ୍ରଜାମାନଙ୍କ ସୁଖ ସୁବିଧାରେ ରଖିବା ନିମନ୍ତେ ଓ ଆଦର୍ଶ ଶାସନ-ବିଧାନର ପ୍ରଚଳନ ନିମନ୍ତେ ସେ ସାମନ୍ତରାଜା-ମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଏହା ଫଳରେ ଦେଶର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ଉନ୍ନତି ଦେଖା ଦେଇଥିଲା ।

## ଉଦାର ଆଧ୍ୟାତ୍ମିକ ଚେତନା :

ସେ ସମୟରେ ଓଡ଼ିଶା ସର୍ବଧର୍ମ ସମନ୍ୱୟର ପୀଠ ଥିବାର ଜଣାଯାଏ । କାରଣ ସାରଳା ଦାସ ନିଜକୁ ଚଣ୍ଡୀପୁତ୍ର, ସାରଳା ପୁତ୍ର ଆଦି କହି ନିଜର ଶକ୍ତି ଉପାସକତା ପ୍ରମାଣ କରାଇଥିଲେ ମଧ୍ୟ ତାଙ୍କ ଗ୍ରନ୍ଥରେ 'ପଞ୍ଚଦେବତା'ଙ୍କ ଉପାସନା ଦେଖିବାକୁ ମିଳେ । ହିନ୍ଦୁମାନଙ୍କ ସମସ୍ତ ଆରାଧ୍ୟଦେବତାଙ୍କ ସ୍ତୁତିଗାନ ସେ ପ୍ରସଙ୍ଗକ୍ରମେ କରିଛନ୍ତି । ଏପରିକି ବୌଦ୍ଧ ଓ ଜୈନ ଧର୍ମର ରୂପ ମଧ୍ୟ ତାଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ । ଜଗନ୍ନାଥଙ୍କୁ ସେ ଏକ ନିର୍ଦ୍ଦିଷ୍ଟ ଦେବତାଭାବେ ଗ୍ରହଣ ନ କରି ସର୍ବଦେବମୟ ବିଗ୍ରହ ଭାବେ ଗ୍ରହଣ କରିଅଛନ୍ତି । ସବୁ ଧର୍ମ ପ୍ରତି ଉଦାରତା ପ୍ରଦର୍ଶନ କରି ସେ ଓଡ଼ିଆ ସଂସ୍କୃତିକୁ ଆଦର୍ଶ ସ୍ଥାନୀୟ କରି ପାରିଛନ୍ତି ।

## ଲୋକ ବିଶ୍ୱାସ ଓ ସାମାଜିକ ରୀତିନୀତି :

ସାରଳା ମହାଭାରତରେ ତତ୍କାଳୀନ ସମାଜରେ ପ୍ରଚଳିତ ଲୋକବିଶ୍ୱାସ ଓ ସାମାଜିକ ରୀତିନୀତିର ଅନେକ ଚିତ୍ର ଦେଖିବାକୁ ମିଳେ । ଏଗୁଡ଼ିକର ଉତ୍ପତ୍ତି କେଉଁ ସମୟରୁ ବା କେଉଁ ସଭ୍ୟତାରୁ, ତାହା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ବର୍ତ୍ତମାନର ସମାଜରେ ଏଗୁଡ଼ିକ ମଧ୍ୟରୁ କେତେକ ଅବିକଳ ଭାବେ ଏବଂ କେତେକ ମାର୍ଜିତ ରୂପରେ ପ୍ରଚଳିତ ।

ସେ ସମୟରେ ପିତୃଗୃହରେ କନ୍ୟା ରଜୋବତୀ ହେଲେ ପିତୃଲୋକଗଣ ନର୍କଗାମୀ ହେଉଥିବାର ବିଶ୍ୱାସ ଥିଲା । ତେଣୁ ବାଲ୍ୟ ବିବାହର ପ୍ରଚଳନ ଥିଲା । ଅପୁତ୍ରିକ ଲୋକ ଯମଦଣ୍ଡ ଭୋଗ କରିବାର ବିଶ୍ୱାସ ଥିବାରୁ ପୁତ୍ର ପ୍ରାପ୍ତି ନିମନ୍ତେ ଯଜ୍ଞ, ଧର୍ମାନୁଷ୍ଠାନ ଇତ୍ୟାଦି କରାଯାଉଥିଲା । ପୁତ୍ର ଲାଭ ନିମନ୍ତେ ପରପୁରୁଷ ସହିତ ମିଳିତ ହେବାର ବିଧି ମଧ୍ୟ ପ୍ରଚଳନ ଥିଲା । ଦେବ, ବ୍ରାହ୍ମଣ, ସାଧୁ, ପିତା, ମାତା, ଗୁରୁ, ଶାସ୍ତ୍ର, ଲକ୍ଷ୍ମୀ, ମନ୍ତ୍ର, ଔଷଧ, ପୁତ୍ର, ସ୍ତ୍ରୀ ଇତ୍ୟାଦିଙ୍କୁ ନିନ୍ଦା କରିବା ଫଳରେ ବିଭିନ୍ନ

ପ୍ରକାର କଷ୍ଟ ଭୋଗ କରିବାକୁ ହେଉଥିବାର ଲୋକ ବିଶ୍ୱାସ ପ୍ରଚଳିତ ଥିଲା । ପୁନଶ୍ଚ ଜନସାଧାରଣଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଜୀବନ କାଳ ମଧ୍ୟରେ ଯେଉଁ କାମନା ଅପୂର୍ଣ୍ଣ ରହେ, ତାହା ପର ଜୀବନରେ ପୂର୍ଣ୍ଣ ହେବା ନିମନ୍ତେ ଗଙ୍ଗା ଯମୁନାର ସଙ୍ଗମ ସ୍ଥଳରେ ଆତ୍ମ ବିସର୍ଜନ କରିବାକୁ ପଡ଼େ । ଅମ୍ବା ଓ ଅମ୍ବାଳିକା ପ୍ରଭୃତିଙ୍କ ଜୀବନରେ ଏହାର ପ୍ରତିଫଳନ ଦେଖିବାକୁ ମିଳେ । ରଜସ୍ୱଳା ସ୍ତ୍ରୀକୁ ସ୍ପର୍ଶ କରିବା ସାମାଜିକ ବିଧିର ବିରୁଦ୍ଧ ଥିଲା । ଋତୁମତୀ ନାରୀ ପାକସ୍ପର୍ଶ କରୁ ନ ଥିଲା । ଦେବଦେବୀ ମନ୍ଦିରକୁ ଯାଉ ନ ଥିଲା ଏବଂ କୌଣସି ଶୁଭକାର୍ଯ୍ୟରେ ଭାଗ ନେଉ ନ ଥିଲା । କାରଣ ଲୋକ ବିଶ୍ୱାସ ଥିଲା ଯେ ରଜୋବତୀ ନାରୀର ସ୍ପର୍ଶ ଫଳରେ ବୃକ୍ଷ ଲତାଦି ଝାଉଁଳି ପଡ଼େ । ଶାହାଡ଼ା ଗଛର ପତ୍ର କାନରେ ଖୋସିଲେ ସୁମିଷ୍ଟ ଖାଦ୍ୟ ମିଳିବାର ବିଶ୍ୱାସ କରାଯାଉଥିଲା । ମୁନି ଋଷିମାନଙ୍କ ଅଭିଶାପ କେବେହେଲେ ଅନ୍ୟଥା ହୁଏନି—ଏହା ଏକ ସାମାଜିକ ବିଶ୍ୱାସ ଥିଲା । ତେଣୁ ମାଦ୍ରୀଙ୍କ ସହିତ ପାଣ୍ଡୁ ମିଳିତ ହେବା ସମୟରେ ଅଗ୍ନିକା ମହର୍ଷିଙ୍କ ଅଭିଶାପ ହେତୁ ତାଙ୍କର ମୃତ୍ୟୁ ଘଟିବାର ସାରଳା ଦାସ ବର୍ଣ୍ଣନ କରିଅଛନ୍ତି ।

ସମାଜରେ ସେତେବେଳେ ଅନେକ ଉଗ୍ରସ୍ୱଭାବର ସ୍ତ୍ରୀଲୋକ ଥିଲେ, ଯେଉଁ-ମାନେ ସ୍ୱାମୀଙ୍କୁ କ୍ରୀତଦାସ ଭଳି ବ୍ୟବହାର କରୁଥିଲେ । ଗଙ୍ଗାଙ୍କ ଚରିତ୍ର ମାଧ୍ୟମରେ ଏହା ସ୍ପଷ୍ଟ ହୋଇଉଠିଛି । ପୁନଶ୍ଚ ସ୍ତ୍ରୀମାନେ ସ୍ୱାମୀଙ୍କ ଭୋଜନ ପୂର୍ବରୁ ନିଜେ ଭୋଜନ କରିବାକୁ ପାପ ବୋଲି ଭାବୁଥିଲେ । ବିବାହାଦି ମାଙ୍ଗଳିକ କାର୍ଯ୍ୟରେ ଜ୍ୟେଷ୍ଠ ଜ୍ୱାଇଁଙ୍କୁ ସମ୍ମାନ ଦିଆଯାଉଥିଲା । ଶ୍ୱଶୁର ଘରକୁ ଜ୍ୱାଇଁ ଆସିଲେ ଅଢ଼େଇ ଦିନରୁ ଅଧିକ ନ ରହିବା ଏକ ବିଧି ଥିଲା । ଶ୍ୱଶୁର ଅନ୍ନରେ ପ୍ରତିପାଳିତ ଜନ କାପୁରୁଷରେ ପରିଗଣିତ ହେଉଥିଲା । ଏଣୁ ଶିବ ପାର୍ବତୀଙ୍କ ବିବାହ ପ୍ରସଙ୍ଗରେ କବି କହିଛନ୍ତି—

"ଆରେ ଶ୍ୱଶୁର ଘରକୁ ଯେବେ ଆସଇ ଜୁଆଇଂ
ଅଢ଼ାଇ ଦିନରୁ ବହୁତ ଦିନ ରହି ନ ଯୋଗାଇ ।
ଶ୍ୱଶୁର ଅନ୍ନ ଖାଇ ବ୍ରତନ୍ତି ଯେଉଂଣ ଯେ ଜନ
ବଳବୀର୍ଯ୍ୟ ଆଉଂ ଯେ ଯେ ହୋଅନ୍ତି କୁଜନ ।"

( ବନପର୍ବ—ପୃ· ୯୦ )

ଏସବୁ ଆଜିକାଲି କୁସଂସ୍କାର ରୂପେ ପରିଗଣିତ ହେଉଅଛି । ସମାଜରେ ବୈଦିକ କର୍ମକାଣ୍ଡ ଅନୁଯାୟୀ ଜନ୍ମୋତ୍ସବ, ନାମକରଣ, ବିବାହୋତ୍ସବ, ଯଜ୍ଞ ଦାନାଦି କାର୍ଯ୍ୟ ହେଉଥିଲା । ଉଲୂକ ବିଦ୍ୟା, ଭୂତଚିକିତ୍ସା, ତାନ୍ତ୍ରିକ ଉପାସନାମାନ ସମାଜରେ ପ୍ରଚଳିତ ଥିଲା । ବିଷ ଝାରଣ, ଝାଡ଼ିବା ଗୀତ ଆଦି ଗାରୁଡ଼ ବିଦ୍ୟା ଏବଂ ପରକାୟା ପ୍ରବେଶ ଆଦି ବିଦ୍ୟା ସମାଜର କେତେକଙ୍କୁ ଜଣାଥିଲା ।

## ପର୍ବ ପର୍ବାଣୀ :

ସାରଳା ମହାଭାରତରେ ବିଭିନ୍ନ ପର୍ବପର୍ବାଣୀ ଓ ବ୍ରତ କଥାର ଉଲ୍ଲେଖ ରହିଛି । ଓଡ଼ିଆ ସମାଜରେ ତୁଳସୀ ପୂଜା, ଶିଶୁ ଜନ୍ମର ଷଷ୍ଠ ଦିବସରେ ଷଠିଦ୍ୱଶୀ ପୂଜା, ଶିବଙ୍କର କନକ ପୂଜା, କାମାକ୍ଷୀ ବ୍ରତ ଆଦିର ବର୍ଣ୍ଣନା ସାରଳା ମହାଭାରତରେ ପରିଦୃଷ୍ଟ ହୁଏ । କାର୍ତ୍ତିକ ମାସ ପୂର୍ଣ୍ଣିମୀ ଉପଲକ୍ଷେ ଡ଼ଙ୍ଗା ଭସାଇବା ବେଳେ 'ଆକା ମା ବୈ ପାନ ଗୁଆ ଖାଇ' ବୋଲି ଆମେ ବର୍ତ୍ତମାନ ଯେପରି ଗାଉଛୁ, ସାରଳା କାଳୀନ ସମାଜରେ ମଧ୍ୟ ସେପରି ପ୍ରଚଳିତ ଥିଲା । ଆଦି ପର୍ବରେ ଅଛି —

"କାର୍ତ୍ତିକ ମାସ ଶୁକ୍ଳପକ୍ଷ ବୁଧବାର ଯେ ପୂର୍ଣ୍ଣିମୀ
ଆକାମାବଇ ସ୍ନାହାନ ଦିନ ଗଙ୍ଗାକୁ ଗଲେ କୁନ୍ତିଭୋଜ ସ୍ୱାମୀ ।"

( ପୃ: ୧୩୧ )

ହରିବଂଶ ପର୍ବରେ ଓଡ଼ିଶାର ଅନ୍ୟ ଏକ ପ୍ରଧାନ ପର୍ବ କୁମାରୋତ୍ସବର ଉଲ୍ଲେଖ ଥିବାରୁ ସେ ସମୟରେ ସମାଜରେ କୁମାରୋତ୍ସବ ପାଳିତ ହେଉଥିବା ଏବଂ ସପ୍ରତି ପାଳିତ ଏହି ଉତ୍ସବ ସ୍ମରଣାତୀତ ଯୁଗରୁ ଚଳି ଆସୁଥିବାର ମନେହୁଏ ।

## ଯୌନ-ଜୀବନ ଯାପନ :

ସାମାଜିକ ଜୀବନରେ ଯୌନ ବ୍ୟବହାରରେ ସଂଯମ ଓ ଏକନିଷ୍ଠତା ପ୍ରତି ପ୍ରାଧାନ୍ୟ ଦିଆଯାଉଥିଲା । ସ୍ୱକୀୟା ପ୍ରେମରେ ମଧ୍ୟ ସଂଯମତା ଆଚରଣ କରିବା ସେ ସମୟର ସାମାଜିକ ନିୟମ ଥିଲା । ପରକୀୟା ପ୍ରେମକୁ ଅପରାଧ ଭାବେ ଗ୍ରହଣ କରାଯାଉଥିଲା ଏବଂ ଏହାର ପରିଣାମ ଅତ୍ୟନ୍ତ ଭୟାବହ ବୋଲି ବିବେଚିତ ହେଉଥିଲା । ସହଜ ସୁନ୍ଦରୀ ଏବଂ ଅନ୍ୟାନ୍ୟ ଗୋପୀଙ୍କ ସହିତ ରତିକ୍ରୀଡ଼ାରେ ରତ ରହିଥିବାରୁ ଶ୍ରୀକୃଷ୍ଣଙ୍କ ଶରୀରରେ କଳଙ୍କ ଲାଗିଥିଲା ଏବଂ ସେ ଏ ପାପରୁ ମୁକ୍ତି ପାଇ ନ ଥିଲେ । ଫଳତଃ ମୃତ୍ୟୁପରେ ତାଙ୍କ ପିଣ୍ଡ ସମ୍ପୂର୍ଣ୍ଣ ଦଗ୍ଧିଭୂତ ନ ହୋଇ ଅର୍ଦ୍ଧଦଗ୍ଧ ଅବସ୍ଥାରେ ରହିଥିଲା ବୋଲି କବି କହିଛନ୍ତି । ଆଲୋଚ୍ୟ ଗ୍ରନ୍ଥରେ ଦିନଚର୍ଯ୍ୟାର ବିସ୍ତୃତ ବର୍ଣ୍ଣନାରୁ ଜଣାଯାଏ ଯେ ଶାସ୍ତ୍ରାନୁମୋଦିତ ରୀତିରେ ସାମାଜିକ ମଣିଷ ଯୌନଜୀବନ ଅତିବାହିତ କରୁଥିଲା ।

## କିମ୍ବଦନ୍ତୀ, ଉପାଖ୍ୟାନ, ପ୍ରବଚନ ଓ ନୀତିକଥା :

ସାରଳା ମହାଭାରତରେ ସେ ସମୟରେ ପ୍ରଚଳିତ ବହୁ ଲୋକକଥା, କିମ୍ବଦନ୍ତୀ, ଉପାଖ୍ୟାନ, ପ୍ରବଚନ ଇତ୍ୟାଦି ସ୍ଥାନ ପାଇଅଛି । ଏଥି ନିମନ୍ତେ କେତେକ ସମାଲୋଚକ ସାରଳା ମହାଭାରତକୁ ପ୍ରବାଦ, ପ୍ରବଚନ ଓ ନୀତିବାକ୍ୟର ଖଣି ବୋଲି ଅଭିହିତ କରନ୍ତି । ଏଥିରେ ଥିବା ପ୍ରବଚନଗୁଡ଼ିକର ବହୁଳ ପ୍ରଚାର ତତ୍କାଳୀନ

ସମାଜରେ ଥିଲା, ସାମ୍ପ୍ରତିକ ସମାଜରେ ମଧ୍ୟ ଅଛି । ବର୍ତ୍ତମାନ ସାମାନ୍ୟ ଘଟଣା ବିରାଟ ଆକାର ଧାରଣ କରିବା ଦେଖିଲେ ଯେ କୌଣସି ଓଡ଼ିଆ ପାଟିରୁ ବାହାରି-ପଡ଼େ—'ଛିମିଟି ଖେଳରୁ ମହାଭାରତ' ବା କୌଣସି କ୍ଷେତ୍ରରେ ଲାଭ କ୍ଷତିର ପରିମାଣ ସମାନ ହେଲେ, ଓଡ଼ିଆମୁଖ ଚଟ୍‌କିନି କହିଦିଏ—'କର୍ଣ୍ଣ ମଲେ ପାଞ୍ଚ, ଅର୍ଜ୍ଜୁନ ମଲେ ପାଞ୍ଚ' ଇତ୍ୟାଦି । ଏଥିରେ ଥିବା ନୀତିକଥାଗୁଡ଼ିକ ମଧ୍ୟ ଚରିତ୍ର ଗଠନ କରିବାରେ ସେକାଳରୁ ସାହାଯ୍ୟ କରିଆସୁଅଛି । ଏଥିରେ ଥିବା କିମ୍ବଦନ୍ତୀ, ଉପାଖ୍ୟାନ ଆଦି ଆଜି ମଧ୍ୟ ଓଡ଼ିଶାରେ ବହୁଳ ଭାବେ ପ୍ରଚଳିତ ହେଉଅଛି, ଯହିଁରୁ ସାଧାରଣ ଜନତା ରସ ଗ୍ରହଣ କରି ଆନନ୍ଦିତ ହେଉଅଛି । ଏକ ଉତ୍ତମ ସମାଜ ଗଠନ କରିବାର ବା ଉତ୍ତମ ନାଗରିକ ଗଠନ କରିବାର ସମସ୍ତ ଉପାଦାନ ଏଥିରେ ଦେଖିବାକୁ ମିଳେ । କେବଳ ସେତିକି ନୁହେଁ ଏହା ଏକ ପବିତ୍ର ଗ୍ରନ୍ଥଭାବେ ଆଦୃତ । ମହାଭାରତ ପାରାୟଣ କରିବା ଦ୍ଵାରା ଅପୁତ୍ରିଙ୍କର ପୁତ୍ରଲାଭ ହେବାର ବିଶ୍ୱାସ ଏବେ ମଧ୍ୟ ଆମ ସମାଜରେ ପ୍ରଚଳିତ ।

## ଜଳକ୍ରୀଡ଼ା ଓ ନୌବାଣିଜ୍ୟ :

ସମ୍ଭ୍ରାନ୍ତ ବ୍ୟକ୍ତିମାନେ ନୌବିହାର କରୁଥିଲେ । ବଡ଼ ବଡ଼ ନୌକାରେ ପଣ୍ୟଦ୍ରବ୍ୟ ସହ ନୌବାଣିଜ୍ୟର ପ୍ରଚଳନ ଥିଲା । ବିରାଟ ପର୍ବରେ ବସନ୍ତ ଉତ୍ସବ ପାଳନରେ ଜଳକ୍ରୀଡ଼ାର ବର୍ଣ୍ଣନା ରହିଛି । ମଧ୍ୟ ପର୍ବରେ ରେବତୀ, ସୁଭଦ୍ରା ଓ ଅନ୍ୟାନ୍ୟ କନ୍ୟାମାନେ ନଦୀ ମଧ୍ୟରେ କରିଥିବା ଜଳକେଳିର ସୁନ୍ଦର ବର୍ଣ୍ଣନା କବି ପ୍ରଦାନ କରିଛନ୍ତି । ପୁନଶ୍ଚ ସେହି ମଧ୍ୟପର୍ବରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନେଇ ଜଳକ୍ରିଡ଼ା କରୁଥିବାର ବର୍ଣ୍ଣନା ଦେଖିବାକୁ ମିଳେ ।

## ବିବାହ ବିଧି :

ଯେ କୌଣସି ସମାଜରେ ବିବାହ ଏକ ବିଶିଷ୍ଟ ଉତ୍ସବ । ସାରଳା ମହା-ଭାରତରେ ବିଭିନ୍ନ ବିବାହ ଉତ୍ସବର ବର୍ଣ୍ଣନା ମିଳେ, ଯହିଁରେ ଓଡ଼ିଆ ସାମାଜିକତା ନିଖୁଣ ଭାବରେ ପ୍ରତିଫଳିତ । ଜଣେ ବ୍ୟକ୍ତିର ଯଦି ଲଗ୍‌ଲଗ୍ ଅନେକ ସ୍ତ୍ରୀ ମୃତ୍ୟୁ ବରଣ କରନ୍ତି ବା ଜଣେ ସ୍ତ୍ରୀକୁ ବିବାହ କରି ଯଦି ଅନେକ ପୁରୁଷ ମୃତ୍ୟୁ ମୁଖରେ ପଡ଼ନ୍ତି, ତେବେ ସେମାନଙ୍କୁ ଶାହାଡ଼ା ବୃକ୍ଷ ସହିତ ବିବାହ ଦିଆଯାଉଥିଲା । କାରଣ ଶାହାଡ଼ା ବୃକ୍ଷର ନାରୀ ଓ ପୁରୁଷ ଅପମୃତ୍ୟୁ ଦୋଷ ଖଣ୍ଡନ କରିବା ଶକ୍ତି ଥିବାର ବିଶ୍ୱାସ କରି-ଯାଉଥିଲା । ଧୃତରାଷ୍ଟ୍ର-ଗାନ୍ଧାରୀଙ୍କ ବିବାହ ପ୍ରସଙ୍ଗରେ ଏହାର ପ୍ରମାଣ ମିଳେ । ଏକାଧିକ ଦାରା ଗ୍ରହଣ କରିବା ଫଳରେ ସପତ୍ନୀମାନଙ୍କ ମଧ୍ୟରେ ପ୍ରତ୍ୟହ କଳହର ସୂତ୍ରପାତ ହୋଇ ଜୀବନ ଦୁର୍ବିସହ ହୋଇପଡ଼ୁଥିଲା ।

ବିବାହ ନିମନ୍ତେ ସାଧାରଣତଃ କନ୍ୟାମାନଙ୍କର ମତାମତ ଲୋଡ଼ା ଯାଉ ନ ଥିଲା । ପିତାମାତା ଓ ଗୁରୁଜନମାନେ ବଂଶମର୍ଯ୍ୟାଦା ଓ ଅନ୍ୟାନ୍ୟ ଗୁଣ ଦେଖି ବର

ସ୍ଥିର କରୁଥିଲେ; କିନ୍ତୁ କେତେକ ରାଜପରିବାରରେ ଏହାର ବ୍ୟତିକ୍ରମ ହେଉଥିଲା । ଅର୍ଥାତ୍ ରାଜକନ୍ୟାମାନେ ସ୍ୱଇଚ୍ଛାରେ ବର ନିର୍ବାଚନ କରୁଥିଲେ । ସ୍ୱୟମ୍ବର ଉତ୍ସବ ଅନୁଷ୍ଠାନ ଏହାର ଉଦାହରଣ । ଭାନୁମତୀଙ୍କ ବିବାହ ପ୍ରସଙ୍ଗ ତାଙ୍କ ପିତାଙ୍କ ଦ୍ୱାରା ଉତ୍‌ଥାପିତ ହେବା ସମୟରେ ଭାନୁମତୀ କହିଲେ ଯେ ତାଙ୍କ ଇଚ୍ଛା ଯେତେବେଳେ ହେବ, ସେତେବେଳେ ସେ ବିବାହ କରିବା ନିମନ୍ତେ ସମ୍ମତି ଜଣାଇବେ । ତାପରେ ସେ ସ୍ଥିର କରିଛନ୍ତି ଯେ ଯାହାର ହସ୍ତରେ ଶଙ୍ଖନିଧି ଥିବ; ତାହାକୁ ସେ ସ୍ୱାମୀ ରୂପେ ବରଣ କରିବେ । ତାଙ୍କ ଇଚ୍ଛାକୁ ମର୍ଯ୍ୟାଦା ଦେଇ ସ୍ୱୟମ୍ବର ସଭାର ଆୟୋଜନ ହୋଇଛି ଏବଂ ଉପସ୍ଥିତ ସମସ୍ତ ରାଜାଙ୍କ ମଧ୍ୟରେ ଦୁର୍ଯ୍ୟୋଧନଙ୍କଠାରେ ଏହି ଚିହ୍ନର ସନ୍ଧାନ ମିଳିବା ଫଳରେ ଭାନୁମତୀ ତାଙ୍କୁ ପତିରୂପେ ବରଣ କରିଛନ୍ତି ।

ବିବାହ ପୂର୍ବରୁ ଜ୍ୟୋତିଷ ଡକାଇ କୋଷ୍ଠି ସାଧିବା ଓ ଶୁଭଲଗ୍ନ ନିର୍ଣ୍ଣୟ କରି ବିବାହ କାର୍ଯ୍ୟ ଆରମ୍ଭ କରିବା ଆଦି ବିଧି ସାରଳା ମହାଭାରତରେ ଅନେକ ବିବାହ ପ୍ରସଙ୍ଗରେ ଦେଖିବାକୁ ମିଳେ । ମଧ୍ୟପର୍ବରେ ସୁରେଖା ବିବାହ ପ୍ରସଙ୍ଗରେ ତତ୍‌କାଳୀନ ସମାଜରେ ପ୍ରଚଳିତ ବିବାହ ପଦ୍ଧତିର ଏକ ନିଖୁଣ ଚିତ୍ର ପ୍ରଦତ୍ତ । କରମଣ୍ଡଳ ନଗରର ନୃପତି କୃତିଶେଖରଙ୍କ କନ୍ୟା ସୁରେଖା ସହିତ ପ୍ରଦ୍ୟୁମ୍ନର ବିବାହ ଅନୁଷ୍ଠିତ ହୋଇଅଛି । ରାଜକନ୍ୟାଙ୍କ ବିବାହ ଉପଲକ୍ଷେ ପ୍ରଜାଗଣ ନିଜ ନିଜ ଗୃହମାନ ବିଭିନ୍ନ ସାଜସଜ୍ଜାରେ ମଣ୍ଡିତ କରିଛନ୍ତି ଓ କାନ୍ଥମାନ ବିଭିନ୍ନ ଝୋଟି, ଚିତାଦିରେ ଚିତ୍ରିତ କରିଛନ୍ତି । ନାରୀମାନେ ଆନନ୍ଦରେ ହୁଳହୁଳି ଦେଇଛନ୍ତି । ଦୀର୍ଘ ଚୁରିକୋଣ ଓ ପ୍ରତି ଚୁରିକୋଣ ବିଶିଷ୍ଟ ଏକ ବିରାଟ ଛାମୁଣ୍ଡିଆ ବନ୍ଧା ଯାଇଛି । ଚନ୍ଦ୍ରୁଆମାନ ସେଥିରେ ବିଲମ୍ବିତ କରାଯାଇଛି । ରାଜା ଉଗ୍ରସେନ, ପାଣ୍ଡବଗଣ, ଶ୍ରୀକୃଷ୍ଣ ଏବଂ ବଳରାମ ଅନେକ ସୈନ୍ୟ-ସାମନ୍ତ ସହ କନ୍ୟା ରାଜ୍ୟରେ ପ୍ରବେଶ କରିଛନ୍ତି । ସେମାନଙ୍କୁ ସୁସ୍ୱାଦୁ ବ୍ୟଞ୍ଜନ ପରିବେଷଣ କରାଯାଇଛି ଏବଂ ସୁବାସିତ ଜଳ ପାନ କଲାପରେ କର୍ପୂର ମିଶ୍ରିତ ବିଡ଼ିଆ ପାନ ପ୍ରଦାନ କରାଯାଇଛି । ତାପରେ ସୈନ୍ୟମାନଙ୍କର ଭୋଜନ କାର୍ଯ୍ୟ ଆରମ୍ଭ ହୋଇଛି । ଋଷିଗଣ ଫଳମୂଳାଦି ଆହାର କରିଛନ୍ତି ।

ଭୋଜନାଦି କାର୍ଯ୍ୟ ସରିବା ପରେ ବିବାହ କାର୍ଯ୍ୟ ଆରମ୍ଭ ହୋଇଛି । ସୁବର୍ଣ୍ଣ କଳସ ଉପରେ ଶ୍ରୀଫଳ ରଖି ସାତଜଣ ସଧବା ନାରୀ ପାଣିତୋଳା ବାହାରିଛନ୍ତି । ଏହି ସମୟରେ ଶଙ୍ଖ, ମହୁରୀ ଓ ମଙ୍ଗଳ ହୁଳହୁଳିରେ ଆକାଶ ନିନାଦିତ ହୋଇଛି । ସେମାନେ ହଳଦୀ, ତେଲ, କୁଙ୍କୁମ ଓ କସ୍ତୁରୀ ମିଶାଇ ବରକନ୍ୟାଙ୍କ ଶରୀରରେ ବୋଳି-ଛନ୍ତି ଓ ସୁବର୍ଣ୍ଣର ଶିଳପୁଆ ବରକନ୍ୟାଙ୍କ ମୁଣ୍ଡରେ ଲଗାଇ ହୁଳହୁଳି ଦେଇଛନ୍ତି । ଜ୍ୟୋତିଷ ପରାମର୍ଶକ୍ରମେ ଶୁଭବେଳା ସ୍ଥିର କରାଯାଇଛି । ବରପକ୍ଷରୁ ବସୁଦେବ ପୂର୍ବମୁଖ ହୋଇ ଏବଂ କନ୍ୟାପିତା ପଶ୍ଚିମ ମୁଖ ହୋଇ ବେଦୀରେ ବସିଛନ୍ତି । ପ୍ରଦ୍ୟୁମ୍ନ

ବରବେଶ ହୋଇ ବସୁଦେବଙ୍କ କୋଳରେ ବସିଛୁ । ବରୁଣ ପୂଜାବେଦ ପାଠ କରି-ଛନ୍ତି । ସଧବା ନାରୀମାନେ ମଙ୍ଗଳ ହୁଳହୁଳି ଦେଉଛନ୍ତି । ସୁରେଖା ହାତରେ ଲବଣ ଚଉଁରୀ ପାଇଁ ଗୁଜୁରା ସୋରଷ ମିଶାଇ ଦିଆଯାଇଛି ଏବଂ ସେ ତାହା ବର ଉପରକୁ ପକାଇଛି । ବରର ପାଦ କନ୍ୟାର ଭାଇ ନୀଳଶେଖର ଧୋଇ ଦେଇଛି । ତାପରେ ଆରମ୍ଭ ହୋଇଛି ହସ୍ତଗଣ୍ଠି କାର୍ଯ୍ୟ । ନୂଆ ମସିଣା ଉପରେ ପ୍ରଦ୍ୟୁମ୍ନ ବସିଛି । ନୃତ-ଶେଖର ନୃପତିଙ୍କ କୋଳରେ ସୁରେଖା ବସିଛି । ଦୁଇଜଣଙ୍କ ହାତଗଣ୍ଠି ପଡ଼ିଛି । କନ୍ୟାପିତାଙ୍କ ନୟନ ଲୋତକାପ୍ଲୁତ ହୋଇଉଠିଛି । ଶଙ୍ଖରେ ଜଳଟେକ ସେ ଯୌତୁକ ଘୋଷଣା କରିଛନ୍ତି । ଯୌତୁକ ସ୍ୱରୂପ ଦୁଇସହସ୍ର ଅଶ୍ୱ, ଏକ ସହସ୍ର ହସ୍ତୀ, ଦୁଇଲକ୍ଷ ଧେନୁ, ସୁବର୍ଣ୍ଣର ବାସନ କୁସନ ଓ ଅନେକ ଦାସୀ ପ୍ରଦାନ କରି କନ୍ୟା-ପିତା କହୁଛନ୍ତି—

"ଝିଅ ଗୋଟି ଦେଇ ମୁଁ ଯେ ଶରଣ ପଶିଲି
ସପତ ପୁରୁଷମାନନ୍ତ ମୁଁ ନରକୁଁ ଉଦ୍ଧାରିଲି ।"

( ମଧ୍ୟପର୍ବ—ପୃ-୭୬୧ )

ପରବର୍ତ୍ତୀ କାର୍ଯ୍ୟସ୍ୱରୂପ ସଧବା ନାରୀମାନଙ୍କ ଗହଣରେ ବରକନ୍ୟା ଗୋଟିଏ ଆସନରେ ବସି କଉଡ଼ି ଖେଳିଛନ୍ତି । ସୁବର୍ଣ୍ଣର ଦୀପାବଳୀରେ ସେମାନେ ବର-କନ୍ୟାଙ୍କୁ ବନ୍ଦାଇଛନ୍ତି । ସୁବର୍ଣ୍ଣପଲମରେ ବରକନ୍ୟା ଏକାଠି ଭୋଜନ କରିଛନ୍ତି ।

ଏ ପ୍ରକାର ବିବାହ ରୀତି ସମ୍ପୂର୍ଣ୍ଣ ଉତ୍କଳୀୟ ଏବଂ ସାମ୍ପ୍ରତିକ ସମାଜରେ ସାମାନ୍ୟ ପରିବର୍ତ୍ତନ ସହ ପ୍ରଚଳିତ ।

ସମକାଳୀନ ସମାଜରେ ବାଲ୍ୟବିବାହର ପ୍ରଚଳନ ଥିବାର ପ୍ରମାଣ ସାରଳାଙ୍କ ଗ୍ରନ୍ଥରୁ ଜଣାଯାଏ । କନ୍ୟାକୁ ସାତ ବର୍ଷ ବୟସରେ ବିବାହ ନ ଦେଲେ ସପ୍ତପୁରୁଷ ପାପରେ ଭାଗୀ ହେବାର ବିଶ୍ୱାସ ଜନସାଧାରଣଙ୍କର ଥିଲି ଏବଂ ନବ ବର୍ଷର କୁମାରୀ ଯୁବତୀ ବୋଲି ପରିଗଣିତା ହେଉଥିଲି । ଏଣୁ ସାତବର୍ଷରୁ ବା ତହିଁରୁ କମ୍ କନ୍ୟାଙ୍କୁ ବିବାହ ଦିଆଯାଉଥିଲି । କିନ୍ତୁ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କୌଣସି ପ୍ରକାର ଦୈହିକ ସମ୍ପର୍କ ସ୍ଥାପିତ ହେଉ ନ ଥିଲି—ଯେ ପର୍ଯ୍ୟନ୍ତ, ସ୍ୱାମୀ ଅଠର ବର୍ଷ ଓ ସ୍ତ୍ରୀ ପନ୍ଦର ବର୍ଷ ବୟସରେ ପଦାର୍ପଣ କରୁ ନ ଥିଲେ ।

## ଶକୁନ ଶାସ୍ତ୍ର

ଯାତ୍ରାକାଳରେ ଶୁଭାଶୁଭ ଗଣନା କରିବା ଏକ ପାରମ୍ପରିକ ଓଡ଼ିଆ ରୀତି । ଶକୁନ ଶାସ୍ତ୍ର ମଧ୍ୟ ଭାରତୀୟ ପରମ୍ପରା-ସମ୍ମତ । ଶୁଭ ଶକୁନ କାର୍ଯ୍ୟରେ ସିଦ୍ଧିଲାଭ ଏବଂ ଅଶୁଭ ଶକୁନ ଦର୍ଶନ କାର୍ଯ୍ୟରେ ବିଫଳ ହେବାର ସୂଚନା ଦିଏ । ସାରଳା

ମହାଭାରତର ଅନେକ ସ୍ଥଳରେ ଶକୁନ ଶାସ୍ତ୍ର ସମ୍ବନ୍ଧୀୟ ବର୍ଣ୍ଣନା ଅଛି । ଯାହା ପୂର୍ବରୁ ଦଧିମାଛ, ପୂର୍ଣ୍ଣକୁମ୍ଭ, ଶଙ୍ଖଚିଲ, ଭଦଭଦ୍ଳିଆ ଆଦି ଦର୍ଶନ କରିବା ଶୁଭ ଶକୁନର ସଙ୍କେତ ଏବଂ ସର୍ପ, ଯୋଗୀ ଓ ଲଙ୍ଗୁଳଯୁକ୍ତ ପ୍ରାଣୀ ଦର୍ଶନ କରିବା ଅଶୁଭ ଶକୁନ ସଙ୍କେତ ପ୍ରଦାନ କରେ । ଉଦାହରଣ ସ୍ୱରୂପ ମହାଭାରତ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ପାଣ୍ଡବମାନଙ୍କ ପକ୍ଷରେ ଶୁଭ ଶକୁନ ଦେଖା ଯାଇଥିଲା ଏବଂ ପାଣ୍ଡବମାନଙ୍କ ହୃଦୟ ବିଜୟ ଆଶାରେ ପୂର୍ଣ୍ଣ ହୋଇଯାଇଥିଲା । ମହାଭାରତରେ ଶକୁନ ଶାସ୍ତ୍ର ସମ୍ବନ୍ଧୀୟ କେତୋଟି ଉଦ୍ଧୃତ ପ୍ରଦାନ କରାଯାଇପାରେ ।

ଶୁଭ ଶକୁନ—

"ଦଧିବାବନ ସୁମରଣ ଶୁଭ ଅନୁକୂଳେ
ଉଠିଲେ କଉରେବ ବଳ ଶୁଭ ଯେ ମଙ୍ଗଳେ ।"

( ଭୀଷ୍ମପର୍ବ—ପୃ-୫୫ )

"ଭୂମିରେ ଘର କରଇ ଭରଢଆ ପକ୍ଷୀ
ସେ ଭରଢଆ ଅନୁକୂଳ ଲକ୍ଷିଲେ ଶ୍ରୀବତ୍ସି ।"

(ଉଦ୍‌ଯୋଗ ପର୍ବ  ପୃ-୧୭୨)

ଅଶୁଭ ଶକୁନ—

"ବିଶେଷେ ସର୍ପ ଆବର ଅଟଇ ଲଙ୍ଗୁଳ
ଯାହା ଯୋଗେ ଦେଖିଲେ ଛୁଇଁଲେ ଅମଙ୍ଗଳ ।"

( ମଧ୍ୟପର୍ବ )

"ଯାହାଯୋଗେ ପଥେ ଦେଖିଲେ କାଳିସର୍ପ
ଦେଖିଲେ ଅଯାହା ଛୁଇଁଲେ ଅମଙ୍ଗଳ ।"

( କର୍ଣ୍ଣପର୍ବ )

## ଅତିଥି ସତ୍କାର :

ଆଲୋଚିତ ଗ୍ରନ୍ଥରେ କେତେକ ସ୍ଥଳରେ ଅତିଥି ସତ୍କାରର ବର୍ଣ୍ଣନା ଫୁଟି ଉଠିଛି । ଏହା ଆଲୋଚିତ ହେବା ଫଳରେ ଉତ୍କଳୀୟ ଜନତାର ଅତିଥିପରାୟଣତାର ସ୍ପଷ୍ଟ ଚିତ୍ର ମିଳିଥାଏ । ରାଜସୂୟ ଯଜ୍ଞ ଅନୁଷ୍ଠିତ ହେବା ପୂର୍ବରୁ ଶ୍ରୀକୃଷ୍ଣ ପାଣ୍ଡବଙ୍କ ଗୃହରେ ଉପସ୍ଥିତ ହୋଇଛନ୍ତି କୁନ୍ତୀଙ୍କୁ ଦର୍ଶନ କରିବା ନିମନ୍ତେ । କୁନ୍ତୀ ଆଦରରେ ତାଙ୍କୁ ପାଛୋଟି ନେଇଛନ୍ତି ଏବଂ ତାଙ୍କ ଆଗମନର ବାର୍ତ୍ତା ବଧୂ ଦ୍ରୌପଦୀଙ୍କୁ ଜଣାଇ

ଦେଉଛନ୍ତି । ଦ୍ରୌପଦୀ ଷଡ଼ରସରେ ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରିଛନ୍ତି । ନିଜେ କୁନ୍ତୀ ଶ୍ରୀକୃଷ୍ଣଙ୍କୁ ଖାଦ୍ୟ ପରିବେଷଣ କରିଛନ୍ତି । ଭୋଜନ ପରେ ଶ୍ରୀକୃଷ୍ଣଙ୍କୁ ସୁବାସିତ ବଡ଼ିଆ ପାନ ଦିଆଯାଇଛି । ଏପରି ବ୍ୟବସ୍ଥାର ଦୃଷ୍ଟାନ୍ତ ମଧ୍ୟ ସାମ୍ପ୍ରତିକ ଓଡ଼ିଆ ପରିବାରରେ ବିରଳ ନୁହେଁ ।

## ଖାଦ୍ୟ ଓ ପାକପ୍ରଣାଳୀ :

ଓଡ଼ିଆ ପାକ ପ୍ରଣାଳୀରେ ସାରଳାଙ୍କ ଗ୍ରନ୍ଥ ପୂର୍ଣ୍ଣ । ପୋଡ଼ପିଠା, ଚିତଉପିଠା, ଗଣ୍ଡାମାଂସ ତରକାରି ଆଦିର ପ୍ରସ୍ତୁତି ପ୍ରଣାଳୀ ପାଠକଲେ ଓଡ଼ିଶାର ରନ୍ଧନ ପ୍ରଣାଳୀ ଦ୍ୱାରା କବି ବହୁ ଭାବରେ ପ୍ରଭାବିତ ହୋଇଥିଲେ ଭଳି ମନେହୁଏ । ଦ୍ରବ୍ୟ ଅରୁଆ ଅନ୍ନ; ବ୍ୟାସଘୃତ, ଖିରି; ଖିରସା; ପଞ୍ଚବର୍ଣ୍ଣୀ ପିଠା, ଏଣ୍ଡୁରି ପିଠା, ଧୂଆ ପଖାଳ ଆଦିର ପ୍ରଚଳନ ସେତେବେଳେ ମଧ୍ୟ ଓଡ଼ିଆ ସମାଜରେ ଥିଲା । ଏତଦ୍‌ବ୍ୟତୀତ ଆମିଷ ଖାଦ୍ୟ ମଧ୍ୟରେ ବଳି ସାହାଯ୍ୟରେ ମଇଁଷି, ଛେଳି ଓ ମେଣ୍ଢା ମାଂସ ସହିତ ମଦିରାପାନ ମଧ୍ୟ ପ୍ରଚଳିତ ଥିଲା । ରାଜା ଓ ଶବରମାନଙ୍କ ମୃଗୟା ବର୍ଣ୍ଣନାରେ ଗଣ୍ଡା, ମୃଗ, ବାରହା, ବାହୁଟିଆ, ଗୟଲ ପ୍ରଭୃତି ଶିକାର କରି ସେମାନଙ୍କ ମାଂସ ଭକ୍ଷଣ କରିବାର ବର୍ଣ୍ଣନା ଦେଖିବାକୁ ମିଳେ । ପାର୍ବତୀ ଶିବଙ୍କ ପାଇଁ ଯେଉଁ ଯେଉଁ ଖାଦ୍ୟ ପ୍ରସ୍ତୁତ କରିଥିଲେ, ତାହାର ଏକ ତାଲିକା କବି ମଧ୍ୟପର୍ବରେ ପ୍ରଦାନ କରିଛନ୍ତି ।

"ରନ୍ଧନ କଲେ ଯାଇଂ ବେଗେ ଶାଳି ଅନ୍ନ
ହେଙ୍ଗୁ ଜୀରା ମେଥି ପକାଇଣ ମୁଗ ଯେ ତଉଣ ।
କନ୍ଦ ଲୁଚି ପୁରି ବଡ଼ା ଝିଲି ମେ ପିଠାଇ
ଆରିସା ଲଡ଼ୁ କରେଞ୍ଜି ସିଙ୍ଗଡ଼ା ଯେ ଖଇ ।
ଶୁଆଂ ଏଣ୍ଡୁରି ଗଇଂଠା ଯେଉଁ ଫୁଲ
ଚିନି ପକାଇଣ ପଣାକଲେ ସମତୁଲ ।
ଚକୁଳି କୁଞ୍ଚି ପତର ଛେନା ମନୋହର
ଖିରି ଖିରସା ଶାକର ସକଳ ଦ୍ରବ୍ୟ ସାର ।"

(ପୃ : ୧୧୭୫ )

ବିରାଟ ପର୍ବରେ ଗଉରୀ, ସଉରୀ, ଓ ନଳ ରନ୍ଧଣା ବିଧି ସମ୍ବନ୍ଧରେ ବିସ୍ତୃତ ବିବରଣୀ ଦେଖିବାକୁ ମିଳେ । ଏହି ପାକପ୍ରଣାଳୀ ଦ୍ୱାରା ଭୀମ କିପରି ଅକଟା ପରିବା ଓ ଅବଟା ମସଲା ସାହାଯ୍ୟରେ ଖୁବ୍ ଅଳ୍ପ ସମୟ ମଧ୍ୟରେ ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରି ହଜାର ହଜାର ଲୋକଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିପାରୁଥିଲେ, ତା'ର ବର୍ଣ୍ଣନା କବି ପ୍ରଦାନ କରିଛନ୍ତି । ସେହିପରି ସଭାପର୍ବରେ ରାଜସୂୟ ଯଜ୍ଞ ଅନୁଷ୍ଠିତ ହେଉଥିବା

କାଳରେ ନିମନ୍ତ୍ରିତ ସହସ୍ର ସହସ୍ର ରାଜନ୍ୟବର୍ଗଙ୍କୁ ଭୀମ ଏହି ଗଉରୀ, ସଉରୀ ଓ ନଳ ପାକପ୍ରଣାଳୀ ଅନୁସାରେ ଖାଦ୍ୟ ପ୍ରସ୍ତୁତ କରି ପରିବେଷଣ କରିଅଛନ୍ତି ।

## ନାରୀ ବେଶଭୂଷା :

ଆଲୋଚ୍ୟ ପୁସ୍ତକରେ ବର୍ଣ୍ଣିତ ନାରୀର ବେଶଭୂଷା ସମ୍ପୂର୍ଣ୍ଣ ଉତ୍କଳୀୟ । ଦ୍ରୌପଦୀଙ୍କ ଅଳଙ୍କାର ବର୍ଣ୍ଣନାରୁ ଦେଖାଯାଏ ଯେ ସେ ସମୟର ଏକ ସମ୍ଭ୍ରାନ୍ତ ଓଡ଼ିଆ ବଧୂ ମଥାରେ ମୁକୁତାର ଜାଲି ଉପରେ ସୀମନ୍ତମଣି, ଲଲାଟରେ ହୀରା ଖଚିତ ଅଳଙ୍କାର, କର୍ଣ୍ଣରେ ତାଡଙ୍କ, ନାସାରେ ବସଣୀ, ବକ୍ଷ ଦେଶରେ ହାର, ହସ୍ତରେ କଙ୍କଣ, ରତ୍ନଚୂଡ଼, ଅଙ୍ଗୁଳିରେ ମୁଦି ଏବଂ ପାଦରେ ନୂପୁର ବ୍ୟବହାର କରୁଥିଲି । ମଧ୍ୟପର୍ବରେ ବାଣାସୁର-ନନ୍ଦିନୀ ଉଷାର ବେଶ ବର୍ଣ୍ଣନା ଏହିପରି ପ୍ରଦତ୍ତ—

"କପାଳେ ସିନ୍ଦୂର ଅରୁଣ ଜ୍ୟୋତି ଜାଣି
ନାସାରେ ଗଜମୁକୁତା ସୁବର୍ଣ୍ଣ ବସାଣି ।

ନୟନେ କଜ୍ଜଳ ଭ୍ରୂଲତା ବେନି ସାଜେ
କର୍ଣ୍ଣେଣ ରତ୍ନ କାପ ଗୁରୁ ଶୁଣ୍ଡ ଗଞ୍ଜେ ।

କଣ୍ଠେ ଶୋଭିବନ ମୁକ୍ତା ସରି ଗ୍ରୂପ
ବାହେ ରତ୍ନ ଚୂଡ଼ ନାନା ମଣି ଧାପ ।

ପୟରେ ନେପୂର ବାଜଇ ରୁଣଝୁଣ
ଅଙ୍ଗୁଷ୍ଠି ମୁଦ୍ରିକା ଦଶେ ସୂର୍ଯ୍ୟ ଜ୍ୟୋତି ସମ !

ଦେବାଙ୍ଗ ବସନ ପନ୍ଧିରଣ ଯେ ବାଳୀ
ନାନା କୁସୁମେ କବରୀ ଅଛଇ ଶାମଳୀ ।"

(ପୃ ୨୫୨)

## କୃଷି ଓ କୃଷକ :

ସାରଳାକାଳୀନ କୃଷିଚିତ୍ର ସାରଳା ମହାଭାରତରେ ସ୍ଥାନ ବିଶେଷରେ ଫୁଟି ଉଠିଅଛି । ଉଦ୍‌ଯୋଗ ପର୍ବରେ 'ବାବନାଭୂତ' ପ୍ରସଙ୍ଗରେ ତତ୍‌କାଳୀନ କୃଷି ସମ୍ବନ୍ଧୀୟ ବିବରଣୀ ଦେଖିବାକୁ ମିଳେ । ଆଦିପର୍ବର ପରିଶିଷ୍ଟରେ ପ୍ରଦତ୍ତ ସାରଳା ଦାସଙ୍କ ନିଜ ସମ୍ବନ୍ଧୀୟ ବିବରଣୀରୁ ଜଣାଯାଏ ଯେ କବି ନିଜେ ସେ ସମୟରେ କାକୁଡ଼ି, ଧାନ, ମାଣ୍ଡିଆ, ଆଖୁ ଇତ୍ୟାଦି ଚାଷ କରୁଥିଲେ । କୃଷିକ୍ଷେତ୍ରକୁ ଢେଣ୍ଡା ସାହାଯ୍ୟରେ ଜଳ ଯୋଗାଇ ଦିଆଯାଉଥିଲି । କବି ଲେଖୁଛନ୍ତି—

"ଗୃଷ ଚର୍ଷିଣ ଆମ୍ଭେ ନାନା କୃଷି କରି
ଧାନର ଗୃଷ କାକୁଡ଼ି ମାଣ୍ଡିଆ ଆଦି କରି ।

× × ×

ପ୍ରାଚୀ ନଦୀର ଯେ ଉତ୍ତର କୂଳରେ
ଆମ୍ଭ ଭୂମି ଖଣ୍ଡିଏ ଯେ କରନ୍ତୁ ସେଠାରେ ।
ଯନ୍ତ୍ର ସଜ ବସାଇ ପାଣି ଟେଣ୍ଡ଼ୁ ତହିଁକି
ଗୃହ ସଜ ଗୋଟି ଯେ ବସାଇଣ ହାକି ।"

(ଆଦିପର୍ବ—ପୃ. ୧୦୪୦—୪୧)

ଆଲୋଚକ ଡଃ ବଂଶୀଧର ମହାନ୍ତି ମତ ଦିଅନ୍ତି—"ମହାଭାରତର ବିଭିନ୍ନ ପର୍ଯ୍ୟାୟରେ କବି କୃଷି ସମ୍ବନ୍ଧୀୟ ଯେଉଁ ଚିତ୍ର ଦେଇଛନ୍ତି, ତାହା ତତ୍‌କାଳୀନ ଓଡ଼ିଶାର ଗ୍ରାମ ସଂସ୍କୃତିର ଯଥେଷ୍ଟ ପରିଚୟ ଦେଇଥାଏ । ସାରଳା ମହାଭାରତର ଯେଉଁ କୃଷି ଚିତ୍ରଣ ଆଜି ମଧ୍ୟ ଓଡ଼ିଶାର ପୁରପଲ୍ଲୀରେ ଜୀବନ୍ତ ରୂପେ ରହିଅଛି—ସେହି ହଳିଆ, ଲଙ୍ଗଳ, ମଇ, ହଳିଆ ପାଇଁ ଭାତ, ସେହି କୃଷି ସହିତ ଜଡ଼ିତ ଭୂତପ୍ରେତ କାହାଣୀ ଓ ଗୋଚର ଭୂଇଁର ସୁରକ୍ଷା ପ୍ରଭୃତି ଆଜି ଓଡ଼ିଶାର ଘରେ ଘରେ ପ୍ରଚଳିତ । ଓଡ଼ିଶା କାଳେ କାଳେ କୃଷିପ୍ରଧାନ ପ୍ରଦେଶ ହୋଇ ଆସିଛି । ଆଜିର ଖାଦ୍ୟର ଉତ୍କଟ ଅଭାବ ଅନାଟନ ବେଳେ ସାରଳା ମହାଭାରତର କୃଷି ଚିତ୍ରଣ ଓ ପ୍ରଜାର ସ୍ୱଚ୍ଛଳ ଆର୍ଥିକ ଅବସ୍ଥା ତତ୍‌କାଳୀନ କୃଷିସମୃଦ୍ଧ ସ୍ୱର୍ଣ୍ଣପ୍ରସୂ ଓଡ଼ିଶାର ଏକ ରୁଚିମନ୍ତ ଆଲେଖ୍ୟ ପ୍ରଦାନ କରିଥାଏ ।"

(ଓଡ଼ିଆ ସାହିତ୍ୟର ଇତିହାସ—୧ମ ଭାଗ—ପୃ. ୪୩୧)

## ଭୂମି ମାପ ଓ ଭୂରାଜସ୍ୱ ବିଧି :

ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାରେ ଭୂମିମାପ ଓ ଭୂରାଜସ୍ୱ ବିଧି ପ୍ରଚଳିତ ଥିବାର ଐତିହାସିକ ଷ୍ଟାର୍ଲିଂ ମତ ଦିଅନ୍ତି । ଏହି ପୁରାତନ ପଦ୍ଧତି ଶହ ଶହ ବର୍ଷ ଧରି ଚଳି ଆସୁଥିଲା; ମାତ୍ର ଗଜପତି କପିଳେନ୍ଦ୍ର ଦେବ ଏହି ପଦ୍ଧତିରେ ପରିବର୍ତ୍ତନ ଆଣିଥିଲେ । କୋଡ଼ିଏ ହାତରେ ଏକ ନଳ ଏବଂ କୋଡ଼ିଏ ମାଣରେ ଏକବାଟିର ପ୍ରଚଳନ ସେ ସମୟରେ ହୋଇଥିଲା ।

ରାଜସ୍ୱ ସମ୍ବନ୍ଧରେ ବିଭିନ୍ନ ପ୍ରକାର ବର୍ଣ୍ଣନା ଦିଆଯାଇଛି । ବନପର୍ବରେ ଋଷୀମାନେ କିଛି କର ଦେଉ ନ ଥିବାର ସୂଚନା ମିଳେ । ପୁନଶ୍ଚ ବିଭିନ୍ନ ରାଜାଙ୍କ ଶାସନରେ ପ୍ରଜାମାନେ ମାଣ ପ୍ରତି ଚଉଁଏ, ବାଟି ପ୍ରତି ମାଢ଼େ, ପଉଟିଏ, ପାଞ୍ଚ ଚନା କମ୍ବା ଗୁରି ପଉଟି ହିସାବରେ ସଞ୍ଜା ଦେଉଥିବାର ଆଲେଖ୍ୟ ଗ୍ରନ୍ଥରେ ଉଲ୍ଲେଖ

ରହିଛି । ରାଜସ୍ୱ ଶସ୍ୟ ବା ସ୍ୱର୍ଣ୍ଣମୁଦ୍ରା ଆକାରରେ ସେତେବେଳେ ଆଦାୟ ହେଉଥିଲା ।

## ଯୁଦ୍ଧ ସରଞ୍ଜାମ :

ସାରଳା ସାହିତ୍ୟରେ ଯେଉଁ ପ୍ରତ୍ୟକ୍ଷ ଯୁଦ୍ଧ, ଯୁଦ୍ଧରେ ବ୍ୟବହୃତ ଅସ୍ତ୍ରଶସ୍ତ୍ର, ସମର କୌଶଳ, ମଲ୍ଲଯୁଦ୍ଧ ଇତ୍ୟାଦିର ବର୍ଣ୍ଣନା ଦେଖିବାକୁ ମିଳେ, ସେଥିରୁ କେହି କେହି ଅନୁମାନ କରନ୍ତି ଯେ ସାରଳା ଦାସ ଯୌବନ କାଳରେ ଜଣେ ସୈନିକ ବା ସେନାଧ୍ୟକ୍ଷ ଥିଲେ । ସେ ସମୟରେ ଯୁଦ୍ଧରେ ବ୍ୟବହୃତ ବହୁ ଅସ୍ତ୍ରଶସ୍ତ୍ର ସାଜସରଞ୍ଜାମର ବିସ୍ତୃତ ବିବରଣୀ ସେ ପ୍ରସଙ୍ଗକ୍ରମେ ପ୍ରଦାନ କରିଅଛନ୍ତି । ଅଜଗବ ପରଶୁ, ଖଡ଼୍ଗ, ହାତବୋଡ଼ା, ଗଦା, ମୁଦ୍‌ଗର, କୁନ୍ତ, ପାଶ, ଶାବେଳୀ, ଛେଲି, କାଢ, ଛେଲ, ମୂଷଳ, ଧାମଣା, କମାଣ, ଖାଲ, ସାବେଳ, କରବାଳ, ଲଙ୍କିଆ, ଗୁରୁଜ, ଇତ୍ୟାଦି ତତ୍‌କାଳୀନ ପ୍ରଚଳିତ ବହୁ ଅସ୍ତ୍ରଶସ୍ତ୍ରର ନାମ ମହାଭାରତ ଓ ଚଣ୍ଡୀପୁରାଣରେ ଦେଖିବାକୁ ମିଳେ ।

ଯୁଦ୍ଧ ନିମନ୍ତେ ବାଦ୍ୟ ଏକାନ୍ତ ପ୍ରୟୋଜନୀୟ । ଯୁଦ୍ଧବାଦ୍ୟର ଶ୍ରବଣରେ ଯେ କୌଣସି ସୈନିକ ହୃଦୟ ବୀର-ରସରେ ପୂର୍ଣ୍ଣ ହୋଇଯାଏ । ସେ ଉନ୍ମତ୍ତ ହୋଇ ଶତ୍ରୁ ବିନାଶ ନିମନ୍ତେ ଯୁଦ୍ଧ ଭୂମିକୁ ଡେଇଁ ପଡ଼େ । ସାରଳା ମହାଭାରତରେ ଅସଂଖ୍ୟ ଯୁଦ୍ଧ ବାଦ୍ୟର ନାମ ରହିଛି । ସେଥି ମଧ୍ୟରେ ଢୋଲ, ମର୍ଦ୍ଦଳ, ପଖାଉଜ, କାହାଳୀ, ଦମା, ଝାଂଝାଳ, ଶଙ୍ଖ, ଭେରୀ, ତୂରୀ, ମହୁରୀ, ଗାଲତୁରୀ, ଦୋହର, ଦାଉଣ୍ଡି ବଜ୍ରଘୋଷ ଦାଉଣ୍ଡି ପ୍ରଭୃତି ପ୍ରଧାନ ।

## ଶିକ୍ଷା ପଦ୍ଧତି :

ତତ୍‌କାଳୀନ ସମାଜରେ ପ୍ରଚଳିତ ଶିକ୍ଷା ସମ୍ବନ୍ଧୀୟ ଅନେକ ବିବରଣୀ ସାରଳା ମହାଭାରତରେ ଦେଖିବାକୁ ମିଳେ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତକ ବେଳକୁ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟର ବିକାଶ ସାଧିତ ହୋଇ ସାରିଥାଏ । ସେ ସମୟରେ ଶାସ୍ତ୍ରବିଦ୍ୟା, ଧନୁର୍ବିଦ୍ୟା, ମଲ୍ଲବିଦ୍ୟା, ତନ୍ତ୍ରବିଦ୍ୟା ଓ ଯୋଗବିଦ୍ୟା ପ୍ରଭୃତି ଶିକ୍ଷା ଦିଆଯାଉଥିଲା । ତାଳପତ୍ର ଓ ଲେଖନ ସାହାଯ୍ୟରେ ଲିଖନ କାର୍ଯ୍ୟ ହେଉଥିଲା । ତାଛଡ଼ା ଭୂମିରେ ଖଡ଼ି ଦ୍ୱାରା ମଧ୍ୟ ଲେଖାଯାଉଥିଲା । ସିଦ୍ଧିରସ୍ତୁ ବା ଶ୍ରୀଫଳା ଲେଖିଲା ପରେ ପିଲାମାନଙ୍କୁ ଅକ୍ଷର, ମାତ୍ରା, ଯୁକ୍ତାକ୍ଷର ଏବଂ ଶ୍ଳୋକ ଶିକ୍ଷା ଦିଆଯାଉଥିଲା । ଏହା ସହିତ ପଣକିଆ, ଯୋଗ, ଓଡ଼ାଙ୍କ, ମିଶାଣ, ଫେଡ଼ାଣ, ଗୁଣନ ହରଣ ଆଦି ଶିକ୍ଷାର ପ୍ରଚଳନ ଥିଲା । ଏଥିରୁ ଜଣାଯାଏ ଯେ ମାନସିକ ଶିକ୍ଷାଦାନ ସଙ୍ଗେ ଶାରୀରିକ ଶିକ୍ଷାଦାନ ମଧ୍ୟ କରାଯାଉଥିଲା । ଫଳରେ ପଞ୍ଚଦଶ ଶତକର ଓଡ଼ିଶା ଏକ ଶକ୍ତିଶାଳୀ ଓ ବଳଶାଳୀ ରାଜ୍ୟ ରୂପେ ପରିଗଣିତ ହେଉଥିଲା ।

ମଧ୍ୟପର୍ବରେ ବିଦ୍ୟାଳୟ ଓ ଶିକ୍ଷାଦାନ ପ୍ରସଙ୍ଗରେ କୁହାଯାଇଛି ଯେ ଚାଟଶାଳୀରେ ଚାଟମାନଙ୍କୁ ବିଦ୍ୟାଶିକ୍ଷା ଦିଆଯାଉଥିଲା । ଗୁରୁ ସାନ୍ଦିପନି ପ୍ରତ୍ୟହ ଏକ ହଜାର ଚାଟଙ୍କୁ ବିଦ୍ୟାଦାନ କରୁଥିଲେ, ଯେଉଁମାନଙ୍କ ମଧ୍ୟରେ କୃଷ୍ଣ ଓ ବଳରାମ ପ୍ରଧାନ ଥିଲେ । ଗୁରୁ ଶିଷ୍ୟମାନଙ୍କୁ ପୁତ୍ରଭଳି ମନେ କରୁଥିଲେ ଏବଂ ଶିଷ୍ୟମାନଙ୍କର ମଧ୍ୟ ଗୁରୁଙ୍କୁ ଭକ୍ତି କରିବାରେ ଅବହେଳା ନ ଥିଲା । ଗୁରୁଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବା ଚାଟମାନଙ୍କର ପ୍ରଧାନ ଓ ପ୍ରଥମ କର୍ତ୍ତବ୍ୟ ଥିଲା । ଗୁରୁଙ୍କ ନିମନ୍ତେ ବିଭିନ୍ନ କାର୍ଯ୍ୟ କରିବା ମାଧ୍ୟମରେ ସେମାନେ ଗୁରୁସେବା କରୁଥିଲେ । ଗୁରୁ ମଧ୍ୟ ଚାଟମାନଙ୍କୁ ପୁତ୍ରଭଳି ସ୍ନେହ କରୁଥିଲେ । ନିମ୍ନଲିଖିତ ଉଦ୍ଧୃତିରୁ ଗୁରୁ-ଶିଷ୍ୟ ସମ୍ପର୍କ ଏବଂ ଗୁରୁଙ୍କ ନିମନ୍ତେ ଚାଟମାନଙ୍କର କାର୍ଯ୍ୟ ଇତ୍ୟାଦି ସମ୍ପର୍କରେ ସମ୍ୟକ ଧାରଣା ମିଳେ ।

"ଚାଟଶାଳୀ ମଧ୍ୟେ ଗୁରୁ ଯେ ଉଭା ହୋଇ
ସବୁ ପୁଅମାନନ୍ତ ସେ ଯେ ଅନାଇଣ କହି ।
ତୁମ୍ଭେ ସବୁ ପୋଏ୍ଁ ସ୍ନେହକ୍ଷଣୀ ବହନ ହୋଇ ଯିବ
କାଠଗୁଣ୍ଡାଏ୍ଁ ଲେଖାଏ୍ଁ ବନସ୍ତୁ ଭାଙ୍ଗିଣ ଆଣିବ ।"

(ମଧ୍ୟପର୍ବ— ପୃ. ୭୯୧)

ସାରଳା ମହାଭାରତର ଧର୍ମଧାରା ଲୋକବିଶ୍ୱାସ ଓ ସାମାଜିକ ରୀତିନୀତି, ବିବାହ, ବିଧି, ନୌବାଣିଜ୍ୟ, ଭୂରାଜସ୍ୱ ବିଧି, ଶିକ୍ଷାପଦ୍ଧତି, କୃଷି ଓ କୃଷକ, ପ୍ରବଚନ ଓ ଲୋକଚରିତ୍ର, ସମର ବିଭବ ସମ୍ପର୍କୀୟ ବିସ୍ତୃତ ବିବରଣୀରୁ ଏହା ଯେ ଯଥାର୍ଥରେ ଓଡ଼ିଆ ସାମାଜିକ ଜୀବନର ଏକ ବିଶ୍ୱକୋଷ ଏଥିରେ ସନ୍ଦେହ ରହେ ନାହିଁ ଏବଂ 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ' ଉକ୍ତିର ସାର୍ଥକତା ସ୍ୱତଃ ପ୍ରମାଣିତ ହୋଇଯାଏ ।

## କବିଙ୍କ ପାଣ୍ଡିତ୍ୟ

ସାରଳା ସାହିତ୍ୟ ପୂର୍ବରୁ ଆମ ସାହିତ୍ୟରେ କୌଣସି ସାର୍ଥକ ସାହିତ୍ୟିକ ନିଦର୍ଶନ ନ ଥିଲା । ନବମ ଶତାବ୍ଦୀର ଅପଭ୍ରଂଶ ଭାଷାରେ ବୌଦ୍ଧ ସହଜିଆ ସିଦ୍ଧକବି-ମାନଙ୍କ ଦ୍ୱାରା ରଚିତ ବୌଦ୍ଧ ଦୋହା ଓ ଚର୍ଯ୍ୟାଗୀତିଗୁଡ଼ିକୁ ଓଡ଼ିଆ ସାହିତ୍ୟ ଓ ଭାଷାର ଆଦି ରୂପ ଭାବେ ଗ୍ରହଣ କରାଯାଉଥିଲେ ମଧ୍ୟ ସମଗ୍ର ପୂର୍ବଭାରତୀୟ, ବଙ୍ଗଳା, ଆସାମୀ, ମୈଥିଳୀ, ହିନ୍ଦୀ ଇତ୍ୟାଦି ଭାଷାଗୋଷ୍ଠୀର ଏହା ଆଦିମ ନିଦର୍ଶନ ବୋଲି ସେଠାକାର ପଣ୍ଡିତମାନେ ଯୁକ୍ତିଯୁକ୍ତ ମତ ପ୍ରଦାନ କରନ୍ତି । ଯେ ଯାହା-ହେଉ, ସାରଳା ପୂର୍ବକାଳୀନ ଭାବେ ସ୍ୱୀକୃତ ନାଥ ସାହିତ୍ୟରେ ଥିବା ରଚନାଗୁଡ଼ିକ ଭାଷା ଦୃଷ୍ଟିରୁ ଚର୍ଯ୍ୟାଗୀତି ଓ ବୌଦ୍ଧ ଦୋହାଗୁଡ଼ିକର ଖୁବ୍ ନିକଟବର୍ତ୍ତୀ ଏବଂ

ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ରଚିତ 'ରୁଦ୍ରସୁଧାନିଧି'ରେ ସଂସ୍କୃତ କାବ୍ୟ ପ୍ରଭାବିତ ଭାଷା ପରିଦୃଷ୍ଟ ହୁଏ । ଏଣୁ ସାରଳା ଦାସଙ୍କ ପର୍ଯ୍ୟନ୍ତ ଓଡ଼ିଆରେ ମୌଳିକ କାବ୍ୟ ରଚିତ ହୋଇ ନଥିବା ଏଥିରୁ ସ୍ପଷ୍ଟ ହୁଏ । ତତ୍‌କାଳୀନ ସମାଜରେ ସଂସ୍କୃତ ଭାଷାର ଅସପତ୍ନ ରାଜତ୍ୱ ଚାଲିଥିଲା ଏବଂ ସଂସ୍କୃତ ପଣ୍ଡିତମାନେ ଅନ୍ୟାନ୍ୟ ଆଞ୍ଚଳିକ ଭାଷାକୁ ଘୃଣା କରିବା ଫଳରେ ଏହି ଭାଷାରେ ଗ୍ରନ୍ଥ ରଚିତ ହେବା ସମ୍ଭବ ନ ଥିଲା । ଏପରି ଏକ ସନ୍ଧିକ୍ଷଣରେ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରାନ୍ତୀୟ ଭାଷାରେ ଲିଖିତ ସାହିତ୍ୟ ମୁଣ୍ଡଟେକି ଉଠିବାକୁ ଆରମ୍ଭ କଲା । ପ୍ରଥମେ ସଂସ୍କୃତ ସାହିତ୍ୟରେ ସୁଖ୍ୟାତି ଅର୍ଜ୍ଜନ କରିଥିବା ରାମାୟଣ, ମହାଭାରତ, ଭାଗବତାଦି ଗ୍ରନ୍ଥର ଅନୁବାଦ କାର୍ଯ୍ୟ ଆରମ୍ଭ ହେଲା । ସର୍ବ ପ୍ରଥମେ ଏକାଦଶ ଶତାବ୍ଦୀରେ କବି ନାନୟା ଭଟ୍ଟ ସଂସ୍କୃତ ମହାଭାରତକୁ ତେଲୁଗୁ ଭାଷାରେ ଅନୁବାଦ କଲେ । ତା ପରବର୍ତ୍ତୀ ଅବସ୍ଥାରେ ଓଡ଼ିଆ, ହିନ୍ଦୀ, ଆସାମୀ, କନ୍ନଡ଼ ସାହିତ୍ୟରେ ସଂସ୍କୃତରୁ ପ୍ରାନ୍ତୀୟ ଭାଷାରେ ଅନୁବାଦ କାର୍ଯ୍ୟ ଆରମ୍ଭ ହେଲା । କିନ୍ତୁ ଦକ୍ଷିଣ ଭାରତୀୟ ସାହିତ୍ୟରେ ରାମାୟଣ ଓ ମହାଭାରତର ଅନୁବାଦ ସମ୍ପୂର୍ଣ୍ଣ ରୂପେ ସଂସ୍କୃତ ପ୍ରଭାବିତ ଥିଲାବେଳେ, ପୂର୍ବ ଭାରତରେ ହୋଇଥିବା ଅନୁବାଦ କାର୍ଯ୍ୟ ସଂସ୍କୃତରୁ ମୁକ୍ତ ହୋଇ ପ୍ରାକୃତର ଖୁବ୍ ନିକଟବର୍ତ୍ତୀ ଥିଲା । ସମସ୍ତ ଭାଷାର ଅନୁବାଦକମାନଙ୍କ ମଧ୍ୟରେ କୃଷକ କବି ସାରଳା ଦାସ ସ୍ୱତନ୍ତ୍ର ଆସନ ଦାବୀ କରନ୍ତି । କାରଣ ତାଙ୍କ ଗ୍ରନ୍ଥରେ ସେ ମୂଳ ବିଷୟବସ୍ତୁର ଆରମ୍ଭ ଓ ଶେଷ ବିନ୍ଦୁକୁ କେବଳ ଗ୍ରହଣ କରିଅଛନ୍ତି ଏବଂ ସ୍ୱକଳ୍ପନା ଶକ୍ତି ବଳରେ ଅନେକ ମୌଳିକ ଉପାଖ୍ୟାନ, ଲୋକକଥା, ପ୍ରବଚନ, ନୀତିକଥା ଆଦି ସୃଷ୍ଟି କରି ସ୍ୱପାଣ୍ଡିତ୍ୟର ପରାକାଷ୍ଠା ଦେଖାଇ-ଅଛନ୍ତି । ତାଙ୍କ ଗ୍ରନ୍ଥର ଛନ୍ଦେ ଛନ୍ଦେ ତାଙ୍କର ମୌଳିକତା ଏପରି ଭାବରେ ଫୁଟି ଉଠିଛି ଯେ ଏହାକୁ ପାଠ କରିବା ସମୟରେ ଏହା କୃଷକ କବିଙ୍କର ଏକ ସ୍ୱତନ୍ତ୍ର ମହା-ଭାରତ ଭଳି ପ୍ରତୀତ ହୁଏ ।

ଆଲୋଚ୍ୟ ଗ୍ରନ୍ଥରେ ସାରଳା ଦାସ ନିଜର ବାଲ୍ୟଶିକ୍ଷା ସମ୍ବନ୍ଧରେ କିଛି କହି ନାହାନ୍ତି । ବରଂ ବହୁ ସ୍ଥଳରେ ନିଜକୁ ଅପଣ୍ଡିତ, ମୂର୍ଖ, ଶାସ୍ତ୍ର-ଅନଭିଜ୍ଞ, ପଣ୍ଡିତ ଜନଙ୍କ ପାଖରେ ବସିବାକୁ ଅଯୋଗ୍ୟ ଇତ୍ୟାଦି କହି ନିଜର ହୀନମନ୍ୟତା ପ୍ରକାଶ କରିଅଛନ୍ତି ଏବଂ ଦେବୀଙ୍କଠାରୁ ଯାହା ଶୁଣନ୍ତି ତାହା ଗ୍ରନ୍ଥରେ ଲେଖନ୍ତି ବୋଲି କହିଛନ୍ତି । ଏଗୁଡ଼ିକ ମଧ୍ୟରୁ ଅଳ୍ପ କେତୋଟି ଉଦାହରଣ ସ୍ୱରୂପ ଏଠାରେ ଉଦ୍ଧାର କରାଯାଇପାରେ ।

"ପ୍ରସନ୍ନେଣ ଆଗ୍ୟାଂ ମୋତେ ଦିଲେ ଶାକାମ୍ଭେଶ୍ୱରୀ
ଲଭିଲୁ କପିଳାସ ଶ୍ରୀ ମହାଭାରଥ କରି ।
ଶୁଣି ବୁଧଜନେ ନ ଧରି ଆନ ଚିତ୍ତ
ଜନ୍ମେଣ ମୁରୁଖ ମୁହିଂ ନୋହଇ ପଣ୍ଡିତ ।

( ଆଦିପର୍ବ—ପୃ : ୫ )

"ମୂଢ଼ଂ ଯେ ଅରଖିତ ନାଥରେ ଶୁଦ୍ଧ
ଗଣ୍ଡ ମୂରୁଖ ସଙ୍ଗତେ ମୁଂ ଲେଖା ଯେ ଅଟଇ ।"

( ଆଦିପର୍ବ—ପୃ-୧୦୪୫ )

"ନ ପଢ଼ିଲି ଅକ୍ଷର ନୋହଇ ଶାସ୍ତ୍ରବାଦୀ
ପଣ୍ଡିତଜନଙ୍କ କୁଳେ ନ ବସିଲି ସମ୍ବାଦି ।
କୁଆନବାସୀ ମୁଂ ନୋହିଲି ବିପ୍ରଗୋଷ୍ଠୀ
କେଣକଳଣ୍ଠ ବୁଦ୍ଧି ମୂଢ଼ଂ ବଯ୍ସ ଅଲପଟି ।"

( ମଧ୍ୟପର୍ବ ପୃ-୮ )

"ଶାରଳା ଦାସ ଶରଣ ପଶେ ସେ ଚରଣେ
ମୂର୍ଖ ମୂଢ଼ଂ ଅପଣ୍ଡିତ ଶାସ୍ତ୍ର କିଛି ନ ଜାଣେ
ବୁଦ୍ଧି ଧ୍ୟାନ ଜ୍ଞାନ ଯୋଗ ଲକ୍ଷ୍ୟ କିଛି ନାହିଁ
ଗ୍ରନ୍ଥ ଭେଦିବାକୁ ଶକ୍ତି ମୋର ଅବା କାହିଁ ।"

( ବିଲଙ୍କା ରାମାୟଣ ପୃ-୧ )

"ମୂର୍ଖ ଅପଣ୍ଡିତ ମୂଢ଼ଂ ନ ଜାଣଇ ସିଦ୍ଧି
ନ ଜାଣଇ ଅକ୍ଷର ଯେ କିସ ଅବା ବୁଦ୍ଧି ।"

( ଚଣ୍ଡୀ ପୁରାଣ ପୃ-୪ )

ଉଦ୍ଧୃତାଂଶଗୁଡ଼ିକରେ ସାରଳା ଦାସ ନିଜକୁ ଯେତେ ମୂର୍ଖ, ଅପଣ୍ଡିତ, ଅଜ୍ଞାନ ବୋଲି ଘୋଷଣା କରନ୍ତୁ ପଛେ, ସେ ଯେ ଜଣେ ଅସାଧାରଣ ପାଣ୍ଡିତ୍ୟସମ୍ପନ୍ନ ବ୍ୟକ୍ତି ଥିଲେ, ଏଥିରେ ସନ୍ଦେହ ନାହିଁ । କାରଣ ଜଣେ ମୂର୍ଖ, ଅପଣ୍ଡିତ ଓ ଜ୍ଞାନରହିତ ବ୍ୟକ୍ତି ଦେଖା କରୁଣାରୁ ଏପରି ବିରାଟ ଗ୍ରନ୍ଥର ଗ୍ରନ୍ଥକାର ହୋଇପାରିବା ଏକ ଅସମ୍ଭବ ବ୍ୟାପାର । ତେବେ ଏଠାରେ ବିଗ୍ଚର କରାଯାଇପାରେ, ନିଜର ଏପରି ପରିଚୟ ଦେବା ପଛରେ କବିଙ୍କ ଉଦ୍ଦେଶ୍ୟ କ'ଣ ଥିଲା । ପୂର୍ବକାଳରେ କବିମାନେ ନିଜକୁ ମୂର୍ଖ, ଅପଣ୍ଡିତ ଇତ୍ୟାଦି କହି ଦୈନ୍ୟଭାବ ପ୍ରକାଶ କରିବା ଏକ ପରମ୍ପରା ଥିଲା ବୋଲି କୁହାଯାଇପାରେ । କାରଣ ସଂସ୍କୃତ ସାହିତ୍ୟର ମହାକବି କାଳିଦାସ ପ୍ରମୁଖ ନିଜ ଜ୍ଞାନ ପ୍ରକାଶରେ ଏପରି ହୀନମନ୍ୟତା ମଧ୍ୟ ପ୍ରକାଶ କରିଛନ୍ତି । ଏଣୁ ଏ ପ୍ରକାର ବ୍ୟକ୍ତି କରିବାରେ ସାରଳା ପ୍ରଥମ ବ୍ୟକ୍ତି ନୁହନ୍ତି; ଏପରି କରି କେବଳ ସେ ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ଏହା ଫଳରେ ତାଙ୍କର କ୍ଷୁଦ୍ରତା ପ୍ରକାଶିତ ହୋଇ ନାହିଁ; ବରଂ ତାଙ୍କ ସୌଜନ୍ୟ, ବିନୟଭାବ ଓ ମହାନୁଭବତାର ସମ୍ୟକ୍ ପରିପ୍ରକାଶ ଘଟିଛି । ଦ୍ୱିତୀୟତଃ ସେ ସମୟରେ ସଂସ୍କୃତ ଭାଷା ଭିନ୍ନ ଅନ୍ୟ ଭାଷାର ଆଦର ନ ଥିଲା । କଥିତ ଭାଷାରେ ସାହିତ୍ୟ ରଚନା କରିବା ଘୃଣିତ ଓ ନିନ୍ଦନୀୟ ଘଟଣା ଥିଲା ।

ସାରଳା ଦାସଙ୍କର ଏହି ଧାରଣା ହୁଏତ ହୋଇଥିଲା ଯେ କଥିତ ଭାଷାରେ ରଚିତ ତାଙ୍କର ଗ୍ରନ୍ଥ ନିମନ୍ତେ ତାଙ୍କୁ ଅଶେଷ ଲାଞ୍ଛନା ସହ୍ୟ କରିବାକୁ ପଡ଼ିବ ଓ ତାଙ୍କ ଗ୍ରନ୍ଥ ସମାଦର ଲାଭ କରିବ ନାହିଁ । ଏଣୁ ସେ ଏକ କୌଶଳ ଅବଲମ୍ବନ କରି ଗ୍ରନ୍ଥର ଅନେକ ସ୍ଥଳରେ ପ୍ରକାଶ କରିଛନ୍ତି ଯେ ସାରଳା ଠାକୁରାଣୀ ତାଙ୍କୁ ଯାହା ରାତିରେ କହନ୍ତି, ତାହା ସେ ଦିନରେ ଲେଖନ୍ତି । ଏହା ଫଳରେ ସେ ସମୟର ଧର୍ମଭୀରୁ ଜନସାଧାରଣଙ୍କ ମନରେ ଦେବୀଙ୍କ ମୁଖ-ନିଃସୃତ ବାଣୀ ହିସାବରେ ଏ ଗ୍ରନ୍ଥ ପ୍ରତି ଭକ୍ତି ଜନ୍ମିଛି ଏବଂ ସେମାନେ ଘୃଣା ପରିବର୍ତ୍ତେ ଏହାର ଆଦର କରିଛନ୍ତି ।

ସାରଳା ମହାଭାରତ ପାଠ କଲାବେଳେ ପ୍ରଥମେ ଦୃଷ୍ଟି ପଡ଼େ, ଏହାର ଛନ୍ଦ ବା ବୃତ୍ତ ଉପରେ । ଏହା ଦାଣ୍ଡି ବୃତ୍ତରେ ରଚିତ । ଏହି ବୃତ୍ତର ଦୁଇ ପାଦରେ ଏକ ପଦ ହୁଏ । ମାତ୍ର ପ୍ରତି ପାଦର ଅକ୍ଷର ସଂଖ୍ୟା ସମାନ ନୁହେଁ । ସବୁଠାରୁ ବଡ଼ ପାଦର ଅକ୍ଷର ସଂଖ୍ୟା ୩୨ ଥିବାସ୍ଥଳେ, ସବୁଠାରୁ ଛୋଟ ପାଦରେ ୯ ଗୋଟି ଅକ୍ଷର ଥିବାର ଦେଖାଯାଏ । ଆରୋହ ଅବରୋହର ସାହାଯ୍ୟ ନେଇ ଗାୟକ ଏହାକୁ ଏପରି ଗାନକରେ ଯେ ଶ୍ରୋତାକୁ ଜଣାଯାଏ, ଯେପରି ଦୁଇ ଧାଡ଼ିର ଅକ୍ଷର ସଂଖ୍ୟା ସମାନ । ସାରଳା ହେଉଛନ୍ତି ଏ ପ୍ରକାର ଛନ୍ଦର ସ୍ରଷ୍ଟା ଏବଂ ଏହି ଛନ୍ଦ ରଚନା ତାଙ୍କ ପାଣ୍ଡିତ୍ୟର ପରିଚାୟକ ।

ତାପରେ ଯାହା ଆମ ଦୃଷ୍ଟି ଆକର୍ଷଣ କରେ, ତାହା ହେଉଛି ସାରଳାଙ୍କ ଭାଷା । ଏହି ଭାଷାରେ ଆମେ ତତ୍ସମ, ତଦ୍ଭବ, ଦେଶଜ ପ୍ରଭୃତି ଶବ୍ଦର ଅପୂର୍ବ ସମାବେଶ ଦେଖିବାକୁ ପାଉ । ସଂସ୍କୃତ ଶବ୍ଦଗୁଡ଼ିକୁ ଗ୍ରନ୍ଥ ମଧ୍ୟରେ ଏପରି ଭାବେ ମିଶ୍ରେଇ ଦିଆଯାଇଛି ଯେ ସେଗୁଡ଼ିକର ଅବଗତିରେ କୌଣସି ବାଧା ଉପୁଜେ ନାହିଁ । ନିଜର ଅଗାଧ ପାଣ୍ଡିତ୍ୟ ବଳରେ ସେ ସଂସ୍କୃତ ଶବ୍ଦରୁ ଶତ ଶତ ତଦ୍‌ଭବ ଶବ୍ଦ ସୃଷ୍ଟି କରିଛନ୍ତି । ତାଙ୍କର ଏହି ଶବ୍ଦ ସୃଷ୍ଟି ଅତ୍ୟନ୍ତ ଚମତ୍କାରଜନକ । ପ୍ରଯୁକ୍ତ ଏହି ତଦ୍‌ଭବ ଶବ୍ଦଗୁଡ଼ିକୁ ମୂଳ ଶବ୍ଦ ସହିତ ମିଳାଇ ଦେଖିଲେ, ସାରଳାଙ୍କ ପାଣ୍ଡିତ୍ୟ ସମ୍ବନ୍ଧରେ ସମ୍ୟକ୍ ଧାରଣା ହୁଏ । ଅମରଷ ( ଅମର୍ଷ ), ଦୋରେହା ( ଦ୍ରୋହୀ ), ବହିଣୀ ( ଭଗିନୀ ), ପଞ୍ଚାଣ ( ପଞ୍ଚାନନ ), ମୟାଣ ( ମଦନ ), କଣୟ ( କନକ ), ପକ୍ଳୁ ( ପକ୍ୱ ) ପ୍ରଭୃତି ଶବ୍ଦଗୁଡ଼ିକ ହେଉଛନ୍ତି, ଏହାର ଗୋଟିଏ ଗୋଟିଏ ଉଦାହରଣ ।

ସାରଳା ମହାଭାରତରେ ସ୍ଥାନ ପାଇଥିବା କେତେକ ପଦର ବ୍ୟୁତ୍ପତ୍ତିକ୍ରମକୁ ଅନୁଶୀଳନ କଲେ ଜଣାଯାଏ, ଏଥି ମଧ୍ୟରୁ କେତେକ ସଂସ୍କୃତ ମହାଭାରତରେ ପ୍ରଦତ୍ତ ବ୍ୟୁତ୍ପତ୍ତିକ୍ରମ ସହିତ ସମାନ, କେତେକ ବିଭିନ୍ନ ପୁରାଣ ଗ୍ରନ୍ଥମାନଙ୍କରୁ ଆନୀତ ହୋଇ ପ୍ରସଙ୍ଗାନୁସାରେ ଏଥିରେ ବ୍ୟବହୃତ ହୋଇଛି, କେତେକ ସଂସ୍କୃତ ବ୍ୟୁତ୍ପତ୍ତିଠାରୁ ସାମାନ୍ୟ ଭିନ୍ନ ଏବଂ ଅନ୍ୟ କେତେକ ସମ୍ପୂର୍ଣ୍ଣ ନୂତନ ଯାହାର ସ୍ରଷ୍ଟା ସାରଳା ଦାସ

ନଜେ । ଶେଷୋକ୍ତ ପର୍ଯ୍ୟାୟ ଦ୍ୱୟ ଅନ୍ତର୍ଗତ ପଦର ବ୍ୟୁତ୍ପତ୍ତିକ୍ରମ ମଧ୍ୟରେ କୋଣାର୍କ, ଓଡ଼ିଶା, ପଗ୍ୱାକ୍ଷ, ମଲ୍ଲିକାର୍ଜୁନ, ଅଙ୍ଗାରପନ୍ନଗ, କେତୁକା, କଣ୍ଠି, ଶିଖଣ୍ଡୀ, ପାଣ୍ଡବ, ହର ଇତ୍ୟାଦି ପ୍ରଧାନ । ଏଥିରୁ କବିଙ୍କ ଅଗାଧ ପାଣ୍ଡିତ୍ୟର ପରିଚୟ ମିଳେ । ଏ ସମ୍ବନ୍ଧରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା କହନ୍ତି—"ପ୍ରଦତ୍ତ ବ୍ୟୁତ୍ପତ୍ତି ସ୍ଥାନମାନଙ୍କ ସମ୍ୟକ୍ ପରିଶୀଳନ ପୂର୍ବକ ଦେଖିଗଲେ ସୁବୋଧିତ ହୁଏ ଯେ ଏହି ମହାକବି ମହାଶୟ ସଂସ୍କୃତ ଶାସ୍ତ୍ରରେ ବ୍ୟୁତ୍ପନ୍ନ ନ ଥିଲେ ସୁଦ୍ଧା ତାହାଙ୍କର ଯେ ସଂସ୍କୃତ ଜ୍ଞାନ ନିତାନ୍ତ ଊଣା ଥିଲା ତାହା ନୁହେଁ ।" (ଶ୍ରୀ ଭାରତ ଦର୍ପଣ—ପୃ: ୬୪୨) କିନ୍ତୁ ପ୍ରଚଣ୍ଡ ପ୍ରତିଭାଧର ମହାକବି ସାରଳାଙ୍କ ପାଇଁ ଏ ପ୍ରକାର ମୂଲ୍ୟାୟନ ଯଥାର୍ଥ ନୁହେଁ ବୋଲି ଯେ କେହି ବ୍ୟକ୍ତି ମୁକ୍ତ କଣ୍ଠରେ ସ୍ୱୀକାର କରିବ ।

କୌରବ ଶତଭ୍ରାତାଙ୍କ ନାମକରଣ ସାରଳାଙ୍କ ପାଣ୍ଡିତ୍ୟର ଅନ୍ୟ ଏକ ଉଦାହରଣ । ସଂସ୍କୃତ ମହାଭାରତରେ ଥିବା ଏହି ଶହେଭାଇଙ୍କ ନାମକରଣକୁ ସାରଳା ଗ୍ରହଣ କରି ନାହାନ୍ତି । ସେ ଏକ ନୂତନ ଦୃଷ୍ଟିକୋଣରୁ ଅଗାଧ ପାଣ୍ଡିତ୍ୟ ବଳରେ ସେମାନଙ୍କ ନାମକରଣ କରିଛନ୍ତି । ପ୍ରତ୍ୟେକ ନାମର ମୂଳ ଅକ୍ଷର ସେ ରଖିଛନ୍ତି 'ଦୁଃ' । 'ଦୁଃ' ହେଉଛି ବ୍ୟାକରଣରେ ଏକ ଉପସର୍ଗ, ଯାହା 'ଅସତ୍' ଆଦି ଅର୍ଥ ପ୍ରକାଶ କରେ । ଦୁର୍ଯ୍ୟୋଧନ, ଦୁଃଶାସନ ଇତ୍ୟାଦି ଧୃତରାଷ୍ଟ୍ରଙ୍କ ଶତପୁତ୍ର ମନ୍ଦଗୁଣର ଅଧିକାରୀ ଭାବେ ମହାଭାରତରେ ଚିତ୍ରିତ । ଏଣୁ ସେମାନଙ୍କ ନାମର ମୂଳ ଅକ୍ଷର 'ଦୁଃ' ରଖି ସେମାନଙ୍କ ମନ୍ଦଗୁଣ ପ୍ରକାଶ କରିବା ବୋଧେ ସାରଳାଙ୍କ ଉଦ୍ଦେଶ୍ୟ ଥିଲା ଏବଂ ଏପରି କରିବା ନିଶ୍ଚିତ ଭାବେ ଅଧିକ ସମୀଚୀନ । ଏହିପରି ଏକଶତ ନାମ ନିର୍ବାଚନ ନିଶ୍ଚୟ କଷ୍ଟସାଧ୍ୟ ଏବଂ ଅଧୀତ-ଜନିତ ପାଣ୍ଡିତ୍ୟର ପରିଚାୟକ ।

ସାରଳା ମହାଭାରତରେ ଏପରି କେତେକ ପଦ ଅଛି, ଯାହା ସଂସ୍କୃତ ମହାଭାରତ, କାଳିଦାସଙ୍କ ରଘୁବଂଶ, ଶ୍ରୀମଦ୍ଭଗବତ ଗୀତା, ବାଣଙ୍କ କାଦମ୍ବରୀ, ଶ୍ରୀମଦ୍ଭାଗବତ, ଜୟଦେବଙ୍କ ଗୀତଗୋବିନ୍ଦ, ଏକାମ୍ର ପୁରାଣ, ପଞ୍ଚତନ୍ତ୍ର ପ୍ରଭୃତି ସଂସ୍କୃତ ଗ୍ରନ୍ଥର କେତେକ ଶ୍ଳୋକର ଆକ୍ଷରିକ ଅନୁବାଦ ଭଳି ମନେହୁଏ । ଏଣୁ ସଂସ୍କୃତରେ କବିଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଏବଂ ସେ ଏସବୁ ଗ୍ରନ୍ଥ ସେ ଅଧ୍ୟୟନ କରିଥିଲେ, ଏଥିରେ ମତଦ୍ୱୈଧର ଅବକାଶ ନାହିଁ ।

ଆଲୋଚ୍ୟ ଗ୍ରନ୍ଥର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି, ଏଥିରେ ଥିବା ଐତିହାସିକ ଓ ଭୌଗଳିକ ଚିତ୍ର । କେବଳ ଓଡ଼ିଶାର ନୁହେଁ, ସମସାମୟିକ ଭାରତ ଓ ଭାରତ ନିକଟବର୍ତ୍ତୀ ଅନ୍ୟାନ୍ୟ ଦେଶ (ସିଂହଳ, ନେପାଳ) ଆଦିର ଭୌଗଳିକ ଚିତ୍ର ଏଥିରେ ସନ୍ନିବେଶିତ । ପୁନଶ୍ଚ ଗ୍ରନ୍ଥର ବିଷୟବସ୍ତୁ ମଧ୍ୟରେ କପିଳେନ୍ଦ୍ର ଦେବଙ୍କ ରାଜ୍ୟ ଜୟର ଚିତ୍ର ଅତି ନିପୁଣତାର ସହିତ ସେ ପରିବେଷଣ କରିଛନ୍ତି । ଏହା

କବିଙ୍କ ଇତିହାସ ତଥା ଭୂଗୋଳ ସମ୍ପର୍କୀୟ ଜ୍ଞାନର ସମ୍ୟକ୍ ପରିଚୟ ଦିଏ ଏବଂ ଆଧୁନିକ ଶିକ୍ଷାର ପ୍ରଚଳନ ନ ଥିବା ତତ୍କାଳୀନ ଓଡ଼ିଶାର ଏହି କୃଷକ କବିଙ୍କର ବହୁଶାସ୍ତ୍ରଦର୍ଶିତା ଓ ପାଣ୍ଡିତ୍ୟ ପ୍ରମାଣ କରେ ।

ସାରଳାଙ୍କର ଜ୍ୟୋତିଃଶାସ୍ତ୍ରରେ ମଧ୍ୟ ଗଭୀର ପ୍ରବେଶ ଥିଲା । ତାଙ୍କ ଗ୍ରନ୍ଥରେ ବର୍ଣ୍ଣିତ ପ୍ରାୟ ପ୍ରତ୍ୟେକ ପ୍ରଧାନ ଘଟଣା ଅର୍ଥାତ ଯାତ୍ରା, ଜନ୍ମ, ରଜୋଦର୍ଶନ, ବିବାହ, ଗଣ୍ଡଦୋଷ ଇତ୍ୟାଦି ସ୍ଥାନମାନଙ୍କରେ ଗ୍ରହ-ନକ୍ଷତ୍ରାଦିର ଯଥାଯଥ ଗଣନା ଏବଂ ଫଳାଫଳର ବିବରଣୀ ସେ ପ୍ରଦାନ କରିଛନ୍ତି । ବେଳେବେଳେ ଲିପିଗତ ପ୍ରମାଦ ଥିଲେ ହେଁ ଅଧିକାଂଶ ପ୍ରମାଣଗୁଡ଼ିକ ଜ୍ୟୋତିଃଶାସ୍ତ୍ର-ସମ୍ମତ ଅଟେ । ପଣ୍ଡିତ ଶ୍ରୀ ବାଇକୋଳି ଜ୍ୟୋତିଷ-ବିଶାରଦ ଏଣୁ ଯଥାର୍ଥରେ କହିଛନ୍ତି—"ଜଣେ କେହି କେବଳ ମହାଭାରତ ପଢ଼ି ଦେଲେ ଜ୍ୟୋତିଷର ବହୁ ତଥ୍ୟ ଜାଣିଯିବ । ଏ ସମ୍ପର୍କରେ 'ଶ୍ରୀ ଭାରତ ଦର୍ପଣ'ରେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ମନ୍ତବ୍ୟ ଦିଅନ୍ତି— "ଜ୍ୟୋତିଃ ଶାସ୍ତ୍ରରେ ଫଳିତ ଜ୍ୟୋତିଷ ଓ ମୌହୂର୍ତ୍ତିକ ଭାଗରେ ଏହାଙ୍କର ଯେ ଖୁବ୍ ପାରଦର୍ଶିତା ଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଅତଏବ ପ୍ରତ୍ୟେକ ଯୋଗଯାତ୍ରାଦି ଓ ପ୍ରଧାନ ଘଟଣା ସ୍ଥଳମାନଙ୍କରେ ତିଥିବାରାଦି ଓ ଲଗ୍ନାଦିର ବିବରଣ ଦେଇପାରି ଅଛନ୍ତି, ବିଶେଷତଃ ମଧ୍ୟପର୍ବର ପ୍ରାରମ୍ଭରେ ସ୍ତ୍ରୀର ପ୍ରାଥମିକ ରଜୋଦର୍ଶନର ଦୋଷାଦୋଷ ବିବରଣ ସମ୍ପୂର୍ଣ୍ଣ ଓ ବିସ୍ତାରିତଃ ଲେଖିବାକୁ ପାରିଅଛନ୍ତି ।"

( ପୃ ୩୦୬-୩୦୭ )

ସାରଳାଙ୍କ ଗ୍ରନ୍ଥରେ ପ୍ରଦତ୍ତ ଜନ୍ମୋତ୍ସବ, ନାମକରଣ, ବିବାହ ଉତ୍ସବ, ଯଜ୍ଞଦାନାଦି ବହୁ ବିଷୟର ବର୍ଣ୍ଣନା ବୈଦିକ କର୍ମକାଣ୍ଡ ଅନୁଯାୟୀ ହୋଇଥିବାର ଦେଖାଯାଏ । ଏସବୁ ବିଷୟର ଉପସ୍ଥାପନା ନିମନ୍ତେ ସେ ମୂଳଗ୍ରନ୍ଥକୁ ଆଦୌ ଅନୁସରଣ କରି ନାହାନ୍ତି । "କବି ଅନୁଭବ—ବୈଭବରୁ କିମ୍ବା ପଣ୍ଡିତ ବ୍ରାହ୍ମଣ ସମାଜର ସହବାସ ସୁଯୋଗରୁ ଏତାଦୃଶ ସ୍ମାର୍ତ୍ତି ବ୍ୟୁତ୍ପତ୍ତି ବା ଜ୍ଞାନଲାଭ କରିପାରିଥିବାର ଜଣାଯାଏ । ଏ ସ୍ଥଳରେ ଏ ମହାଶୟ ସାକ୍ଷାତ୍ ବୈଦିକ ବିଧାନଜ୍ଞ କର୍ମକାଣ୍ଡ ପାରଦର୍ଶୀ ବ୍ରାହ୍ମଣଙ୍କର ସାରସ୍ୱତ ବିଭୂତିରେ ବିରାଜମାନ ଥିଲା ପରି ପ୍ରତୀୟମାନ ହେଉଅଛନ୍ତି ।

( ଶ୍ରୀ ଭାରତ ଦର୍ପଣ—ପୃ ୩୦୯ )

ମୂଳ ଗ୍ରନ୍ଥରେ ନ ଥିବା ତନ୍ତ୍ରାଦି ଉପବିଦ୍ୟା ସମ୍ବନ୍ଧୀୟ ବିଭିନ୍ନ ବର୍ଣ୍ଣନା ଏହି ଗ୍ରନ୍ଥରେ ଦେଖିବାକୁ ମିଳେ । ଏଥିରୁ ମନେହୁଏ, କବି ଉଲ୍ଲୁକ ବିଦ୍ୟା, ଭୂତ-ପ୍ରେତାଦିର ଆବେଶନ, ବନ୍ଧନ, ମାରଣ ପ୍ରଭୃତି ଭୂତ ଚିକିତ୍ସା ଓ ତାନ୍ତ୍ରିକ ଉପାୟ-ମାନ ମଧ୍ୟ ଅବଗତ ଥିଲେ । ଏହାର ପ୍ରମାଣ ଆମେ ପାଉ ଉଦ୍‌ଯୋଗ ପର୍ବରେ 'ବାବନାଭୂତ' ପ୍ରସଙ୍ଗରେ । କବି ଭୂତ ବିଦ୍ୟା ଭଳି ଗାରୁଡ଼ ବିଦ୍ୟାରେ ମଧ୍ୟ ପାରଙ୍ଗମ ଥିବାର ଅନୁମିତ ହୁଏ । ମତ୍ସ୍ୟେନ୍ଦ୍ର ନାଥଙ୍କ ଶିଷ୍ୟ ଗୋରକ୍ଷନାଥଙ୍କ ମହିମା ଅନେକ

ସ୍ଥଳରେ କୀର୍ତ୍ତନ କରି ସେ ବହୁ କାରଣ ଓ ଝାଡ଼ଖଣ୍ଡର ସୂଚନା ଦେଇଅଛନ୍ତି । ସେ ପରକାୟା ପ୍ରବେଶ ବିଦ୍ୟାରେ ମଧ୍ୟ କିଛି କୃତିତ୍ୱ ହାସଲ କରିଥିବା ଭଳି ମନେ ହୁଏ । "ସେ ନିଜେ ଦେବୀଙ୍କ ପ୍ରସାଦରୁ ପ୍ରୋକ୍ତ ବିଦ୍ୟାର ମର୍ମ ଜାଣୁଥିବେ, ନଚେତ୍ ତାଦୃଶ ପ୍ରକ୍ରିୟାକୁଶଳ ତାନ୍ତ୍ରିକ ତାନ୍ତ୍ରିକମାନଙ୍କର ସହବାସରୁ ତଦ୍ରୂପ ଘଟନାସମୂହ ଶ୍ରବଣରେ ସମ୍ପୂର୍ଣ୍ଣ ଅଭ୍ୟସ୍ତ ଥିବେ । ବର୍ତ୍ତମାନ ସମୟରେ ଏଭଳି ପ୍ରକ୍ରିୟା ସମ୍ପୂର୍ଣ୍ଣ ଅନ୍ତର୍ହିତ ବା ବିଲୁପ୍ତ ହୋଇଥିଲେ ସୁଦ୍ଧା ଏହାଙ୍କ ସମୟକୁ ଉତ୍କଳରେ ସେ ବିଦ୍ୟାର ଏକାନ୍ତ ଅଭାବ ନ ଥିଲା ।" (ଶ୍ରୀ ଭାରତ ଦର୍ପଣ – ପୃ ୮୧୦ )

ଓଡ଼ିଆ କାବ୍ୟ ନିମନ୍ତେ କୌଣସି ପରମ୍ପରା ନ ଥିବା ସ୍ଥଳେ ସାରଳା ଦାସ କେବଳ ନିଜ ପ୍ରତିଭା ଏବଂ ପାଣ୍ଡିତ୍ୟ ବଳରେ ଅଷ୍ଟାଦଶ ପର୍ବ ବିଶିଷ୍ଟ ମହାଭାରତ ରଚନା କରିପାରିଥିଲେ । ତାଙ୍କର ପାଣ୍ଡିତ୍ୟ ଏବଂ ବାକ୍ୟଶୈଳୀରେ ମୁଗ୍ଧ ହୋଇ ରୀତିଯୁଗର ଉଦ୍ଭବ ପର୍ଯ୍ୟନ୍ତ ସମସ୍ତ ଉତ୍କଳୀୟ କବି ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ସାରଳାଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ଆସିଛନ୍ତି । କେବଳ ସେମାନେ ନୁହନ୍ତି । ଆଧୁନିକ ଯୁଗରେ ମଧ୍ୟ ତାଙ୍କ ପ୍ରତିଭା-ମୁଗ୍ଧ ଅନେକ କବି ତାଙ୍କରି ଆଦର୍ଶରେ ସାହିତ୍ୟ ସୃଷ୍ଟି କରିବା ନିମନ୍ତେ ଆଗ୍ରହୀ ହେଉଥିବାର ଦେଖାଯାଉଛି । ସୁତରାଂ ଏହି ଯୋଗଜନ୍ମା କବିଙ୍କୁ 'ମହାକବି'ର ସମ୍ମାନ ଦିଆଯିବା ଅଯଥାର୍ଥ ନୁହେଁ ।

## କବିଙ୍କ ସ୍ୱଦେଶ ପ୍ରୀତି

ସାରଳା ମହାଭାରତ ଏ ଦେଶର ଜାତୀୟ ମହାକାବ୍ୟ । ସାରଳା ଦାସ ନିଜ ଜନ୍ମମାଟି ଓଡ଼ିଶାକୁ, ଏହାର ଅଧିବାସୀ ସରଳ ଓଡ଼ିଆଙ୍କୁ ଓ ଏହାର ପରିବେଶକୁ ଭଲ ଭାବରେ ଚିହ୍ନି ଥିଲେ । ସେ ସମୟର ଅବସ୍ଥା ଯାହାଥିଲା, କବି ଓଡ଼ିଶା ବାହାରକୁ ଯାଇଥିବାର ବିଶ୍ୱାସ ହୁଏନି । ଏଣୁ ସାରଳା ମହାଭାରତ ଭଳି ଏକ ବିଶାଳକାୟ ଗ୍ରନ୍ଥ ରଚନା କରିବା ସମୟରେ ନିଜ ଆଖି ଆଗରେ ଦେଖୁଥିବା ଏହି ଓଡ଼ିଶା ଓ ଓଡ଼ିଆ-ମାନଙ୍କୁ ହିଁ ସେ ଯଥାକ୍ରମେ ନିଜ ଗ୍ରନ୍ଥର ପ୍ରଧାନ ଲୀଳାଭୂମି ଓ ଚରିତ୍ର ରୂପେ ଗ୍ରହଣ କରି ନେଇଅଛନ୍ତି । ଫଳତଃ ଆଲୋଚ୍ୟ ଗ୍ରନ୍ଥ ଓଡ଼ିଶା ବିଷୟକ ଆଖ୍ୟାନ ଓ ଓଡ଼ିଶାରେ ପ୍ରଚଳିତ କିମ୍ବଦନ୍ତୀ ପରିପୂର୍ଣ୍ଣ । ମହାଭାରତର ପ୍ରତି ପୃଷ୍ଠାରେ କିଛି ନା କିଛି ସାରଳା-କାଳୀନ ଓଡ଼ିଶାର ସାମାଜିକ ଚିତ୍ର, ସଂସ୍କୃତି, ଧର୍ମଧାରା, ଗ୍ରାମ୍ୟ ଚରିତ୍ର, ଐତିହାସିକ ଚିତ୍ର କିମ୍ବା ଭୌଗଳିକ ଚିତ୍ର ଦେଖିବାକୁ ମିଳେ, ଯାହା ସାରଳାଙ୍କ ଉତ୍କଳୀୟତାର ଯଥାର୍ଥ ପରିଚୟ ପ୍ରଦାନ କରେ । ସୁତରାଂ ଓଡ଼ିଆତ୍ୱ ପରିପୂର୍ଣ୍ଣ ଏହି ଗ୍ରନ୍ଥ ଏକ ସ୍ୱତନ୍ତ୍ର ମହାଭାରତ ରୂପେ ସମାଲୋଚକମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଥାଏ ।

ସାରଳା ଯେତେବେଳେ ଲେଖନୀ ଧରିଛନ୍ତି, ସେତେବେଳେ ଓଡ଼ିଆ ଭାଷାର ଶୈଶବାବସ୍ଥା । ସଂସ୍କୃତ ସାହିତ୍ୟର ଅଖଣ୍ଡ ରାଜତ୍ୱ, ସମ୍ମୁଖରେ ଆଦର୍ଶର ଅଭାବ,

ପ୍ରାନ୍ତୀୟ ଭାଷାରେ ଗ୍ରନ୍ଥ ଲେଖିବା ଏକ ଅପରାଧ ମୂଳକ କାର୍ଯ୍ୟଭାବେ ବିବେଚିତ ଏବଂ ପ୍ରାନ୍ତୀୟ ସାହିତ୍ୟରେ ଲେଖନୀ ଚଳାଇ ସଂସ୍କୃତ ସାହିତ୍ୟର ମୁକାବିଲ କରିବାକୁ ସାହାସର ସହିତ ଆଗେଇ ଆସିବା ନିମନ୍ତେ ପ୍ରତିଭାର ଅଭାବ—ଏହିପରି ଏକ ସନ୍ଧିକ୍ଷଣରେ ସ୍ୱମାତୃଭାଷାର ଗୌରବ ପ୍ରତିଷ୍ଠା ନିମନ୍ତେ କଥିତ ଭାଷାରେ ବିଶାଳକାୟ ମହାଭାରତ ରଚନା ସାରଳାଙ୍କ ଅପୂର୍ବ ଜାତୀୟତାର ଏକ ଜ୍ୱଳନ୍ତ ସ୍ୱାକ୍ଷର ବହନ କରେ ।

ନିଜ ଦେଶମାଟି ଓଡ଼ିଶା ପ୍ରତି କବିଙ୍କ ମମତା ଖୁବ୍ ନିବିଡ଼ । ଏଣୁ ଓଡ଼ିଶାକୁ ଦେଶବାସୀଙ୍କ ସମକ୍ଷରେ ଭାରତର ଅନ୍ୟାନ୍ୟ ପୌରାଣିକ ରାଜ୍ୟ ଭଳି ପୂତ ଓ ପବିତ୍ର କରି ଠିଆ କରାଇବା ନିମନ୍ତେ ସେ ସୌରାଷ୍ଟ୍ରର ଶ୍ରୀକୃଷ୍ଣଙ୍କୁ ଆଣି ସଂଯୁକ୍ତ କରିଅଛନ୍ତି ପୁରୀର ଜଗନ୍ନାଥଙ୍କ ସହିତ । ମହାଭାରତର ବିଭିନ୍ନ ସ୍ଥଳରେ ନୀଳାଚଳ ବିହାରୀ ଜଗନ୍ନାଥଙ୍କ ପ୍ରସଙ୍ଗ ଦେଖିବାକୁ ମିଳେ । ଗ୍ରନ୍ଥ ରଚନା ସମୟରେ କବି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ସ୍ମୃତିରେ ଜାଗ୍ରତ ରଖିବାକୁ କଦାପି ଭୁଲି ନାହାନ୍ତି । କାରଣ ଯେଉଁଠି ଯେଉଁ ଦେବତାଙ୍କର ସ୍ତବ ଆରମ୍ଭ କରିଛନ୍ତି, ସେଠାରେ ସେ ଏହି ଆରାଧ୍ୟ ଦେବତାଙ୍କ ଅବସ୍ଥାନର କ୍ରମ ଶ୍ରୀଜଗନ୍ନାଥ ମନ୍ଦିରାନ୍ତର୍ଗତ ଅବସ୍ଥିତି ଅନୁସାରେ ନିର୍ଦ୍ଧାରଣ କରିଛନ୍ତି । ଉଦାହରଣସ୍ୱରୂପ ବିରାଟ ପର୍ବ ଆରମ୍ଭରେ ଗଣେଶଙ୍କୁ ସ୍ତୁତି କରି କବି ତାଙ୍କର ଦକ୍ଷିଣ ଦ୍ୱାରାବସ୍ଥିତିକୁ ପ୍ରକାଶ କରିଛନ୍ତି, ଯାହା ଜଗନ୍ନାଥ ମନ୍ଦିରରେ ଥିବା ଗଣେଶଙ୍କ ଅବସ୍ଥିତି ସହ ସମତା ରକ୍ଷାକରେ । ଉଦ୍‌ଯୋଗ ପର୍ବରେ ସୁଦେଷ୍ଣା ପରବର୍ତ୍ତୀ କାଳରେ ଇନ୍ଦ୍ରଦ୍ୟୁମ୍ନରାଜାଙ୍କ ମହିଷୀ ଗୁଣ୍ଡିଚା ରୂପେ ଜନ୍ମ ଗ୍ରହଣ କରିବା ପ୍ରସଙ୍ଗରେ କବି ଜଗନ୍ନାଥଙ୍କ ପୃଥିବୀ ବିଖ୍ୟାତ ଗୁଣ୍ଡିଚା ଯାତ୍ରାର ବର୍ଣ୍ଣନା ଦେଇଛନ୍ତି । ଦାରୁମୂର୍ତ୍ତି ପ୍ରତିଷ୍ଠା ହେବାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଜଗନ୍ନାଥଙ୍କ ସମ୍ବନ୍ଧୀୟ ବିଭିନ୍ନ ଉପାଖ୍ୟାନ ଓ ଇତିହାସରେ ଓଡ଼ିଆ ମହାଭାରତ ସମୃଦ୍ଧିବନ୍ତ ଏବଂ ଜାତୀୟତାରେ ଉଦ୍ଦୀପିତ ହୋଇ ଉଠିଅଛି ।

ବନବାସ ସମୟରେ ପାଣ୍ଡବମାନଙ୍କୁ ତୀର୍ଥଯାତ୍ରୀ କରି ସାରଳା ଦାସ ବୁଲାଇଛନ୍ତି ଓଡ଼ିଶାର ବଶିଷ୍ଟ ତୀର୍ଥମାନଙ୍କରେ । ଅଜ୍ଞାତ ବନବାସ ସମୟରେ ପାଣ୍ଡବମାନେ ବୁଲି ବୁଲି ଆସି ପହଞ୍ଚିଛନ୍ତି ଏକାମ୍ର ତୀର୍ଥରେ । ବିନ୍ଦୁସାଗର ତୀର୍ଥରେ ସ୍ନାନ କରିବା ପରେ ମାର୍କଣ୍ଡେୟ ଯୁଧିଷ୍ଠିରଙ୍କୁ ଏକାମ୍ର ତୀର୍ଥର ମାହାତ୍ମ୍ୟ ବୁଝାଇଛନ୍ତି । ଏହି ପ୍ରସଙ୍ଗରେ ସେ ଯମେଶ୍ୱର, ସୂକ୍ଷ୍ମେଶ୍ୱର, କେଦାରେଶ୍ୱର, ମୁକ୍ତେଶ୍ୱର, ହିରଣ୍ୟେଶ୍ୱର, ରୁଦ୍ରେଶ୍ୱର, ଭୈରବେଶ୍ୱର ଓ ଇନ୍ଦ୍ରେଶ୍ୱର ପ୍ରଭୃତି ଅଷ୍ଟଶମ୍ଭୁ ବର୍ଣ୍ଣନା ଦେଇଛନ୍ତି ଏବଂ ପରେ କୃତ୍ତିବାସ ଦୈତ୍ୟଙ୍କ କଥା ମଧ୍ୟ ବର୍ଣ୍ଣନ କରିଛନ୍ତି ।

ଏହାପରେ ଯୁଧିଷ୍ଠିର କୋଣାର୍କ ତୀର୍ଥରେ ପହଞ୍ଚିଛନ୍ତି । କବି ଏଠାରେ ଏହି ତୀର୍ଥର ନାମକରଣ ସମ୍ବନ୍ଧରେ ଏକ ଉପାଖ୍ୟାନ ପ୍ରଦାନ କରି ଏହି କ୍ଷେତ୍ରର ମହିମା

ବର୍ଣ୍ଣନ କରିଛନ୍ତି । ଏଠାରେ ପାଞ୍ଚଦିନ ରହିବାପରେ ପାଣ୍ଡବମାନେ ରାମଚଣ୍ଡୀ ଦର୍ଶନ କରିବା ପାଇଁ ଯାଇଛନ୍ତି । ସେଠାରୁ ଶ୍ରୀକ୍ଷେତ୍ର ଯାତ୍ରା କରିଛନ୍ତି । ମାର୍କଣ୍ଡେୟ ଯୁଧିଷ୍ଠିରଙ୍କୁ ମହୋଦଧି, ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ ଇତ୍ୟାଦି ପବିତ୍ର ତୀର୍ଥ-ସ୍ଥାନମାନ ଦେଖାଇଛନ୍ତି । ସେମାନେ ତାପରେ ଶ୍ରୀକ୍ଷେତ୍ରରୁ ଯାଜପୁର ଅଭିମୁଖେ ଯାତ୍ରା କରିଛନ୍ତି । ମହାଭାରତର ଅନେକ ବର୍ଣ୍ଣନାରେ ଯାଜପୁର ତୀର୍ଥ କ୍ଷେତ୍ରର ମାହାତ୍ମ୍ୟ ବିଶଦ ଭାବରେ ଦିଆଯାଇଛି । ସ୍ୱର୍ଗାରୋହଣ ପର୍ବରେ ହସ୍ତିନାପୁରକୁ ସମ୍ପୂର୍ଣ୍ଣ ରୂପେ ଭୁଲି ଯାଇଥିଲି ଭଳି ମନେହୁଏ । କାରଣ ଏହି ପର୍ବରେ ସେ ପାଣ୍ଡବମାନଙ୍କୁ ଓଡ଼ିଶାର ତୀର୍ଥମାନଙ୍କରେ ବୁଲାଇଛନ୍ତି ଏବଂ ଯାଜପୁରର ହରିସାହୁର କନ୍ୟା ସୁହାଣୀ ସହିତ ଯୁଧିଷ୍ଠିରଙ୍କୁ ବୈବାହିକ ବନ୍ଧନରେ ବାନ୍ଧି ଦେଇଛନ୍ତି । ଏହି ଅବସରରେ ସେମାନଙ୍କୁ ସେ ସେଠାରେ ଦୀର୍ଘ ପଞ୍ଚତ୍ରିଂଶ ବର୍ଷ ସାଧାରଣ ଓଡ଼ିଆ ଭାବରେ ରଖାଇଛନ୍ତି ।

ସାରଳା ମହାଭାରତରେ ଅନେକ ନଦନଦୀ ଓ ପର୍ବତର ବର୍ଣ୍ଣନା ରହିଛି, ଯାହା ତତ୍‌କାଳୀନ ଓଡ଼ିଶାରେ ଥିଲି ଏବଂ ବର୍ତ୍ତମାନ ମଧ୍ୟ ରହିଛି । ଏପରି ବର୍ଣ୍ଣନା ପଛରେ କବିଙ୍କ ସ୍ୱଦେଶ ପ୍ରୀତି ବିଦ୍ୟମାନ । ଓଡ଼ିଶାର ନଦୀମାନଙ୍କ ମଧ୍ୟରେ କବି ମହାନଦୀ, ଦେବୀନଦୀ, ଖରସୁଆଁ, ପ୍ରାଚୀ, ବ୍ରାହ୍ମଣୀ, ବୈତରଣୀ, ଚିତ୍ରୋତ୍ପଳା, ସୁବର୍ଣ୍ଣରେଖା, ଗନ୍ଧବତୀ ( ସମ୍ଭବତଃ ଭୁବନେଶ୍ୱର ନିକଟବର୍ତ୍ତୀ ଗଙ୍ଗୁଆ ନଦୀ ), କୁଶଭଦ୍ରା, ବଳାଙ୍ଗୀ, ଋଷିକୁଲ୍ୟା ପ୍ରଭୃତିର ନାମ ବିଭିନ୍ନ ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି । ବିଭିନ୍ନ ବର୍ଣ୍ଣନା ପ୍ରସଙ୍ଗରେ ଓଡ଼ିଶାର ଯେଉଁ ପର୍ବତଗୁଡ଼ିକର ନାମୋଲ୍ଲେଖ ରହିଛି, ସେଗୁଡ଼ିକ ମଧ୍ୟରେ କପିଳାସ, ଧବଳୀ, ଖଣ୍ଡଗିରି, ଉଦୟଗିରି, ମଣିନାଗ, ମହେନ୍ଦ୍ର, ନୀଳଗିରି, ବାଙ୍କୀର ମହାପର୍ବତ ଇତ୍ୟାଦି ପ୍ରଧାନ ।

ମଧ୍ୟ ପର୍ବରେ ଭୀମ, ଅର୍ଜୁନ ପ୍ରମୁଖ ପାଣ୍ଡବଙ୍କ ଦିଗ୍‌ବିଜୟ କାଳରେ ଯେଉଁ ଯେଉଁ ରାଜ୍ୟକୁ ସେମାନେ ନିଜ ଅଧୀନସ୍ଥ କରିଥିଲେ, ଇତିହାସରୁ ଜଣାଯାଏ ଯେ ସେହି ରାଜ୍ୟକୁ ଅନେକ ପ୍ରବଳ ପ୍ରତାପୀ ସୂର୍ଯ୍ୟବଂଶୀ ସମ୍ରାଟ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର କପିଳେନ୍ଦ୍ର ଦେବ ଜୟ କରିଥିଲେ । ଚଣ୍ଡୀ ପୁରାଣ ଓ ମହାଭାରତରେ ବର୍ଣ୍ଣିତ କପିଳ ସିଂହ ତଥା ମହାପ୍ରତାପୀ ଓଡ଼ିଆ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ନାମାନୁସାରେ କବି ଗ୍ରହଣ କରିଥିବାର ଅନୁମାନ କେତେକ ଆଲୋଚକ କରୁଥିବାରୁ ସାରଳାଙ୍କ ସ୍ୱଦେଶପ୍ରୀତିର ତୀବ୍ରତା ବୃଦ୍ଧି ପାଇଛି । ମୂଳ ମହାଭାରତରେ ଯୁଦ୍ଧ ବର୍ଣ୍ଣନା ଥିଲେ ହେଁ ସାରଳା ଦାସ ଏ ଦିଗରେ ଅଧିକ ପାର-ଦର୍ଶିତା ଦେଖାଇଛନ୍ତି । ସେ ଜାତୀୟ ଭାବରେ ଅନୁପ୍ରାଣିତ ହୋଇ ସେ ସମୟର ରଣୋନ୍ମତ୍ତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ଯଥାର୍ଥ ପରିଚୟ ଏହି ବର୍ଣ୍ଣନା ମାଧ୍ୟମରେ ପ୍ରଦର୍ଶନ କରିଛନ୍ତି ।

ବିରାଟ ପର୍ବରେ ତ୍ରିକାଳ ତତ୍ତ୍ୱଦର୍ଶୀ ସୁରାସୁର-ପୂଜ୍ୟପାଦ ଭରଦ୍ୱାଜ ମହର୍ଷିଙ୍କୁ କବି ଉତ୍କଳ ନିବାସୀ ବୋଲି ସୂଚନା ଦେଇଛନ୍ତି । ଭରଦ୍ୱାଜଙ୍କ ଆଶ୍ରମ ଚିତ୍ରକୂଟଠାରୁ ଦଶକୋଶ ଦୂରରେ ଅବସ୍ଥିତ ଥିବାର ଜଣାଯାଏ । ତେବେ ପ୍ରଶ୍ନ ଉଠେ ତାଙ୍କୁ କବି କାହିଁକି ଉତ୍କଳକୁ ଟାଣି ଆଣିଲେ ? ଏହାର ଉତ୍ତରରେ କୁହାଯାଇପାରେ, କବି ବୋଧ-ହୁଏ ମନେ କରିଥିଲେ ଯେ ଉତ୍କଳ ଭୂମି ହେଉଛି ଅତ୍ୟନ୍ତ ପବିତ୍ର ସ୍ଥାନ, ଯାହା ମୁନି ଋଷିମାନଙ୍କ ବାସସ୍ଥାନ ନିମନ୍ତେ ଏକାନ୍ତ ଉପଯୋଗୀ । ଏପରି ବର୍ଣ୍ଣନା ଦେବାର ଅନ୍ତରାଳରେ କବିଙ୍କ ସ୍ୱମାତୃଭୂମିର ମହତ୍ତ୍ୱ ପ୍ରଦର୍ଶନ କରିବା ଉଦ୍ଦେଶ୍ୟ ନିହିତ ।

ସାରଳା ମହାଭାରତର ବିଭିନ୍ନ ସ୍ଥାନରେ ଓଡ଼ିଶା ବା ଓଡ଼ିରାଷ୍ଟ୍ର ସମ୍ବନ୍ଧୀୟ ଆଲୋଚନା ପରିଦୃଷ୍ଟ ହୁଏ । ଓଡ଼ିଶା ରାଜ୍ୟର ଉତ୍ପତ୍ତି ସମ୍ପର୍କରେ ଆଦିପର୍ବରେ ଯେଉଁ କାଳ୍ପନିକ ବିବରଣୀ କବି ଦେଇଅଛନ୍ତି, ତାହା ତାଙ୍କ ଜାତୀୟତାର ସୂଚନା ଦିଏ । ନିଜ ଗ୍ରନ୍ଥରେ କବି ଓଡ଼ିଶାକୁ କେବଳ ଓଡ଼ିରାଷ୍ଟ୍ର ବୋଲି କହି ନାହାନ୍ତି, ଏହାର ନାମାନ୍ତର ସ୍ୱରୂପ ଓଡ଼ାଦିନଗ୍ର, ଓଡ଼ଙ୍ଗ, ଜୁଡ଼ଙ୍ଗ ପ୍ରଭୃତି ଶବ୍ଦ ବ୍ୟବହାର କରିଛନ୍ତି ।

ଜତୁଗୃହ ଦାହ ପରେ ପାଣ୍ଡବମାନେ ନିରୁଦ୍ଦିଷ୍ଟ ଜୀବନ ଯାପନ କରୁଥିବା କାଳରେ ଭୀମ ଶିବପୁରରେ ରାଜା ରୂପେ ଅଭିଷିକ୍ତ ହୋଇଛନ୍ତି । ତା ପରେ ସେ ବିଷ୍ଣୁକର ପଣ୍ଡାଙ୍କୁ ସେଠାରେ ରାଜା କରିଛନ୍ତି । ଏହିଠାରୁ ଐତିହାସିକ କର ବଂଶର ସୃଷ୍ଟି ହୋଇଥିବା ଅନୁମିତ ହୁଏ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ଏହି ବିଷ୍ଣୁକର ପଣ୍ଡାଙ୍କୁ ଆମେ ଦକ୍ଷିଣ ଭାରତର ଜଣେ ବହୁମାନ୍ୟ ରାଜନ୍ୟ ଅତିଥି ରୂପେ ଦେଖିବାକୁ ପାଉ । ପୁନଶ୍ଚ କର୍ଣ୍ଣକେଶରୀ ରାଜାଙ୍କ ନାମାନୁସାରେ କନକା ରାଜ୍ୟର ନାମକରଣ ହୋଇଥିବାର ବର୍ଣ୍ଣନା ବିରାଟ ପର୍ବରେ ଦେଖିବାକୁ ମିଳେ । ଦ୍ରୌପଦୀ ସ୍ୱୟମ୍ବରରେ ଯାଜପୁର ରାଜାଙ୍କ ଉପସ୍ଥିତି ସୂଚାଇବା ଫଳରେ କବି ଜାତୀୟତାଭାବରେ ଉଦ୍‌ବୁଦ୍ଧ ହୋଇଥିବାର ଜଣାଯାଏ ।

ସାରଳା ମହାଭାରତରେ ବର୍ଣ୍ଣିତ ଚରିତ୍ର-ଚିତ୍ରଶାଳା କବିଙ୍କ ଜାତୀୟତାର ଅନ୍ୟ ଏକ ପ୍ରମାଣ । ପ୍ରତ୍ୟେକ ଚରିତ୍ରକୁ ବିଶ୍ଳେଷଣ କଲେ ଆମେ ରକ୍ତ-ମାଂସଧାରୀ ଜଣେ ଜଣେ ବିଶେଷ ଶ୍ରେଣୀର ଉତ୍କଳୀୟର ସାକ୍ଷାତ ପାଇଥାଉଁ । ତାଙ୍କ ବର୍ଣ୍ଣିତ ଦେବଦେବୀ ଏବଂ ଅଭିଜାତ ଚରିତ୍ରଗଣ ଉତ୍କଳର ସାଧାରଣ ଗ୍ରାମବାସୀଙ୍କ ଭଳି ସରଳ । ଏମାନଙ୍କଠାରେ ଓଡ଼ିଆମି ଏତେ ତୀବ୍ର ଯେ ଆମକୁ ଜଣାଯାଏ, ସତେ ଯେପରି ସେମାନେ ଆମ ସମାଜର ଜଣେ ଜଣେ ସଭ୍ୟ । ଭୀମ ଚରିତ୍ରରେ ତତ୍କାଳୀନ ସମାଜର କୌଣସି ଜଣେ ହୁଙ୍କାପିଟା, ଫୁଲଫାଙ୍କିଆ ଓ ନିଷ୍କପଟ ଉତ୍କଳୀୟ ଚରିତ୍ରର ପ୍ରତିଫଳନ ଦେଖିବାକୁ ମିଳେ । ସମକାଳୀନ ଜନୈକ ଉତ୍କଳୀୟ ଆଦର୍ଶ ପୁରୁଷଙ୍କୁ

ଲକ୍ଷ୍ୟରେ ରଖି ସେ ଯୁଧିଷ୍ଠିରଙ୍କ ଚରିତ୍ର ଫୁଟାଇଛନ୍ତି । ପରମ ପୂଜ୍ୟ ଶ୍ରୀକୃଷ୍ଣଙ୍କୁ ଅତି କାମୁକ ଓ କୁଚକ୍ରୀ ଭାବେ ସେ ଚିତ୍ରଣ କରି ସେ ସମୟର ଅନୁରୂପ କୌଣସି ଜଣେ ଉତ୍କଳୀୟର ପରିଚୟ ପ୍ରଦାନ କରିଛନ୍ତି । ପୁନଶ୍ଚ ଗଙ୍ଗାଙ୍କ ଚରିତ୍ରରେ ଫୁଟି ଉଠିଛି ସମସାମୟିକ କୌଣସି ଜଣେ ଉଗ୍ର ସ୍ୱଭାବ ସମ୍ପନ୍ନା ଉତ୍କଳୀୟ ଗ୍ରାମ୍ୟ ନାରୀର ଉଚ୍ଛୃଙ୍ଖଳତା ଓ ସ୍ୱେଚ୍ଛାଚାରିତା ।

ସାରଳା ଦାସ ଆଲୋଚ୍ୟ ଗ୍ରନ୍ଥରେ ଯେଉଁ ସମାଜର ଚିତ୍ର ଦେଇଛନ୍ତି ତାହା ହେଉଛି ଏକ ଖାଣ୍ଟି ଓଡ଼ିଆ ସମାଜ । ତତ୍କାଳୀନ ଉତ୍କଳୀୟ ସମାଜରେ ପ୍ରଚଳିତ ରୀତିନୀତି, ଚାଲିଚଳନ, ପର୍ବପର୍ବାଣି, ବିବାହ ବିଧି, ଭୂମି ଓ ରାଜସ୍ୱବିଧି, ନୌବାଣିଜ୍ୟ, ଖାଦ୍ୟ ଓ ପାକପ୍ରଣାଳୀ, କୃଷି ଓ କୃଷକ, ଶିକ୍ଷା ପଦ୍ଧତି, ଯୁଦ୍ଧ ଅଭିଯାନ ପ୍ରଭୃତିର ସୁସ୍ପଷ୍ଟ ଚିତ୍ର ଆମେ ମହାଭାରତରେ ବିଭିନ୍ନ ପ୍ରସଙ୍ଗ ବର୍ଣ୍ଣନାରେ ଦେଖିବାକୁ ପାଉ ।

ଆଲୋଚିତ ଗ୍ରନ୍ଥରେ ରାଶି ରାଶି ନୀତିକଥା, ପ୍ରବଚନ, ଲୋକବିଶ୍ୱାସ ଓ ଉପାଖ୍ୟାନ ଆଦିର ବର୍ଣ୍ଣନା ଦେଖିବାକୁ ମିଳେ । ସେଥିମଧ୍ୟରୁ କେତେକ ପୂର୍ବରୁ ପ୍ରଚଳିତ ଏବଂ କେତେକ କଳ୍ପନାପ୍ରିୟ କବିଙ୍କ କଳ୍ପନା-ପ୍ରସୂତ । ଓଡ଼ିଆ ସମାଜରେ ବହୁକଥିତ ଓ ବହୁପ୍ରଚଳିତ ପ୍ରବଚନ, ନୀତିକଥା ଓ ଲୋକବିଶ୍ୱାସକୁ ସ୍ୱଗ୍ରନ୍ଥରେ ସ୍ଥାନ ଦେବା ପଛରେ କବିଙ୍କ ଜାତୀୟତା ବିଦ୍ୟମାନ ।

କବି କିପରି ଓଡ଼ିଶାକୁ ମହାଭାରତର ପୃଷ୍ଠଭୂମି ଭାବେ ଗ୍ରହଣ କରି ଏ ବିଶାଳ ଗ୍ରନ୍ଥ ରଚନା କରିଛନ୍ତି, ତା'ର ଆଭାସ ଦେଇ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି— "ସାରଳା ମହାଭାରତ ପଢ଼ିଲେ ଜଣାଯାଏ ଯେ, କବି ମୂଳ ମହାଭାରତକୁ ଅନୁସରଣ କରି ପ୍ରଥମେ କୌରବ ଓ ପାଣ୍ଡବମାନଙ୍କୁ ଉତ୍ତର ଭାରତସ୍ଥ କୁରୁପ୍ରଦେଶର ଲୋକ ବୋଲି ବର୍ଣ୍ଣନା କରିଛନ୍ତି, କିନ୍ତୁ ଗ୍ରନ୍ଥ ଲେଖାରେ ଯେତିକି ବେଶୀ ଅଗ୍ରସର ହୋଇଛନ୍ତି, ସେତିକି ବେଶୀ ସେ ମହାଭାରତର ଏହି ମୌଳିକ କଥାଟି ଭୁଲି ଯାଇଛନ୍ତି । ଉତ୍କଳର ନଦୀନଦୀ, ଗିରିବନ, ନଗର, ଜନପଦ, ଗଳ୍ପ ପୁରାଣ, ଇତିହାସ କିମ୍ବଦନ୍ତୀ, ବାରବ୍ରତ, ଧର୍ମ ଧାରଣା, ଜ୍ଞାନ ବିଜ୍ଞାନ, ବେଶଭୂଷା, ଖେଳକୌତୁକ, ଆଚାର ବ୍ୟବହାର ଇତ୍ୟାଦିର ଗୋଟିଏ ବିପୁଳ ଜ୍ଞାନଭଣ୍ଡାର କବିଙ୍କ ମସ୍ତିଷ୍କରେ ପୂରି ରହିଥିଲା । ଏହି ଜ୍ଞାନଭଣ୍ଡାରର ସଦ୍‌ ବ୍ୟବହାର କରିବାକୁ ଯାଇ ସେ ଉତ୍କଳ ଦେଶର ପୃଷ୍ଠଭୂମିକାରେ ହିଁ ମହାଭାରତର ଆଖ୍ୟାୟିକାମାନ ଅଙ୍କନ କରିଯାଇଛନ୍ତି । ତାଙ୍କ ମହାଭାରତ ପଢ଼ିସାରିବା ପରେ ଧାରଣା ହୁଏ ଯେ କୌରବ ଓ ପାଣ୍ଡବମାନେ ଏହି ଓଡ଼ିଶା ଦେଶରେ ହିଁ ବଢ଼ିଥିଲେ, ଏହି ଦେଶର ବେଶଭୂଷାରେ ଆଚ୍ଛାଦିତ ହୋଇ ଏହି ଦେଶର ଅସ୍ତ୍ରଶସ୍ତ୍ର ଶିକ୍ଷା କରିଥିଲେ । ସେମାନେ ଏହି ଦେଶର ଝିମିଟି ଖେଳ ଖେଳିଥିଲେ, ଏହି ଦେଶରେ ପାଣ୍ଡବମାନେ ବନବାସ କରିଥିଲେ, ଏହି ଦେଶରେ

ବିରାଟ ଗଡ଼ ଥିଲା, ଏହି ଦେଶରେ କୀଚକ ଗଡ଼ ଥିଲା, ଏହି ଦେଶର ବନପର୍ବତ ଇତ୍ୟାଦିରେ ପାଣ୍ଡବମାନେ ବୁଲିଥିଲେ, ଏହି ଦେଶର ଦେବତାମାନଙ୍କୁ ପୂଜା କରିଥିଲେ, ସେମାନେ ଏହି ଦେଶରେ ହିଁ ଅଶ୍ୱମେଧ ଯଜ୍ଞ କରିଥିଲେ, ସେମାନଙ୍କ ଅଶ୍ୱ ଏହି ଦେଶରେ ହିଁ ପ୍ରଥମେ ଘୂରି ବୁଲିଥିଲା, ଏହି ଦେଶରେ ହିଁ ମୂଳ ମହାଭାରତ ବର୍ଣ୍ଣିତ ପଞ୍ଚ କଟକ ଅବସ୍ଥିତ ଥିଲା, ଏହି ଦେଶର ଯଯନ ନଗରୀରେ ହିଁ ଏକମାତ୍ର କୁଳାଙ୍କୁର ପରୀକ୍ଷିତଙ୍କୁ ରାଜା କରି ଏହି ଦେଶର ତୀର୍ଥମାନ ଭ୍ରମଣ କରି ସେମାନେ ସ୍ୱର୍ଗାରୋହଣ ପାଇଁ ମହାଯାତ୍ରା କରିଥିଲେ ଓ ଏହି ଦେଶରେ ହିଁ ଜନ୍ମେଜୟ ପିତାଶତ୍ରୁ ସର୍ପବଂଶକୁ ଧ୍ୱଂସ କରିବା ପାଇଁ ସର୍ପ ଯଜ୍ଞ କରିଥିଲେ ।" ❊

ସାରଳା ଦାସ ଓଡ଼ିଶାର କବି । ସୁତରାଂ ସେ ଓଡ଼ିଶାକୁ ଓ ଓଡ଼ିଆଙ୍କୁ ଯେଉଁଭଳି ଭାବରେ ଦେଖିଛନ୍ତି ସେହିଭଳି ଭାବରେ ମହାଭାରତ କ୍ଷେତ୍ର ପ୍ରସ୍ତୁତ କରିଛନ୍ତି ଏବଂ ସେଥି ସହିତ ସମ୍ପୃକ୍ତ ଚରିତ୍ରଗୁଡ଼ିକ ଚୟନ କରିଛନ୍ତି । ମହାଭାରତର ଏପରି କୌଣସି ଦିଗ ନାହିଁ, ଯେଉଁଥିରେ ସାରଳାଙ୍କ ଜାତୀୟତାର ଛାପ ଦେଖିବାକୁ ମିଳେ ନାହିଁ । ତାଙ୍କ ସ୍ୱଦେଶପ୍ରୀତି ଆଜି ମଧ୍ୟ ଜାତୀୟତାରେ ଉଦ୍‌ବୁଦ୍ଧ ଯେ କୌଣସି ସ୍ୱାଧୀନ ନାଗରିକକୁ ବିସ୍ମୟାଭିଭୂତ କରେ ।

---

❊ ସାରଳା ସ୍ମରଣିକା (୧୯୫୦)— ପୃ. ୨୨-୨୩

# ଚଣ୍ଡୀ ପୁରାଣ

"ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିଶୁ ଭାଗବତ ।"*

କବି ସାରଳା ଦାସଙ୍କ ଉପରୋକ୍ତ ସ୍ୱୀକାରୋକ୍ତିରୁ ଜଣାଯାଏ ଯେ ସେ ପ୍ରଥମେ ଶ୍ରୀ ରାମାୟଣ ଅର୍ଥାତ୍ ବିଲଙ୍କା ରାମାୟଣ, ଦ୍ୱିତୀୟରେ ଭାରତ ଅର୍ଥାତ୍ ମହାଭାରତ ଏବଂ ତୃତୀୟରେ ଶିଶୁ ଭାଗବତ ଅର୍ଥାତ୍ ଚଣ୍ଡୀ ଭାଗବତ ଅଥବା ଚଣ୍ଡୀ ପୁରାଣ ରଚନା କରିଥିଲେ । ଏହି ଚଣ୍ଡୀ ପୁରାଣ ମଧ୍ୟରେ କବି ଏହି ଗ୍ରନ୍ଥକୁ 'ଶ୍ରୀ ଭାଗବତ' ବୋଲି ଅନେକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ଯେପରି—

"କହେ ଶୁକମୁନି ଶୁଣ ପରୀକ୍ଷିତ ରାୟେ
ଶ୍ରୀ ଭାଗବତ ଶୁଣିଣ ପାପ କରି କ୍ଷୟେ ।" (ପୃ. ୪୦)

ଚଣ୍ଡୀ ପୁରାଣ ପାଠ କରିବା ସମୟରେ ଏହା ଏକ ମୌଳିକ ଗ୍ରନ୍ଥଭାବେ ପ୍ରତୀତ ହୁଏ । ଏହା ସଂସ୍କୃତ 'ସପ୍ତସତୀ ଚଣ୍ଡୀ' ଶ୍ରୀ ଦେବୀ ଭାଗବତ'ର ଅନୁବାଦ ନୁହେଁ । ସ୍ଥୂଳତଃ ସଂସ୍କୃତ ପୁରାଣରେ ବର୍ଣ୍ଣିତ— ଦେବୀଙ୍କ ହସ୍ତରେ ମହିଷାସୁରର ନିଧନ, ଚଣ୍ଡୀପୁରାଣର ଉପଜୀବ୍ୟ ବିଷୟବସ୍ତୁ ହୋଇଥିଲେ ହେଁ ଏଥିରେ କବିଙ୍କ ଅପୂର୍ବ କଳ୍ପନା-ବିଳାସ, ଚରିତ୍ରଚିତ୍ରଣ, ନାମକରଣ ଆଦି କେତେକ ମୌଳିକତା ଓ ସ୍ୱକୀୟତା ସନ୍ନିବେଶିତ, ଯାହା ଏହାକୁ ଏକ ସ୍ୱତନ୍ତ୍ର ଗ୍ରନ୍ଥର ମର୍ଯ୍ୟାଦା ଦିଏ ।

କବିଙ୍କ ଅନ୍ୟାନ୍ୟ ଗ୍ରନ୍ଥଭଳି ଏ ଗ୍ରନ୍ଥଟି ମଧ୍ୟ 'ଦାଣ୍ଡିବୃତ୍ତ'ରେ ରଚିତ ; ମାତ୍ର ବର୍ତ୍ତମାନ ଆମେ ଏହାର ଯେଉଁ ମୁଦ୍ରିତ ରୂପ ଦେଖୁ, ଏଥିରେ ସାରଳାଙ୍କ ଦାଣ୍ଡିବୃତ୍ତର ସ୍ୱରୂପ ଅକ୍ଷୁଣ୍ଣ ରହି ନାହିଁ । ପରବର୍ତ୍ତୀ କାଳରେ, ମୁଦ୍ରିତ ହେବା

---

* ଓଡ଼ିଶା ଜଗନ୍ନାଥ କମ୍ପାନୀ କର୍ତ୍ତୃକ ପ୍ରକାଶିତ ଚଣ୍ଡୀ ପୁରାଣ (୧୯୭୨)—ପୃ. ୩୬ ଏହି ଆଲୋଚନାରେ ବ୍ୟବହୃତ ଉଦ୍ଧୃତାଂଶଗୁଡ଼ିକ ଉପରୋକ୍ତ ଗ୍ରନ୍ଥରୁ ଗୃହୀତ ।

ପୂର୍ବରୁ ଏହାକୁ ଭାଙ୍ଗି ଚଉଦ ଅକ୍ଷରୀ ବୃତ୍ତରେ ପରିବର୍ତ୍ତିତ କରାଯାଇଛି । (ବିଶେଷ ଆଲୋଚନା ନିମିତ୍ତ 'ଦାଣ୍ଡି ବୃତ୍ତ' ପରିଚ୍ଛେଦ ଦ୍ରଷ୍ଟବ୍ୟ)

ଗ୍ରନ୍ଥର ଆରମ୍ଭରେ କବି ଗଣନାଥ, ବିଷ୍ଣୁ ଓ ଦୁର୍ଗାଙ୍କୁ ବନ୍ଦନା କରିଛନ୍ତି । ପରମ ଶାକ୍ତ ହେଲେ ମଧ୍ୟ ମହାଭାରତ ଓ ବିଲଙ୍କା ରାମାୟଣ ଭଳି ଏ ଗ୍ରନ୍ଥରେ ଶକ୍ତି ଭିନ୍ନ ଅନ୍ୟ ଦେବଦେବୀଙ୍କୁ ସ୍ତୁତି ଜଣାଇ ସେ ଆଧ୍ୟାତ୍ମିକ କ୍ଷେତ୍ରରେ ଚରମ ଉଦାରତା ପ୍ରଦର୍ଶନ କରିଛନ୍ତି । ଏହା ସତ୍ତ୍ୱେ ଏ ଗ୍ରନ୍ଥର ପଦେ ପଦେ ଶକ୍ତି ଉପାସନାର ପ୍ରାଧାନ୍ୟ ପ୍ରମାଣିତ । ସାରଳା ଦେବୀଙ୍କ କୃପାରୁ ଏ ଗ୍ରନ୍ଥ ସେ ଲେଖିବାକୁ ସମର୍ଥ ହୋଇଛନ୍ତି ଓ ସେ ଦେବୀ ଯାହା ରାତିରେ ସ୍ୱପ୍ନରେ କହନ୍ତି, ତାହା ସେ ପ୍ରଭାତରେ ନିଜ ଗ୍ରନ୍ଥରେ ଲେଖନ୍ତି ବୋଲି ବାରମ୍ବାର କହିଛନ୍ତି ।

> "ଶ୍ରୀଚଣ୍ଡୀ ଶାରଳା ଦେବୀ କହେ ଯାହା ନିତ୍ୟେ
> ମୁହିଁ ତାହା ଲେଖିଯାଏ ଜଗଜ୍ଜନ ହିତେ ।
>
> × × ×
>
> ଆହେ ବୁଧଜନେ ମୋତେ ସେ ଯାହା କହଇ
> ଅରୁଣ ଉଦୟ କାଳେ ତାହା ମୁଁ ଲେଖଇ ।" (ପୃ-୫)

ଆଲୋଚ୍ୟ ଗ୍ରନ୍ଥରେ ଶତ ଶତ ଦେବୀଙ୍କର ନାମ ପ୍ରଦାନ କରିଛନ୍ତି । ପୃଷ୍ଠା ପୃଷ୍ଠା ବ୍ୟାପୀ ଏହି ତାଲିକାରେ ଏପରି କେତେକ ଦେବୀଙ୍କ ନାମ ପ୍ରଦତ୍ତ ହୋଇଛି, ଯେଉଁମାନଙ୍କର ସ୍ଥିତି କୌଣସି କାଳରେ ଥିବାର ଜଣାଯାଏ ନାହିଁ । ଶତ ଶତ ଦେବୀଙ୍କ ନାମୋଲ୍ଲେଖ କରିବା ପରେ କବି ହୁଏତ କ୍ଲାନ୍ତି ବୋଧ କରିଛନ୍ତି ଏବଂ ଆହୁରି ଅଧିକ ଦେବୀଙ୍କ ନାମ ପ୍ରଦାନ ନିମନ୍ତେ ତାଙ୍କ କଳ୍ପନା-ଶକ୍ତି ହାରି ମାନିଛି । ତେଣୁ ସଂକ୍ଷେପରେ ଅସଂଖ୍ୟ ଦେବୀଙ୍କର ନାମକରଣ କରିବାକୁ ଯାଇ ଅତି ଚତୁରତାର ସହିତ କବି କହିଛନ୍ତି—

> "ଅସଂଖ୍ୟ ଅଟଇ ଜାଣ ଦେବୀଙ୍କର ନାମ
> ଏହାଙ୍କ ସଂକ୍ଷେପି କହିବାକୁ ମୁହିଁ କ୍ଷମ ।
> ପୃଥ୍ୱୀ ମଧ୍ୟରେ ଅଛନ୍ତି ଯେତେକ ଯୁବତୀ
> ଦେବୀମାନଙ୍କର ନାମ ସେ ବହି ଅଛନ୍ତି ।"
>
> (ପୃ : ୧୨୭)

ଏହିଗୁଡ଼ିକ ସମ୍ଭବତଃ କବିଙ୍କ କାଳ୍ପନିକ ନାମକରଣ ଏବଂ ଏପରି କରିବା ପଛରେ ଶାକ୍ତ ମନୋଭାବ ଓ ଗ୍ରନ୍ଥର ଲୋକପ୍ରିୟତା ବୃଦ୍ଧି କରିବା ଉଦ୍ଦେଶ୍ୟ ନିହିତ, ଏହା କହିବା ବାହୁଲ୍ୟ ମାତ୍ର । ତାଙ୍କର ଅନ୍ୟାନ୍ୟ ରଚନା ଭଳି ଏ ଗ୍ରନ୍ଥ ଚରିତ-ବହୁଳ ଏବଂ ଶକ୍ତି ଉପାସନା-ପ୍ରଧାନ ହୋଇଥିବାରୁ ତତ୍ତ୍ୱପ୍ରତିପାଦନ ପ୍ରତି କବି ଆଦୌ ଦୃଷ୍ଟି

ଦେଇ ନାହାନ୍ତି କହିଲେ ଚଳେ । ପୂର୍ବ ଗ୍ରନ୍ଥମାନଙ୍କ ଭଳି ଅଲୌକିକତାର ପ୍ରାଧାନ୍ୟ ଏଗ୍ରନ୍ଥରେ ମଧ୍ୟ ପରିଦୃଷ୍ଟ ହୁଏ ।

କବି ନିଜର ଜାତିସ୍ମରତ୍ୱ ସମ୍ପର୍କରେ ସୂଚନା ଏ ଗ୍ରନ୍ଥରେ ଦେଇଛନ୍ତି । ନାରାୟଣଙ୍କ ଆଜ୍ଞାରେ ସେ ପ୍ରଥମ ଜନ୍ମରେ କାଳିଦାସ ନାମରେ ଜନ୍ମଗ୍ରହଣ କରି ବିଷ୍ଣୁଲୀଳା ବିସ୍ଥାନ କଲେ । ଦ୍ୱିତୀୟ ଜନ୍ମରେ ମହାକାଳୀ ନାମକ କବି ହୋଇ ଜନ୍ମ ନେଲେ ଏବଂ ତୃତୀୟ ଜନ୍ମରେ ସାରଳା ଦାସ କବି ଭାବେ ଜନ୍ମ ଲାଭ କରି ସାରଳା ଚଣ୍ଡୀଙ୍କ ପ୍ରସାଦରୁ ଗ୍ରନ୍ଥ ରଚନା କରିବାକୁ ସମର୍ଥ ହେଲେ । କବି ମହାଭାରତରେ ମଧ୍ୟ ନିଜ ଜାତିସ୍ମରତ୍ୱ ବିଷୟରେ ସୁ ଆଭାସ ଦେଇଛନ୍ତି; ମାତ୍ର ଏ ଦୁଇ ଗ୍ରନ୍ଥରେ ପ୍ରଦତ୍ତ ବିବରଣୀରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ନିଜର ଗ୍ରନ୍ଥ ଦ୍ୱୟରେ ଏପରି ବୈଷମ୍ୟ ପରିଦୃଷ୍ଟ ହେଉଥିବାରୁ, ଏହି ଅଂଶଗୁଡ଼ିକ ପରବର୍ତ୍ତୀ କାଳରେ ପ୍ରକ୍ଷିପ୍ତ ହୋଇଥିବାର ଅନୁମାନ କରାଯାଏ । ପୋଥି ଲିଖନ କାର୍ଯ୍ୟରେ ବ୍ୟବହୃତ ତାଳପତ୍ର ଦୀର୍ଘସ୍ଥାୟୀ ହୋଇ ନ ଥିବା ଦୃଷ୍ଟିରୁ ପୋଥିଗୁଡ଼ିକୁ ବାରମ୍ବାର ନୂତନ ପତ୍ରରେ ଉତାରିବାର ଆବଶ୍ୟକତା ନିଶ୍ଚୟ ଥିଲା ଏବଂ ଏହି ଉତାରିବା ସମୟରେ ଲିଖନକାରମାନେ କବିଙ୍କର ମହତ୍ତ୍ୱ ଏବଂ ଗ୍ରନ୍ଥର ଲୋକପ୍ରିୟତା ବୃଦ୍ଧି ନିମନ୍ତେ ଏପରି ଅଲୌକିକ କାହାଣୀ ସଂଯୋଜିତ କରି ଦେଇଥିବା ଅନୁମିତ ହୁଏ । ପୁନଶ୍ଚ ପରବର୍ତ୍ତୀ କାଳରେ ଏହିପରି ଅନେକ ବାର ଉତାରିବା କାର୍ଯ୍ୟ ହେବା ଫଳରେ ଏବଂ ବହୁ ସଂଖ୍ୟାରେ ପୋଥି ଲିଖିତ ହୋଇ ପାଠ ହେବା ଫଳରେ ଗୋଟିଏ ପୋଥିର ପାଠ ଅନ୍ୟ ପୋଥିର ପାଠ ସହିତ ସମତା ରକ୍ଷା କରିପାରି ନାହିଁ । ଫଳରେ ଭିନ୍ନ ଭିନ୍ନ ପୋଥିର ପାଠ ଉପରେ ନିର୍ଭର କରି ବିଭିନ୍ନ ପୁରାଣ ପ୍ରକାଶିକା ସଂସ୍ଥା ପୁରାଣ ପ୍ରକାଶ କରିଥିବା ହେତୁ ପାଠରେ ଭିନ୍ନତା ପରିଲକ୍ଷିତ ହୁଏ ।

କବିଙ୍କ ଚମତ୍କାର ବର୍ଣ୍ଣନା ବିଳାସ 'ଚଣ୍ଡୀ ପୁରାଣ'ର ମହତ୍ତ୍ୱ ବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୋଇଅଛି । ଯେ କୌଣସି ବର୍ଣ୍ଣନାରେ ତାଙ୍କ ନୈପୁଣ୍ୟ ପ୍ରତିଫଳିତ । ନାରୀ ରୂପ ବର୍ଣ୍ଣନାରେ କବି କିପରି ସିଦ୍ଧହସ୍ତ ଥିଲେ ତା'ର କେତୋଟି ଦୃଷ୍ଟାନ୍ତ ଦିଆଯାଇପାରେ । ଚଣ୍ଡାଳପୁର ପ୍ରସଙ୍ଗରେ କବି ଅମ୍ବିକା ଚଣ୍ଡାଳର କନ୍ୟା ଅରୁନ୍ଧତୀ ସହିତ ବଶିଷ୍ଠ ଋଷିଙ୍କ ବିବାହ ବର୍ଣ୍ଣନା କରିଛନ୍ତି । କନ୍ୟାକୁ ବେଶ କରି ବେଦୀକୁ ଆଣିବା ସମୟରେ ତା'ର ଶୋଭା ବର୍ଣ୍ଣନା କବି ଏହିପରି କରିଛନ୍ତି—

"କମଳନୟନୀ ମତ୍ତ ମରାଳଗମନୀ
ପିକଭାଷୀ ଚନ୍ଦ୍ରହାସୀ ସୁଘନଜଘନୀ ।
ମଧ୍ୟାସଂକୀର୍ଣ୍ଣ ବିକ୍ରମସିଂହ ତା'ର ଠାଣି
ବିଧୂଳୀ ଅଧରୀ ସେ ପ୍ରେମ ଧରନ୍ତୀ ଶୋଭନୀ ।
ଜାତି ପଦ୍ମିନୀ ତାହାକୁ ନାହିଁ ପଟାନ୍ତର
ବେଶ କରି ଆଣିଦେଲା ବଶିଷ୍ଠ ଆଗର ।" (ପୃ. ୬୨)

ସେହିପରି ଚଣ୍ଡମୁଣ୍ଡ ମହିଷାସୁର ନିକଟରେ ଦେବୀ ଦୁର୍ଗାଙ୍କର ଏହିପରି ଭାବରେ ଶୋଭା ବର୍ଣ୍ଣନା କରିଛନ୍ତି -

"ଆରକ୍ତ ନୟନୀ ବାମା କୁଟିଳା ତା ଦୃଷ୍ଟି
ବଙ୍କ ନୟନେ ଚାହିଁଲେ ଶୈଳ ଯିବ ଫୁଟି ।

ତରଙ୍ଗ ତରଳ ନେତ୍ର ଚଞ୍ଚଳ କୁରଙ୍ଗୀ
ସଙ୍ଗ ବନ୍ଧନରେ ସେହୁ ଦିଶଇ ବିଭଙ୍ଗୀ ।

ସ୍ୱାମୀ ହେମ ଘଟଣ ଯେ ତିଳପୁଷ୍ପ ନାସା
ତାକୁ ଦେଖିଲେ ଆନକୁ ନ ବଳିବ ଆଶା ।

× × ×

କୋକିଳ ସ୍ୱର ସମାନ ବାଣୀଟି ତାହାର
ଭାଷଇ ଯେମନ୍ତ ସେହୁ ବସନ୍ତ ଋତୁର ।

× × ×

ବିସ୍ତାର ତା ବକ୍ଷସ୍ଥଳ ସିଂହ ଯେନ ବାହୁ
ପୁରୁଷ କୁଳକୁ ସେହୁ ପ୍ରତ୍ୟକ୍ଷେ କି ରାହୁ ।
ହେମ କୁମ୍ଭ ଘଟଣ କି ତାର କୁଚ ଯେନ
ଅଞ୍ଚଳ ନାଶଇ ତାର ଅନ୍ଧାର ରଜନୀ ।"

(ପୃ. ୬୫)

ଦୁର୍ଗାଙ୍କର କେଶଠାରୁ ପାଦ ତଳପା ପର୍ଯ୍ୟନ୍ତ ସର୍ବାଙ୍ଗର ଏକ ବିସ୍ତୃତ ବର୍ଣ୍ଣନା କବି ଅତି ସୁନ୍ଦର ଭାବରେ ପ୍ରଦାନ କରିଅଛନ୍ତି ।

ଯୁଦ୍ଧ ବର୍ଣ୍ଣନାରେ ମଧ୍ୟ କବିଙ୍କ ବର୍ଣ୍ଣନା-ଚାତୁରୀ ଫୁଟି ଉଠିଛି । କବି ଲେଖନୀ ଧରିଥିଲେ ସେତେବେଳେ, ଯେତେବେଳେ ସମଗ୍ର ଓଡ଼ିଶା ଯୁଦ୍ଧ ବିଭୀଷିକାରେ ପୂର୍ଣ୍ଣ ଥିଲା । ନିଜ ଗ୍ରନ୍ଥରେ ଯୁଦ୍ଧ ବର୍ଣ୍ଣନାରେ କବି ପ୍ରତ୍ୟକ୍ଷଦର୍ଶୀ ବିବରଣୀମାନ ଦେଇଥିବାରୁ ଏଗୁଡ଼ିକ ଏତେ ହୃଦ୍ୟ ହୋଇପାରିଛି । ତାଙ୍କର ଏପରି ଜୀବନ୍ତ ବର୍ଣ୍ଣନା ଦେଖି କେତେକ ଆଲୋଚକ ଯୌବନ କାଳରେ କବି ଯୁଦ୍ଧବାହିନୀରେ ଯୋଗ ଦେଇଥିବାର ଅନୁମାନ କରନ୍ତି । ମହିଷାସୁରର ମେରୁଶୂଳ ସହିତ ହୋଇଥିବା ଯୁଦ୍ଧର ବର୍ଣ୍ଣନାରୁ କେତୋଟି ପଙ୍କ୍ତି ହେଲା—

"ମହିଷାସୁର କ୍ରୋଧରେ ମାରେ ବଜ୍ରଶର
କ୍ଷୁରଶରେ କାଟିଲା ତା ମେରୁଶୂଳ ବୀର ।
ପୁଣି ମହିଷା ପେଷଇ ମନ୍ତ୍ରନାଗ ବାଣ
ମେରୁଶୂଳ ଗରୁଡ଼ାସ୍ତ୍ର କରେ ତା ବାରଣ ।

ପୁଣି ଅଗ୍ନି ଶର ଧରି ମହିଷା ପେଶଇ
ଜଳଧରେ ଚମ୍ପେ ଶୂଳ ତାହା ନିବାରଇ ।
କ୍ରୁଦ୍ଧରେ ଶର ପେଶିଲା ପୁଣି ତଦପରେ
ସୂର୍ଯ୍ୟ ଅସ୍ତ୍ରେ ଛେଦେ ମେରୁଶୂଳ ଈଷିତରେ ।"

(ପୃ. ୧୪)

ସୂର୍ଯ୍ୟମଣ୍ଡଳ ରଥର ବର୍ଣ୍ଣନା ପ୍ରଦାନ କରିବା ସମୟରେ କବିଙ୍କ କବିତ୍ୱ ସ୍ଫୁଟି ଉଠିଛି । ରଥ ସଜ କରିବା ନିମନ୍ତେ ମହିଷାସୁର ନିଜ ସାରଥି ଧୂମ୍ର ଲୋଚନକୁ ଆଦେଶ ଦେଇଛି । ଆଦେଶ ପାଳନ କରି ସାରଥି ସୂର୍ଯ୍ୟମଣ୍ଡଳ ରଥକୁ ବିଭିନ୍ନ ମଣିମାଣିକ୍ୟରେ ସଜ୍ଜିତ କରିଅଛି ! କବି ଲେଖିଛନ୍ତି—

"ଅନେକ ରତନମଣି ମଣ୍ଡିଲା ସେ ରଥେ
ଉଡ଼ନ୍ତି ତହିଁ ପତାକାମାନ ଅପ୍ରମିତେ ।
ବ୍ରହ୍ମଜାଉ ହୀରା ବସିଅଛି ଚଉପାଖେ
ଶ୍ୟାମଳ ମେଘରେ ଯେହ୍ନେ ଶୋଭନ୍ତି ବଳାକେ ।

× × ×

ମାରାଗର ସ୍ତମ୍ଭମାନ ଅତିଶୟ ଶୋଭା
ମାଣିକ୍ୟ ହିଁ ଧାଡ଼ି ଧାଡ଼ି ପାବଛି ଯେ ହୀରା ।
ଲମ୍ବନ୍ତି ଗଜମୁକୁତା ରଥ ଗୁରି ଫେରେ
ଅଷ୍ଟରତ୍ନ କଳସ ସେ ରଥର ଉପରେ ।"···ଇତ୍ୟାଦି

(ପୃ. ୧୨୧)

ସ୍ୱରଚିତ ଅନ୍ୟାନ୍ୟ ଗ୍ରନ୍ଥଭଳି ଏ ଗ୍ରନ୍ଥରେ ସଂଖ୍ୟାର ସୂଚନା ଦେବା ନିମନ୍ତେ ସୁଯୋଗ ଯେଉଁଠି ମିଳେ, ସେଠାରେ କବିଙ୍କ କଲମ ଅର୍ବୁଦ, କୋଟି, ଲକ୍ଷ ତଳକୁ ଖସେନା । କବିଙ୍କ ଏପରି କଳ୍ପନା ପ୍ରବଣତା ପାଠକକୁ ବିସ୍ମୟାଭିଭୂତ କରିବା ସଙ୍ଗେ ସଙ୍ଗେ ଆନନ୍ଦ ପ୍ରଦାନ କରିଥାଏ । କବି ନିଜର ନିରକ୍ଷର ଗ୍ରାମ୍ୟ ପାଠକଗୋଷ୍ଠୀଙ୍କ ମନସ୍ତତ୍ତ୍ୱ ଭଲଭାବେ ବୁଝିଥିଲେ । ସେମାନଙ୍କ ଆଗରେ ବର୍ଣ୍ଣନା କରୁଥିବା ବସ୍ତୁର ବା ଘଟଣାର ସାଧାରଣ ରୂପ ପ୍ରକାଶ କଲେ, ସେମାନେ ଆମୋଦିତ ହେବେ ନାହିଁ । ବର୍ଣ୍ଣନାରେ ଅଲୌକିକତା, ଅସମ୍ଭବତା ଏବଂ ଅତିରଞ୍ଜନତା ସ୍ଫୁଟି ନ ଉଠିଲେ ସେମାନଙ୍କ କାହାଣୀ-କ୍ଷୁଧା ମେଣ୍ଟିବ ନାହିଁ—ଏକଥା କବିଙ୍କୁ ଉତ୍ତମ ରୂପେ ଜଣାଥିଲା । ତେଣୁ ତାଙ୍କ ରଚନାରେ ଅଲୌକିକ ବର୍ଣ୍ଣନାମାନ ଦେଖିବାକୁ ମିଳେ । ମହିଷାସୁରର ଦୁର୍ଗାଙ୍କ ସହିତ ଯୁଦ୍ଧ କରିବା ପାଇଁ ବାହାରିବା ସମୟର ବର୍ଣ୍ଣନା ଦେଇ କବି ଲେଖିଛନ୍ତି—

"ଆଗୁଆଣି ଆଟେ ବଳେ କାଳବମୋଚନ
ଅୟୁତେକ ଘୋଡା ନବ ସାଗର ସଇନ ।

× × ×

ସିଂହ ନାଦ ଭୁଲେ ଗଜ ପଚଶ ଷଢ଼ଣୀ
ବେନ ଲକ୍ଷ ଘୋଡା ପାଞ୍ଚ ଅର୍ବୁଦ ସଇନ ।
ସତୁସ୍ତ୍ରି କୋଟି ଯେ ଢୋଲ କୋଟିଏ ଟମକ
ମହୁର ପଚଶ ଖଙ୍କ ଶଙ୍ଖ ଯେ ଅନେକ ।

× × ×

ମୈଷାସୁର ଭୁଲେ ରଥ ଏଗାର ସାଗର
ନବକୋଟି ପଞ୍ଚଶତ ଅର୍ବୁଦ ଯେ ସ୍ୱାର ।
ଅଶୀକୋଟିଏ ମୁକୁଟ ବନ୍ଧା ଘୋଡା ଭୁଲେ
ପଦାତିଗଣ ତାହାର କେହୁ ପଞ୍ଚକଲେ ।

× × ×

ପଞ୍ଚ ଅୟୁତ ଗୃମର ପଡେ ବେନ ପାଖେ
ଗୃମରମାନଙ୍କେ ମୁକ୍ତା ଲମ୍ବେ ଲକ୍ଷେ ଲକ୍ଷେ ।
କଳାଗୃମର ମାନନ୍ତ ତହିଁ ଯେତେ ଛନ୍ତ
ତହିଁ କୋଟି କୋଟି ଗଜ ମୁକୁତା ଲମ୍ବନ୍ତ ।
ତନ ଅୟୁତ ମୟୂର ଭୁଲେସ୍ୱର ଛତା
ନବଲକ୍ଷ ଖଦ କୋଟିଏକ ଧଳାଛତା ।"··ଇତ୍ୟାଦ

( ପୃ: ୧ ୩-୨୪ )

ମହଷାସୁରର ସମ୍ମୁଖୀନ ହେବା ନମନ୍ତେ ଦେବୀ ଦୁର୍ଗା ଅନନ୍ତକୋଟି ଦେବୀ ଉପୁଜାଇଛନ୍ତି । ଏମାନେ ମହଷାସୁରକୁ ମାଡ଼ ବସିଛନ୍ତି । କୋପକଶ ମହଷାସୁର ଦେହ ଝାଡ଼ ଦେବା ଫଳରେ ଲକ୍ଷ ଲକ୍ଷ, କୋଟି କୋଟି ଦେବୀ ବଭିନ୍ନ ସ୍ଥାନରେ ବକ୍ଷିପ୍ତ ଭାବରେ ନକ୍ଷିପ୍ତ ହୋଇଛନ୍ତି । ଏହି ପ୍ରସଙ୍ଗ ବର୍ଣ୍ଣନାରେ କବଙ୍କ ଅତିରଞ୍ଜିତ କଳ୍ପନା ଫୁଟି ଉଠିଛି ।

"ଜମ୍ବୁଦ୍ୱୀପରେ ପଡ଼ିଲେ ଛପ୍ପନକୋଟି ଦେବୀ
ଚନ୍ଦ୍ରଦ୍ୱୀପେ ପଡ଼ି ଚୌଦ କୋଟି ଭଇରବୀ ।
କୁଶ ଦ୍ୱୀପରେ ପଡ଼ିଲେ ନବକୋଟି ଚଣ୍ଡୀ
ତନସାଗର ଗୃମଣ୍ଡା କୌଞ୍ଚଦ୍ୱୀପେ ମଣ୍ଡି ।

"ସିଂହଳ ଦ୍ୱୀପରେ ଶଙ୍ଖପଦ୍ମ ପିଙ୍ଗୁଶୁଣୀ
ପାତ୍ରଦ୍ୱୀପରେ ପଡ଼ିଲେ କୋଟି ଗୋଦାମଣୀ ।"
( ପୃ ୧୪୬ )

ପୁନଶ୍ଚ ଗ୍ରାମଦେବୀ, ବନଦେବୀ, ଗିରିଦେବୀ ଇତ୍ୟାଦିଙ୍କ ସୃଷ୍ଟି ସମ୍ବନ୍ଧରେ କବି ଏକ ସୁନ୍ଦର କାଳ୍ପନିକ ଆଖ୍ୟାନ ଉପସ୍ଥାପନା କରିଛନ୍ତି । ମହିଷାସୁର ଦ୍ୱାରା ଦେବୀ-ମାନେ ବିଭିନ୍ନ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ବିକ୍ଷିପ୍ତ ଭାବେ ନିକ୍ଷିପ୍ତ ହେବାରୁ ଗ୍ରେଣ୍ଟୀ, କାଣୀ, କୁଜା ହୋଇ ଉଠି ପାରିଲେ ନାହିଁ । ଏଣୁ ଦୁର୍ଗା ସେମାନଙ୍କୁ ସେହିଠାରେ ରହି ସିଦ୍ଧ ଦେବୀ ରୂପେ ପୂଜା ପାଇବା ପାଇଁ ଆଦେଶ ଦେଲେ ।

"ଗ୍ରାମେ ପର୍ବତେ ବନରେ ପଡ଼ିଲେ ଯେ ସ୍ଥାନେ
ଉଠି ନ ପାରିଲେ ବ୍ୟଥା ପାଇ ଦେବୀମାନେ ।
ଗ୍ରେଣ୍ଟୀ, କାଣୀ କୁବୁଜି କେ ହୋଇଲେ କେ କେମ୍ପା
ହସ୍ତ ପଞ୍ଜର ଭାଜନ୍ତେ ହୋଇଲେ ବିରୂପା ।
ଯେ ଯହିଁ ପଡ଼ିଲେ ସେହି ରହିଲେ ସେଠାଇଁ
ଦୁର୍ଗାଦେବୀ ବୋଇଲେକ ଡାକେଶ୍ୱରୀ ରାଇ
ଦେବୀ ପଡ଼ିଲେ ଯେଉଁଠି ଛୁଆଣ୍ଡି ଯେ ହୋଇ
ସିଦ୍ଧ ରୂପେ ପୂଜା ପାଉଥାନ୍ତୁ ସେହିଠାଇଁ ।
ପାଷାଣ ହୋଇ ତାଙ୍କର ବାକ୍ୟ ହେଉ ସିଦ୍ଧି
କାଷ୍ଠ ପାଷାଣ ମୃତ୍ତିକା ତ୍ରିପ୍ରକାର ବିଧି ।" ( ପୃ: ୧୪୬ )

'ଚଣ୍ଡୀ ପୁରାଣ'ର ଭାଷା ଆଲୋଚନା କରିବା ନିମନ୍ତେ ଆମେ ଯଦି ବର୍ତ୍ତମାନ ବଜାରରେ ଲବ୍‌ଧ ଗ୍ରନ୍ଥରୁ ସାରଳାଙ୍କ ଭାଷା ଖୋଜି ବସିବୁ, ତେବେ ଆମକୁ ନିରାଶ ହେବାକୁ ପଡ଼ିବ । କାରଣ ପରବର୍ତ୍ତୀ କାଳରେ ସମକାଳୀନ ଭାଷାରେ ଏହାକୁ ଚଉଦ ଅକ୍ଷରୀ ବୃତ୍ତରେ ରୂପାନ୍ତରିତ କରାଯାଇଛି । ଫଳତଃ ଏଥିରେ ପରିଦୃଷ୍ଟ ଭାଷା ସାରଳାଙ୍କ ଭାଷା ବା ସାରଳାକାଳୀନ ଭାଷା ଭାବେ ଗୃହୀତ ହୋଇ ନ ପାରେ । କେତେକ ସ୍ଥାନରେ ବର୍ତ୍ତମାନ ଯେଉଁ ତାଳପତ୍ର ପୋଥି ଉଦ୍ଧୃତ, ସେଥିରେ ପରବର୍ତ୍ତୀ ସମୟର ଭାଷା ପଶିଯାଇଥିବାର ଆଶଙ୍କାକୁ ମଧ୍ୟ ଏଡ଼େଇ ଦିଆଯାଇ ନ ପାରେ । ଏ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ମଧ୍ୟ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ । ପୋଥିକୁ ଆଧାର କରି ସାରଳା ସାହିତ୍ୟର ବିଶିଷ୍ଟ ଆଲୋଚକ ଡଃ ବଂଶୀଧର ମହାନ୍ତି ଭାଷା ସମ୍ବନ୍ଧୀୟ ଯେଉଁ ଆଲୋଚନା * କରିଛନ୍ତି, ତାହାର ଅବଲମ୍ବନରେ ଏଠାରେ ଏକ କ୍ଷୁଦ୍ର ଆଲୋଚନା କରାଯାଇ ପାରେ ।

* ଓଡ଼ିଆ ସାହିତ୍ୟର ଇତିହାସ—୧ମ ଭାଗ—ଡଃ ବଂଶୀଧର ମହାନ୍ତି—
ପୃ : ୬୧-୬୨

କେତେକ ଶବ୍ଦ ଓ ପଦର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଉଛି, ଯାହା ତତ୍କାଳୀନ ଓଡ଼ିଆ ଭାଷାର ପ୍ରକାଶନ ଶକ୍ତିର ସମ୍ୟକ୍ ପରିଚୟ ଦିଏ ।

ଦ୍ରୁପଦ କଷ୍ଟରେ ସେ ଜୀବନ ପରିତ୍ୟାଗୀ; ଶାସ୍ତ୍ରେଣ ନିର୍ଣ୍ଣିତା ମୁଁ ସେ ଦେବୀ ନାମଧରି; ଲବଣ୍ୟ ହୋଇ ସେ ବଚନ ପ୍ରକାଶଇ; ଜୀବନ ନିଆସିଣ ପଶିଲ୍ଲ ରଣେ ଝାସି; ରକ୍ତ ମାଂସ ଦେହୁ ବହୁଲେ ଅବଶ୍ୟ ପଡ଼ଇ ପ୍ରମାଦ; ସୂର୍ଯ୍ୟ ଉଦୟ ପ୍ରାୟ ଦିଶଇ ରଣଭୂମି—ଇତ୍ୟାଦି ।

ପୁଣି କେତେକ ଖାଣ୍ଟି ଓଡ଼ିଆ ଶବ୍ଦ ଏଥିରେ ଦେଖିବାକୁ ମିଳେ । ସେଥି ମଧ୍ୟରୁ କେତେକ ହେଲେ—ମହାମ୍ବାଣୀ, ପିଷ୍ଟଣୀ, ଯୁବତୀ, ଅନର୍ଘପ, ତତ୍କ୍ଷଣାତ, ଯଶୋବନ୍ତୀ, ଜିଣିମି, ପୁଚ୍ଛପୋଛି, ଛଣକେ, ଭ୍ରୁଛନା, ଧାଏଣ, ବଡ଼ାଇ ପ୍ରତାପୀ, ଓପ୍ରୋଧି, ପଇତଇ ( ପହଞ୍ଚଇ ), ଦୁ ସୁ କୃତ; ଗୁଣବନ୍ତୀ, ଜଗଜନମୋହନ, କେମନ୍ତେ ( କେମନ୍ତେ ), ବିବାନ, କଣ୍ଠାଳ, ହାନ୍ଦୋଳ, କସ, ଅଳ୍ପସଞ୍ଚ, ଦୃପିଷ୍ଟ, ଦୋଷ୍ଟରୁଣୀ ଇତ୍ୟାଦି ।

ବିଭିନ୍ନ ରସର ପରିବେଷଣ ଏହି ଗ୍ରନ୍ଥରେ ଦେଖିବାକୁ ମିଳେ । ଯୁଦ୍ଧ ବର୍ଣ୍ଣନାରେ ପୂର୍ଣ୍ଣ ହୋଇଥିବାରୁ ଏଥିରେ ବୀରରସର ପ୍ରାବଲ୍ୟ ଦୃଷ୍ଟି ଉଠିବା ସ୍ୱାଭାବିକ । ଏତଦ୍‌ବ୍ୟତୀତ ଶୃଙ୍ଗାର ରସ, ହାସ୍ୟରସ, କରୁଣ ରସ ଓ ବୀଭତ୍ସ ରସ ସମ୍ବଳିତ-ବର୍ଣ୍ଣନା ଗ୍ରନ୍ଥର ସ୍ଥାନେ ସ୍ଥାନେ ଦେଖିବାକୁ ମିଳେ । ବୀରରସାତ୍ମକ ଏକ ବର୍ଣ୍ଣନା ନିଆଯାଉ । ଚଣ୍ଡମୁଣ୍ଡ ସଙ୍ଗେ ମହିଷାସୁରର ଯୁଦ୍ଧ ସମୟର ବର୍ଣ୍ଣନାରେ ଉଭୟ ପକ୍ଷର ସୈନ୍ୟସାମନ୍ତ ଯୁଦ୍ଧ କ୍ଷେତ୍ରରେ ସମାଗତ ହୋଇଅଛନ୍ତି ଶତ୍ରୁକୁ ପରାସ୍ତ କରି ଜୟଲାଭ କରିବା ନିମନ୍ତେ ଉଭୟ ପକ୍ଷର ସେନାମାନେ ଆଶାୟୀ । ସେମାନଙ୍କ ମଧ୍ୟରେ ଥିବା ବୀରତ୍ୱକୁ ଜାଗ୍ରତ କରିବା ନିମନ୍ତେ ବୀର ବାଦ୍ୟ ବାଜି ଉଠିଛି କବି କହିଛନ୍ତି—

ବାଜିଲ୍ଲକ ବଜ୍ରଘୋଷ ଦୁନ୍ଦୁଭି ଯେ ଢୋଲ
ରେ ରେ କାରେ ଧାଉଁଛନ୍ତି ସେନା ପଲ ପଲ ।
ଦେବ ଦଇତ ସମରେ ହେଲେ ଏକ ମୁଖ
ବିହରନ୍ତି ଦାନବେ ଯେ ପାଇ ଅତି ସୁଖ ।”

( ପୃ ୧୮ )

ନାରୀ ରୂପ ବର୍ଣ୍ଣନା ପ୍ରସଙ୍ଗରେ କେତେକ ସ୍ଥଳରେ ଶୃଙ୍ଗାର ରସ ସୃଷ୍ଟି ଉଠିଛି । ଦେବୀଙ୍କୁ ପ୍ରାପ୍ତ ହେବା ପାଇଁ ଶୁମ୍ଭନିଶୁମ୍ଭ ବ୍ୟାକୁଳ ହୋଇ ଉଠିଛନ୍ତି । ସେମାନେ ହତାହତ ଜ୍ଞାନଶୂନ୍ୟ ହୋଇଅଛନ୍ତି ଏବଂ ଦେବୀଙ୍କ ବାକ୍ୟକୁ ମନ୍ତ୍ରମୁଗ୍ଧବତ୍ ପାଳନ କରିଅଛନ୍ତି । ଦେବୀ ସେମାନଙ୍କ ନୃତ୍ୟ ଦର୍ଶନ କରିବାର ଅଭିଳାଷ ପୋଷଣ

କରିଥିବାର ଜାଣି, ସେମାନେ ବିଭିନ୍ନ ତାଳରେ ନୃତ୍ୟ ଆରମ୍ଭ କରି ଦେଇଅଛନ୍ତି । ବିଶାଳ କାୟ ଦୁଇଟି ରାକ୍ଷସ; ସେଥିରେ ପୁଣି ବିଭିନ୍ନ ତାଳର ନୃତ୍ୟ; ଏହା ଯେ କୌଣସି ପାଠକକୁ ହସିବାର ଉପାଦାନ ଯୋଗାଇଥାଏ । ଏହି ପ୍ରସଙ୍ଗଟି ହାସ୍ୟରସର ଏକ ଦୃଷ୍ଟାନ୍ତ । ସେହିପରି ଦୁର୍ଗାଙ୍କ ସହିତ ଯୁଦ୍ଧ କରିବା ପାଇଁ ବାହାରିବା ପୂର୍ବରୁ ମହିଷାସୁରର ମନରେ ଜାଗ୍ରତ ହୋଇଛି, ପୂର୍ବରୁ ନିହତ ହୋଇଥିବା ନିଜର ଆତ୍ମୀୟ, ବନ୍ଧୁ, ସେନାପତି ପ୍ରମୁଖଙ୍କ ସ୍ମୃତି । ବଂଶରକ୍ଷା କରିବା ନିମନ୍ତେ ସ୍ୱଜନ କେହି ଜୀବିତ ନ ଥିବାରୁ ସେ ଉଚ୍ଚ ସ୍ୱରରେ ବିଳାପ କରିଉଠିଛି ଏବଂ ଚେତନା ହରାଇଅଛି । ଏହିଠାରେ କରୁଣ ରସ ଫୁଟି ଉଠିଛି । ଅବଶ୍ୟ ଦୁଷ୍ଟ ଦାନବର ବଂଶ ଧ୍ୱଂସ ହେବା ଜାଣି ପାଠକ ହୃଦୟରେ କରୁଣ ଭାବ ଜାତ ହୁଏନି । ସେ ବରଂ ଆନନ୍ଦରେ ଆତ୍ମ-ହରା ହୁଏ । କବି ବର୍ଣ୍ଣନା କରିଛନ୍ତି—

"ଅସାଷ୍ଟମ ହୋଇପଡ଼େ ଦୈତ୍ୟ କୁଳରାୟେ
ତେଜଇ ନିଶ୍ୱାସ ପ୍ରାଣ ବିସର୍ଜନ ପ୍ରାୟେ ।

ସମ୍ଭାଇ ଧରିଲି ତାକୁ କାଳ ବିମୋଚନ
ମହିଷାସୁର ଯେ ହୋଇଅଛି ଅଚେତନ ।"... ଇତ୍ୟାଦି

( ପୃ ୧୨୦ )

ବିଭତ୍ସ ରସର ବର୍ଣ୍ଣନା ଗ୍ରନ୍ଥର ଶେଷାର୍ଦ୍ଧରେ ଦେଖିବାକୁ ମିଳେ । ଅନନ୍ତକୋଟି ଦେବୀଙ୍କୁ ଦୁର୍ଗା ଉତ୍ପତ୍ତି କରିଅଛନ୍ତି, ରାକ୍ଷସ ସୈନ୍ୟବଳକୁ ବିନାଶ କରିବା ନିମନ୍ତେ । ସେହି ଦେବୀମାନେ ଭୟଙ୍କର ରୂପ ଧାରଣ କରି ଯେପରି ଭାବେ ଦୈତ୍ୟମାନଙ୍କର ମୁଣ୍ଡ ମାଡ଼ି ଭକ୍ଷଣ କରିଛନ୍ତି, ତା'ର ଚିତ୍ର କବି ପ୍ରଦାନ କରିଅଛନ୍ତି, ଯାହା ମନରେ ଭୀତି ସଞ୍ଚାର କରେ । ନିମ୍ନରେ ବିଭତ୍ସ ରସାତ୍ମକ କେତୋଟି ଉଦ୍ଧୃତି ପ୍ରଦତ୍ତ ହୋଇଅଛି ।

"କରେଣ ଉଚ୍ଛୁଡ଼ କଲେ କରେ ବେନିଫାଳ
କେ ମୁଣ୍ଡ ମୋଡ଼ଣ ଛିଣ୍ଡାଇଲେ ବକ୍ଷସ୍ଥଳ ।

ହୃଦୟରେ ବସି କେହୁ ଛିଣ୍ଡାଇଲେ ବାହା
ପିଠି ଉପରେ ବସି କେହୁ ବିଦାରିଲେ ହସ୍ତା ।

କେହୁ ଯେ କାହାର ଉପାଡ଼ିଲେ ବାହା ବେନି
କେ ଚରଣ ଉପାଡ଼େ କେ ମୋଡ଼ଇ ମୂର୍ଦ୍ଧନି ।

ପଞ୍ଜରା ବିଦାରଇ କେ ନଖଘାତ ଦେନି
କେ କାହାର ଅନ୍ତ୍ରପିତ୍ତ କରେ ଭିନ୍ନାଭିନ୍ନି ।

ମୁଣ୍ଡ କେ ଗୃଦ୍ଧବାଇଣ କେ କଳେବର ଭକ୍ଷି
କେ ଅସ୍ଥି ଚର୍ମ ଖାଆନ୍ତି ନ ଥୁଅନ୍ତି କିଛି ।"

( ପୃ : ୧୬୮ )

ପୁନଶ୍ଚ :–

"ଦୈତ୍ୟେ ମୁଅ ଉଞ୍ଚାନ୍ତେ ସେ ଧରନ୍ତି ଦଶଣ୍ଡି
ବେନଭୁଜ ଧରି ସେହୁ କରନ୍ତି ଦ୍ୱିଖଣ୍ଡି ।

ରୁଧିର ପିବନ୍ତି ଦେବୀ ବୁଡ଼ାଇଣ ମୁହଁ
ମହା ବିକଟାକ୍ଷୀ ରଙ୍ଗ ବର୍ଣ୍ଣି ତାଙ୍କ ଦେହ ।

ଚରଣ ଧରି ଦୈତ୍ୟଙ୍କୁ ଫିଙ୍ଗନ୍ତି ଆକାଶେ
ଅସ୍ଥି ଚର୍ମ ମାଂସ କରି ଦ୍ୟନ୍ତି ଏକ ଗ୍ରାସେ ।"...ଇତ୍ୟାଦି

( ପୃ-୧୩ )

ସାରଳାଙ୍କ ଅନ୍ୟାନ୍ୟ ଗ୍ରନ୍ଥ ଭଳି ଏ ଗ୍ରନ୍ଥରେ ଶବ୍ଦାଲଙ୍କାର ଆଦୌ ଦେଖିବାକୁ ମିଳେ ନାହିଁ । ଯେଉଁ କେତେକ ଅର୍ଥାଲଙ୍କାର ଦେଖିବାକୁ ମିଳେ, ତା'ର ସଂଖ୍ୟା ମଧ୍ୟ ଖୁବ୍ କମ୍ । ପୁରାଣ କଥାବସ୍ତୁ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଏହି ଅଳ୍ପ କେତୋଟି ଅର୍ଥାଳଙ୍କାର ବଳରେ ଗ୍ରନ୍ଥରେ କାବ୍ୟିକ ସୌନ୍ଦର୍ଯ୍ୟ ସୃଷ୍ଟି ହୁଏ । ଏଥିରେ ସ୍ଥାନ ପାଇଥିବା ଉପମାଳଙ୍କାର ମଧ୍ୟରୁ କେତୋଟି ହେଲେ—

ଗଗନରୁ ଶ୍ୟେନପକ୍ଷୀ ପଡ଼ଇ ଯେମନ୍ତେ
ଦଇତ ବଳ ଉପରେ ପଡ଼ିଲେ ତେମନ୍ତେ ।"

( ପୃ-୬୮ )

"ବ୍ରହ୍ମକାଠ ସାରି ବସିଅଛି ଗଡ଼ପାଖେ
ଶ୍ୟାମଳମେଘରେ ଯେହ୍ନେ କ୍ଷେପନ୍ତି ବଳାକେ ।" (ପୃ-୧୬୧)

"କ୍ଷୁଧାର୍ତ୍ତୀ ପ୍ରାଣୀ ହୁଅଇ ଯେହ୍ନେ କ୍ଷୁଧା କାଳେ
ପିଶାଚୁଣୀ ବୃନ୍ଦ ସେହି ରୂପରେ ହୋଇଲେ ।" ( ପୃ-୧୬୫ )

ଆଲୋଚ୍ୟ ଗ୍ରନ୍ଥରେ କବିଙ୍କର ଜାତୀୟତା ମଧ୍ୟ ପ୍ରକଟିତ । ସ୍ୱଦେଶପ୍ରେମୀ କବି 'କପିଳ ସିଂହ'ର ନାମକରଣ ତତ୍କାଳୀନ ପ୍ରବଳ ପରାକ୍ରମୀ, ସିଂହପରି ପ୍ରତାପୀ, ଗଜପତି ରାଜା କପିଳେନ୍ଦ୍ର ଦେବଙ୍କୁ ଲକ୍ଷ୍ୟ କରି କରିଥିବାର ମନେହୁଏ । କପିଳ ସିଂହର ସିଂହଳ ଦ୍ୱୀପରେ ରାଜ୍ୟ ସ୍ଥାପନ ଇତ୍ୟାଦି ବର୍ଣ୍ଣନାରୁ ତତ୍କାଳୀନ ଉତ୍କଳର ସିଂହଳ ସହିତ ନୌବାଣିଜ୍ୟିକ ସମ୍ପର୍କ ଥିବାର ମଧ୍ୟ ଅନୁମିତ ହୁଏ ।

'ଚଣ୍ଡୀ ପୁରାଣ' ଏକ ଚରିତବହୁଳ ଗ୍ରନ୍ଥ । ଏଥିରେ ପ୍ରାୟ ପ୍ରତ୍ୟେକ ଚରିତର ଭୂମିକା ଖୁବ୍ କମ୍ । ଏଥିରେ ବ୍ରହ୍ମା ଜଣେ ଅତି ମହାନ୍ ଓ ଉଦାରଚରିତ୍ରଭାବେ ବର୍ଣ୍ଣିତ । ସେ ରାକ୍ଷସଙ୍କ କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଏପରି ଜଟିଳ ବର ପ୍ରଦାନ କରନ୍ତି ଯେ, ସର୍ବଶେଷରେ ଦେବତାମାନେ ନାନା ପ୍ରକାର ଦୁର୍ଗତିର ସମ୍ମୁଖୀନ ହୁଅନ୍ତି । ସେ ନିଜେ ଦୁର୍ଗାଙ୍କ ସମ୍ମୁଖରେ ସ୍ୱୀକାର କରିଛନ୍ତି— "ଯେ ଯାହା ମାଗଇ ଭୋଳେ ମୁଁ ସତ୍ୟ କରଇ ।" ବିଷ୍ଣୁ ସଦାସର୍ବଦା କ୍ଷୀର-ସମୁଦ୍ରରେ ବାସ କରନ୍ତି । ବିପଦ କାଳରେ ଦୁଃଖ ମୋଚନ ପାଇଁ ସେ ଦେବତା-ମାନଙ୍କୁ ବିଭିନ୍ନ ପରାମର୍ଶ ଦିଅନ୍ତି ଏବଂ ଦରକାର ହେଲେ ବିଭିନ୍ନ ରୂପରେ ଧରା ପୃଷ୍ଠରେ ଅବତୀର୍ଣ୍ଣ ହୋଇ ଶତ୍ରୁ ସଂହାର କରନ୍ତି । ବୈଲୋଚନ ଦୈତ୍ୟକୁ ବିନାଶ କରିବା ନିମନ୍ତେ ସେ ମାଳତୀ ନାମ୍ନୀ ଏକ ସୁନ୍ଦରୀ ଯୁବତୀ ଭାବେ ଅବତାର ଗ୍ରହଣ କରିଛନ୍ତି ଏବଂ ବୈଲୋଚନର ସ୍ତ୍ରୀ ଭାବେ କିଛିକାଳ ତା ସହିତ ସାଂସାରିକ ଜୀବନ ଯାପନ କରି ଶେଷରେ ତାକୁ ବଧ କରିଛନ୍ତି । ରାକ୍ଷସମାନଙ୍କ ଚରିତରେ ପ୍ରଥମେ ସଂଯମତା ଏବଂ ଏକନିଷ୍ଠତା ଦେଖିବାକୁ ମିଳେ । ଅଭୀଷ୍ଟ ସିଦ୍ଧି ନିମନ୍ତେ କଠୋର ତପସ୍ୟାଚରଣ କରିବା ଏବଂ ବରପ୍ରାପ୍ତି ପରେ ଦେବତାମାନଙ୍କ ପ୍ରତି ବିବିଧ କଷଣ ବିଧାନ କରିବା ଆଦି ନାରକୀୟ କାର୍ଯ୍ୟରେ ରତ ରହି ଶେଷରେ ଜୀବନ ହରାନ୍ତି । ଏହା ଏପରି ଏକ ପୁରାଣ ଗ୍ରନ୍ଥ, ଯାହା ମୂଳରୁ ଶେଷ ପର୍ଯ୍ୟନ୍ତ କେବଳ ଯୁଦ୍ଧ ବର୍ଣ୍ଣନାରେ ପୂର୍ଣ୍ଣ । ଏଣୁ ଏଥିରେ ଚରିତ୍ର ଭଲ ଚରିତ୍ରଟିଏ ଚିତ୍ରଣ କରିବାକୁ କବି ସୁଯୋଗ ପାଇ ନାହାନ୍ତି ।

ଆଲୋଚିତ ଗ୍ରନ୍ଥରେ ସମକାଳୀନ ସମାଜର କେତେକ ଚିତ୍ର ଦେଖିବାକୁ ମିଳେ । କୌଣସି ଆନନ୍ଦ ଉତ୍ସବରେ ମର୍ଦ୍ଦଳ ତୂରୀ ଆଦି ନାନା ପ୍ରକାର ବାଦ୍ୟଯନ୍ତ୍ର ବାଜୁଥିଲା ଏବଂ ରାଜପ୍ରାସାଦରେ ସୁବର୍ଣ୍ଣ କଳସରେ ପତାକା ଉଡ଼ାଯାଉଥିଲା । ପ୍ରତି ଦ୍ୱାରରେ କଳସରେ ଆମ୍ବପତ୍ର ରଖାଯାଇ ପୂର୍ଣ୍ଣକୁମ୍ଭ ରଖାଯାଉଥିଲା ଏବଂ କଦଳୀ ଗଛ ପୋତାଯାଉଥିଲା । ଚଣ୍ଡମୁଣ୍ଡ ରତ୍ନଗିରିରେ ଅବସ୍ଥାନ କରୁଥିବା ଅପରୂପା ଦୁର୍ଗାଦେବୀଙ୍କ ସନ୍ଧାନ ଦୈତ୍ୟରାଜ ମହିଷାସୁରକୁ ଦେବାପରେ ଦୈତ୍ୟରାଜ ଆନନ୍ଦରେ ଆତ୍ମହରା ହୋଇପଡ଼ିଛି ଏବଂ ନିଜ ପ୍ରାସାଦରେ ଉତ୍ସବ କରିବା ନିମନ୍ତେ ଆଦେଶ ଦେଇଛି । ଏହି ଉତ୍ସବ ଉପଲକ୍ଷେ ଉପରୋକ୍ତ ସାଜସଜ୍ଜାର ଆୟୋଜନ ହୋଇଛି । ବୈଲୋଚନ ଚରିତ ପ୍ରସଙ୍ଗରେ ମିଞ୍ଜୁଣି ମାରିବା ବର୍ଣ୍ଣିତ ହୋଇଅଛି । ଏଥିରୁ ଜଣାଯାଏ ଯେ ସେତେବେଳର ସମାଜରେ ମଧ୍ୟ ମୁଣ୍ଡରୁ ଉକୁଣି ମାରିବାର ବ୍ୟବସ୍ଥା ଥିଲି । ପଞ୍ଚଦଶ ଶତକ ଉତ୍କଳୀୟ ସମାଜରେ କୋଡ଼ିକ ଧାନରେ ବାର୍ଷିକ ସୁଧ ଥିଲି ପାଞ୍ଚଗୋଟି । ଜୀମୂତବାହନ ରାଜ୍ୟରେ ଅପାଳକ ପଡ଼ିବାରୁ ସେ ଚଣ୍ଡାଳପୁରର ଅମ୍ବିକା ଚଣ୍ଡାଳଠାରୁ ଲକ୍ଷେ ଭରଣ ଧାନ କରଜ ସ୍ୱରୂପ ନେଇଛନ୍ତି ଏବଂ ବର୍ଷକ ପରେ ଦ୍ୱିଗୁଣ ପରିମାଣର ଧାନ ଫେରାଇଛନ୍ତି ; ମାତ୍ର ଚଣ୍ଡାଳ ନିୟମାନୁଯାୟୀ

କୋଡ଼ିକ ଧାନରେ କେବଳ ପାଞ୍ଚଗୌଣୀ ଧାନ ସୁଧ ହିସାବରେ ଗ୍ରହଣ କରନ୍ତି । ସମକାଳୀନ ସମାଜରେ ଯୌତୁକ ପ୍ରଥାର ପ୍ରଚଳନ ମଧ୍ୟ ଥିଲା । ଅମ୍ବିକା ଚଣ୍ଡାଳ ନିଜ କନ୍ୟା ଅରୁନ୍ଧତୀଙ୍କୁ ବଶିଷ୍ଠଙ୍କ ସହିତ ବିଭା ଦେବାପରେ ନହୁଷ ରାଜାଙ୍କ ନିମନ୍ତେ ପାଞ୍ଚଶ ଅର୍ବୁଦ ଧାନ ଯୌତୁକ ସ୍ୱରୂପ ପ୍ରଦାନ କରନ୍ତି । ଏହି ବିବାହ ପ୍ରସଙ୍ଗରେ ଗ୍ରନ୍ଥରେ ସମସାମୟିକ ସମାଜର ଯେଉଁ ବିବାହକାଳୀନ ଚିତ୍ର ଦେଖିବାକୁ ମିଳେ, ତା'ର ପ୍ରଚଳନ ଆଧୁନିକ ସମାଜରେ ମଧ୍ୟ ରହିଅଛି । ବିବାହ ଲଗ୍ନାଦି ସ୍ଥିର କରିବା, ହସ୍ତଗଣ୍ଠି ବନ୍ଧନାଦି କାର୍ଯ୍ୟ କରିବା, ଲାଜହୋମ କରିବା, ହସ୍ତରେ କୁଶ ବାନ୍ଧି ଝୁଣ୍ଟରେ ପାଣି ଢେକ ସତ୍ୟ କରିବା ଆଦି ସେ ସମୟରେ ପ୍ରଚଳିତ ଥିଲା । ଦେବୀଙ୍କ ପାଖରେ ମେଷ ଛାଗଳାଦି ପଶୁ-ବଳି ପ୍ରଥା ସାରଳାକାଳୀନ ସମାଜରେ ପ୍ରଚଳିତ ଥିଲା । ପୁନଶ୍ଚ ଆଧୁନିକ ସମାଜରେ ପ୍ରଚଳିତ ଥିଲା ଭଳି ସେ ସମୟରେ ସମାଜରେ ମଧ୍ୟ ସମାନ ନାମଧାରୀ ବ୍ୟକ୍ତି ପରସ୍ପର ମଧ୍ୟରେ ମିତ୍ରତା ସ୍ଥାପନ କରୁଥିଲେ । ଅସୁର ରାଜା କପିଳ ସିଂହ ନିଜ ସ୍ତ୍ରୀ ଅନ୍ୱେଷଣରେ ବାହାରିଥିବା ସମୟରେ କପିଳ ମୁନିଙ୍କୁ ଦେଖି ତାଙ୍କୁ ମଇତ୍ର ବୋଲି ସମ୍ବୋଧନ କରିଥିବା ଘଟଣାରୁ ଏହା ପ୍ରମାଣିତ ହୁଏ ।

ଚଣ୍ଡୀ ପୁରାଣରେ ଓଡ଼ିଆ ଭାଷାରେ ଗଦ୍ୟ ମଧ୍ୟ ପରିଦୃଷ୍ଟ ହୁଏ । ନାରଦଙ୍କ ସହିତ ଶୁମ୍ଭ ନିଶୁମ୍ଭଙ୍କ କଥୋପକଥନ ପରେ ନାରଦ ସ୍ୱର୍ଗକୁ ଗମନ କରନ୍ତି । ତାପରେ ଶୁମ୍ଭ ନିଶୁମ୍ଭ ସ୍ୱର୍ଗକୁ ମହିଷାସୁର ତରଫରୁ ଶ୍ରୀମୁଖ ଲେଖି ଦୂତ ହସ୍ତରେ ପଠାଇଛନ୍ତି । ଏହା ହେଉଛି ମହିଷାସୁରର ଆଜ୍ଞା ପତ୍ରିକା । ଏହା ଗଦ୍ୟରେ ଲିଖିତ । ବିଭିନ୍ନ ପୁରାଣ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ଚଣ୍ଡୀ ପୁରାଣମାନଙ୍କରେ ଏହି ଗଦ୍ୟ ଦେଖିବାକୁ ମିଳେ ନାହିଁ । ଏଗୁଡ଼ିକରେ ଏହି ଗଦ୍ୟକୁ ପଦ୍ୟରେ ପରିଣତ କରାଯାଇ ମୁଦ୍ରିତ କରାଯାଇଛି ।

ଓଡ଼ିଆ ସାହିତ୍ୟରେ ଅନ୍ୟ ଏକ 'ଚଣ୍ଡୀ ପୁରାଣ' ରହିଥିବାର ଦେଖାଯାଏ । ଏହାର ରଚୟିତା ହେଉଛନ୍ତି ବିପ୍ର ଭଗବାନ ଦାସ । ଏହା ଧାଣ୍ଡିବୃତ୍ତରେ ରଚିତ । ଶାକ୍ତ ଧର୍ମର ପ୍ରଧାନ ପୁସ୍ତକ ମାର୍କଣ୍ଡେୟ ପୁରାଣ ଅବଲମ୍ବନରେ ଏହା ରଚିତ ହୋଇଥିବାର ଆଭାସ କବି ଏଥିରେ ଦେଇଥିଲେ ସୁଦ୍ଧା ସେ ସ୍ଥଳ ବିଶେଷରେ ସାରଳାଙ୍କ 'ଚଣ୍ଡୀପୁରାଣ' ଦ୍ୱାରା ପ୍ରଭାବିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏହା ସତ୍ତ୍ୱେ ବିପ୍ର ଭଗବାନ ଦାସଙ୍କ ଗ୍ରନ୍ଥରେ କେତେକ ତାତ୍ତ୍ୱିକ ଆଲୋଚନା ଥିଲେ ହେଁ ସାରଳାଙ୍କ ଗ୍ରନ୍ଥରେ ତତ୍ତ୍ୱ ଉପରେ କୌଣସି ଗୁରୁତ୍ୱ ଦିଆଯାଇ ନାହିଁ । କାରଣ ଏ ଗ୍ରନ୍ଥ ରଚନା ପଛରେ ପରମ ଶାକ୍ତ ସାରଳାଙ୍କ ଉଦ୍ଦେଶ୍ୟ ଥିଲା ଚଣ୍ଡୀଙ୍କ ମହିମା କୀର୍ତ୍ତନ, ତତ୍ତ୍ୱ ପ୍ରଖ୍ୟାପନ ନୁହେଁ ।

## ବିଷୟ ବସ୍ତୁ :

ପରୀକ୍ଷିତ ରାଜା ଶୁକମୁନିଙ୍କୁ ଦୁର୍ଗାଙ୍କ କର୍ତ୍ତୃକ ମହିଷାସୁର ବଧ କାହାଣୀ ଶୁଣାଇବା ନିମନ୍ତେ ପ୍ରାର୍ଥନା କରିଅଛନ୍ତି । ଶୁକମୁନି କାହାଣୀ ଆରମ୍ଭ କରିଅଛନ୍ତି । ଏହିପରି କଥୋପକଥନ ଜରିଆରେ ଚଣ୍ଡୀ ପୁରାଣର ବିଷୟବସ୍ତୁ ବର୍ଣ୍ଣିତ ହୋଇଅଛି । ରାକ୍ଷସମାନଙ୍କ ଉତ୍ପତ୍ତି ଓ ସେମାନଙ୍କ ବଂଶର ଏକ ଦୀର୍ଘ ଇତିହାସ ଦେବାପରେ ଶୁକମୁନି କହିଅଛନ୍ତି ଯେ ସିଂହଳାସୁରର ପୁତ୍ର ବଜ୍ରସିଂହ ଓ ବଜ୍ରସିଂହର ପୁତ୍ର କପିଳ ସିଂହ । ଏହି କପିଳ ସିଂହ ରାକ୍ଷସ ଚଉଦ ବର୍ଷ ଘୋର ତପସ୍ୟା କରି ଶିବଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସମର୍ଥ ହୋଇଅଛି ଏବଂ ଜୀବନରେ ସମସ୍ତ ଯୁଦ୍ଧରେ ଜୟଲାଭ କରିବା ଓ ସ୍ତମ୍ଭନ ବିଦ୍ୟାଦ୍ୱାରା ସ୍ତ୍ରୀମାନଙ୍କୁ ଶୃଙ୍ଗାରରେ ସନ୍ତୁଷ୍ଟ କରିପାରିବା ନିମନ୍ତେ ବରଲାଭ କରିଛି । ବରପ୍ରାପ୍ତ ହୋଇ ସେ ଅନେକ ସ୍ତ୍ରୀ ଉପଭୋଗ କରିଅଛି । ତା'ର ନିଜ ସ୍ତ୍ରୀ ଧର୍ମରେଖା ଶୃଙ୍ଗାର ଭୟରେ ତାକୁ ପରିତ୍ୟାଗ କରି ସିଂହଳ ଦ୍ୱୀପକୁ ଚାଲିଯାଇଅଛି ଏବଂ ସେଠାରେ ମହିଷ ରୂପରେ ଆତ୍ମଗୋପନ କରିଅଛି । ଯମରାଜାଙ୍କ ବାହନ କୃତାନ୍ତ ନାମକ ମଇଁଷି ସିଂହଳ ଦ୍ୱୀପରେ ବୁଲି କୋମଳ ପତ୍ର, ତୃଣାଦି ଭକ୍ଷଣ କରୁଥିବା ସମୟରେ ମଇଁଷି ରୂପିଣୀ ଧର୍ମରେଖାର ଦର୍ଶନ ପାଇଅଛି ଏବଂ ବଳାତ୍କାରରେ ରମଣଇଚ୍ଛାରେ ତା ସହିତ ରତ ରହିଛି । ଫଳରେ ଧର୍ମରେଖା ମହାବଳବନ୍ତ ଓ ମହାତେଜ ସମ୍ପନ୍ନ ଏକ ପୁତ୍ରସନ୍ତାନର ଜନନୀ ହୋଇଅଛି । ଏହି ପୁତ୍ରର ନାମ ରଖାଯାଇଅଛି ମହିଷାସୁର । କବି ଲେଖିଅଛନ୍ତି—

"ମଇଁଷିର ମୁଣ୍ଡ ଗୋଟା ଶରୀର ଦନୁଜ ।"

ମାତା ରାକ୍ଷସୀ ଏବଂ ପିତା ମଇଁଷି ହୋଇଥିବାରୁ, ସେମାନଙ୍କ ପୁତ୍ର ମଇଁଷି-ମୁଣ୍ଡଧାରୀ ଗୋଟାଏ ରାକ୍ଷସ ଭାବେ କବିଙ୍କ ଦ୍ୱାରା ପରିକଳ୍ପିତ । ପୁନଶ୍ଚ ମହିଷାସୁର ନାମକରଣର ଯଥାର୍ଥତା ଏହା ଫଳରେ ପ୍ରତିପାଦିତ ହୋଇଅଛି । ଏଣେ କପିଳ ସିଂହ ନିଜ ସ୍ତ୍ରୀକୁ ଚାରିଆଡ଼େ ଖୋଜି ବୁଲିଛି । ବାଟରେ ସେ କପିଳ ମହର୍ଷିଙ୍କ ସାକ୍ଷାତ ପାଇଅଛି ଏବଂ ତାଙ୍କ ସହିତ ମିଳିତ ହୋଇ ତାଙ୍କୁ ନିଜ ସ୍ତ୍ରୀ ସମ୍ପର୍କରେ ପଚାରିଅଛି । ଧର୍ମରେଖା ସିଂହଳରେ ଥିବା ଏବଂ ଯମ ଦେବତାଙ୍କ ବାହନ ଦ୍ୱାରା ଧର୍ଷିତା ହୋଇଥିବା କଥା କପିଳ ମହର୍ଷି ଜଣାଇଛନ୍ତି । କପିଳ ସିଂହ ସିଂହଳରେ ପହଞ୍ଚିଅଛି ଏବଂ କାମାକ୍ଷୀ ନଦୀ ତୀରରେ ଜେନାବଳୀପୁର ନାମକ ଏକ ନଗର ସ୍ଥାପନ କରି ସ୍ତ୍ରୀ ପୁତ୍ରଙ୍କ ସହିତ ବାସ କରିଅଛି ।

ଡଃ ବଂଶୀଧର ମହାନ୍ତି କିନ୍ତୁ ଭିନ୍ନ ପ୍ରକାର ଆଖ୍ୟାନ ପ୍ରଦାନ କରିଅଛନ୍ତି । ସେ ଲେଖିଅଛନ୍ତି ଯେ ସିଂହଳରେ କପିଳ ସିଂହ ଔରସରୁ ସ୍ୱପତ୍ନୀ ଧର୍ମରେଖା ବା ଧର୍ମଗିରୁ ଗର୍ଭରୁ ମହିଷାସୁର ଜାତ । ଏ ମତ ଅଧିକ ଗ୍ରହଣଯୋଗ୍ୟ । କାରଣ ଡଃ ମହାନ୍ତି

ପୁରୁଣା ପୋଥିର ପାଠାନୁଯାୟୀ ଆଲୋଚନା କରିଅଛନ୍ତି । ଯମରାଜ ବାହନ ବୃତ୍ତାନ୍ତ ମଇଁଷି ପ୍ରସଙ୍ଗ ବଜାରରେ ମିଳୁଥିବା ମୁଦ୍ରିତ ପୁସ୍ତକରେ ରହିଅଛି । ମହିଷାସୁର ଜନ୍ମ ମଇଁଷି ଓ ଅସୁରୀର ମିଳନ ଫଳରେ ସମ୍ଭବ ହେବା ଅଧିକ ସମୀଚୀନ ଭାବ ପରବର୍ତ୍ତୀ କାଳରେ ଯମରାଜା ବାହନ ମଇଁଷି ବୃତ୍ତାନ୍ତ ପ୍ରକ୍ଷିପ୍ତ ହୋଇଥିବା ମନେହୁଏ ।

ମହିଷାସୁର ଅଜେୟ ବୀର ହେବା ନିମନ୍ତେ କଠୋର ତପସ୍ୟା କରିଅଛି । ନିରାହାରରେ ଅଶୀ ସହସ୍ର ବର୍ଷ ବ୍ରହ୍ମାଙ୍କୁ ତପସ୍ୟା କରିବା ପରେ ବ୍ରହ୍ମା ସେଠାରେ ଉପସ୍ଥିତ ହୋଇଅଛନ୍ତି । ମହିଷା ତାଙ୍କୁ ବର ମାଗିଛି ଯେ ସେ ଅମର ହେବ, ଅଗ୍ନିରେ ପୋଡ଼ିବ ନାହିଁ, ଖଡ଼୍ଗରେ ଛିଣ୍ଡିବ ନାହିଁ, ଜଳରେ ବୁଡ଼ିବ ନାହିଁ, ନାରାୟଣାଦି କୌଣସି ଦେବତା ବା ଅନ୍ୟ କୌଣସି ପୁରୁଷ ଦ୍ୱାରା ନିହତ ହେବ ନାହିଁ । ବ୍ରହ୍ମା ଅମର ବର ଭିନ୍ନ ଅନ୍ୟ ସମସ୍ତ ବର ପ୍ରଦାନ କରିଅଛନ୍ତି ଏବଂ ରମଣୀ ହସ୍ତରେ ବଧ ହେବ ବୋଲି କହିଅଛନ୍ତି । ମହିଷା ପୁନଶ୍ଚ ମାଗିଛି ଯେ ସେ ସ୍ତ୍ରୀ ହସ୍ତରେ ମରିବ ଏଇ ସର୍ତ୍ତରେ, ଯଦି ସେ ତା'ର ସ୍ତନ ଯୌବନ ଦେଖିପାରିବ । ବ୍ରହ୍ମା ତଥାସ୍ତୁ କହି ଅନ୍ତର୍ଦ୍ଧାନ ହୋଇଅଛନ୍ତି ।

ତା ପରେ ଆରମ୍ଭ ହୋଇଛି, ମହିଷାସୁରର ଦିଗ୍‌ବିଜୟ । ବିଭିନ୍ନ ଦେଶର ରାଜା ମହିଷାସୁରର ବଶ୍ୟତା ସ୍ୱୀକାର କରିଅଛନ୍ତି । କୁରାଷ୍ଟନ ରାଜ୍ୟର ରାଜା ତାରକ୍ଷୀ ଯୁଦ୍ଧରେ ନିହତ ହୋଇଅଛି । ବଜ୍ର ନାମକ ରାଜ୍ୟର ରାଜା ମେରୁଶୈଳ ସହିତ ମହିଷାସୁରର ଯୁଦ୍ଧ ହୋଇଅଛି ଏବଂ ମହିଷା ଯୁଦ୍ଧରେ ହାରିଯାଇଅଛି । ତାପରେ ଚଣ୍ଡମୁଣ୍ଡ, ଶୁମ୍ଭ ନିଶୁମ୍ଭ ଆଦି ଦୈତ୍ୟଙ୍କ ସହି ଯୁଦ୍ଧ କରି ପରାସ୍ତ ହେବା ଫଳରେ ମହିଷା ସେମାନଙ୍କ ସହିତ ସନ୍ଧି କରି ମିତ୍ରତା ସ୍ଥାପନ କରିଅଛି । ପରେ ପରେ ଦକ୍ଷିଣ ଦିଗକୁ ଯାହାକରି ସ୍ୱୟମ୍ବର ସଭାରେ ନିଜର କୃତିତ୍ୱ ପ୍ରଦର୍ଶନ ପୂର୍ବକ ସେ ଚନ୍ଦ୍ରଦ୍ୱୀପର ନୃପତି ଚନ୍ଦ୍ରନେମିଙ୍କ କନ୍ୟା ଚନ୍ଦ୍ରାବତୀର ପାଣିଗ୍ରହଣ କରିଅଛି । ବ୍ରହ୍ମାଙ୍କ ବରରେ ବଳୀୟାନ ମହିଷାର ସମୟକ୍ରମେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ନିଜର ଆଧିପତ୍ୟ ବିସ୍ତାର କରିଅଛି ।

ଏକଦା ନାରଦଙ୍କଠାରୁ ଶୁମ୍ଭ ନିଶୁମ୍ଭ ଜାଣିବାକୁ ପାଇଛନ୍ତି ଯେ ସ୍ୱର୍ଗ ସହିତ ସମାନ ହେବାକୁ ମହିଷାସୁରର ରାଜ୍ୟରେ ଚାରିଗୋଟି ପଦାର୍ଥର ଅଭାବ ଅଛି । ସେଗୁଡ଼ିକ ହେଉଛନ୍ତି—ପାରିଜାତ ତରୁ, ରମ୍ଭା ଅପ୍ସରୀ, ଐରାବତ ହସ୍ତୀ ଓ ଉଚ୍ଚୈଶ୍ରବା ଅଶ୍ୱ । ଏଗୁଡ଼ିକ ଅତିଶୀଘ୍ର ପଠାଇବା ନିମନ୍ତେ ଶୁମ୍ଭ ନିଶୁମ୍ଭ ଏକ ଆଜ୍ଞା ପତ୍ରିକା ଇନ୍ଦ୍ରଙ୍କ ନିକଟକୁ ଦୂତ ହାତରେ ପଠାଇଅଛନ୍ତି । ଇନ୍ଦ୍ର ଏହି ପତ୍ର ପାଇ ମହିଷା ପ୍ରତି ଅବଜ୍ଞା ପ୍ରକାଶ କରିଅଛନ୍ତି ଏବଂ ଦୂତ ଦ୍ୱୟଙ୍କୁ ବଧ କରିଅଛନ୍ତି । ଏହା ଜାଣିପାରି ଶୁମ୍ଭ ନିଶୁମ୍ଭ ସ୍ୱର୍ଗପୁର ଆକ୍ରମଣ କରିଅଛନ୍ତି । ଦେବତାମାନେ ଭୟରେ ଆତ୍ମଗୋପନ

କରିଅଛନ୍ତି । ରାକ୍ଷସ ଦ୍ରମ୍ଭଙ୍କ ଆମନ୍ତ୍ରଣ କ୍ରମେ ମହିଷାସୁର ସ୍ୱର୍ଗରେ ଉପସ୍ଥିତ ହୋଇଅଛି ଏବଂ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିପୁରରେ ନିଜର ରାକ୍ଷସବର୍ଗଙ୍କୁ ଶାସନକର୍ତ୍ତା ଭାବରେ ନିଯୁକ୍ତ କରିଅଛି ।

ଦୁଷ୍ଟ ଦାନବ ମହିଷାସୁରକୁ କିପରି ବିନାଶ କରାଯିବ, ତା'ର ଉପାୟ ଦେବତାମାନେ ସ୍ଥିର କରିପାରି ନାହାନ୍ତି । ଅନନ୍ୟୋପାୟ ହୋଇ ସେମାନେ ବିଷ୍ଣୁଙ୍କ ନିକଟରେ ପ୍ରବେଶ କରି ସେମାନଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରିଅଛନ୍ତି । ବିଷ୍ଣୁଙ୍କ ସହ ସର୍ବ-ଦେବତା ମେରୁ ପର୍ବତରେ ଉପସ୍ଥିତ ହୋଇ ଆଲୋଚନା ଚଳାଇଅଛନ୍ତି । ପୁରୁଷ ହସ୍ତରେ ମହିଷାସୁର ନିହତ ନ ହେବାର ଦେବବାକ୍ୟ ଥିବାରୁ ଏକ ଶକ୍ତିମୟୀ ନାରୀର ଆବଶ୍ୟକତା ଅନୁଭୂତ ହୋଇଅଛି । ଏହି ସମୟରେ ମହିଷାସୁର ମେରୁପର୍ବତ ତଳେ ଆତ୍ମଗୋପନ କରି ଏ ସମସ୍ତ ଆଲୋଚନା ଶୁଣି ପାରିଅଛି ଏବଂ କ୍ରୋଧାନ୍ୱିତ ହୋଇ ମେରୁଶୃଙ୍ଗ ପର୍ବତକୁ ଦୋହଲାଇ ଦେଇଅଛି । ଦୁଷ୍ଟ ରାକ୍ଷସର ଏପରି ଆଚରଣରେ ତେତିଶକୋଟି ଦେବତା କ୍ରୁଦ୍ଧ ହୋଇଉଠିଛନ୍ତି । ଫଳରେ ସମସ୍ତଙ୍କ ମୁଖରୁ ଅଗ୍ନି ନିର୍ଗତ ହୋଇ ମହାନଳ ସୃଷ୍ଟି ହୋଇଅଛି । ଏହି ମହାନଳର ବର୍ଣ୍ଣନା ଦେବାକୁ ଯାଇ କବି କହିଛନ୍ତି—

"ଗଗନ ଘୋଟି ଏ ମହା ଅନଳର ଜ୍ୱାଳା
ଧୂମ୍ର ଉଠିଲିକ କାଳ ଅନଳ ପିଙ୍ଗଳା ।
ରୁଦ୍ର ଅଗ୍ନି, ବ୍ରହ୍ମ ଅଗ୍ନି, ବିଷ୍ଣୁ ଅଗ୍ନି ଖଣ୍ଡ,
କାଳାନଳ ଅଗ୍ନି ହେଲେ ସର୍ବେ ଏକକୁଣ୍ଡ ।

ସପତ ବ୍ରହ୍ମାଣ୍ଡଯାକେ ତେଜ ପ୍ରକଟିଲା
ଧ୍ରୁବ ଲୋକଯାଏ ଅଗ୍ନି ଶିଖା ପ୍ରକାଶିଲା ।"

( ପୃ . ୪୧ )

ଏ ପ୍ରକାର ମହାନଳ ଦେଖି ମହିଷାସୁର ଭୟଭୀତ ହୋଇପଡ଼ିଛି ଏବଂ ସେ ସ୍ଥାନ ତତ୍‌କ୍ଷଣାତ୍ ତ୍ୟାଗ କରିଅଛି । ଦେବତାମାନେ ମହାନଳକୁ ଶାନ୍ତ ହେବା ନିମନ୍ତେ ପ୍ରାର୍ଥନା କରିଅଛନ୍ତି । ଅନଳ ଶାନ୍ତ ହେବା ପରେ ବ୍ରହ୍ମା ଆହୁତି ଦେଇ-ଅଛନ୍ତି । ସମସ୍ତଙ୍କୁ ଚକିତ କରି ମହାନଳ ମଧ୍ୟରେ ଏକ ଜ୍ୟୋତିର ଦର୍ଶନ ମିଳିଅଛି ଏବଂ ସେହି ଜ୍ୟୋତିରୁ କ୍ରମଶଃ ତେଜପାଦ, ଏକଶିର, ସହସ୍ରେକ ଭୁଜବିଶିଷ୍ଟା ଏବଂ ଅନାଦି ଶକ୍ତି ସମ୍ପନ୍ନା ଅଭୟା କାତ୍ୟାୟନୀ, ମହାବୈଷ୍ଣବୀ ଦେବୀଙ୍କର ଉତ୍ପତ୍ତି ହୋଇଅଛି । ତେତିଶିକୋଟି ଦେବତାଙ୍କ ମହାତେଜ ଘେନି ଜାତ ହୋଇଥିବାରୁ ଏହି ଦେବୀ ମହାନ୍ ଶକ୍ତିର ଅଧିକାରିଣୀ ହୋଇଅଛନ୍ତି । ବେଦପତି ବ୍ରହ୍ମା ତାଙ୍କର ନାମ ରଖିଛନ୍ତି 'ଦୁର୍ଗା' । ସମସ୍ତ ଦେବଗଣଙ୍କ ତରଫରୁ ବ୍ରହ୍ମା ଅଷ୍ଟଭୁଜ ଯୋଡ଼ି ଦେବୀ

ଦୁର୍ଗାଙ୍କୁ ସମସ୍ତ ଦୁଃଖ ଜଣାଇଛନ୍ତି । ଦେବୀ ଦୁର୍ଗା କହୁଛନ୍ତି ଯେ କୌଣସି ଶସ୍ତ୍ର ଓ ବାହନ ବ୍ୟତିରେକ ପାପିଷ୍ଠ ଦାନବଙ୍କୁ ବଧ କରିବା ତାଙ୍କ ପକ୍ଷରେ ଏକାନ୍ତ ଅସମ୍ଭବ । ଏହାଶୁଣି ଦେବତାଗଣ ନିଜ ନିଜ ଅସ୍ତ୍ରଶସ୍ତ୍ର ଓ ବାହନ ଦେବୀଙ୍କୁ ପ୍ରଦାନ କରିଅଛନ୍ତି । ଦୁର୍ଗା, ଦେବତାଗଣଙ୍କୁ ନିଶ୍ଚିନ୍ତରେ ରହିବା ନିମିତ୍ତ ଅଭୟ ପ୍ରଦାନ କରିଅଛନ୍ତି ଓ ସମସ୍ତ ବାହନ ଓ ଅସ୍ତ୍ରଶସ୍ତ୍ରମାନ ଶୂନ୍ୟମାର୍ଗରେ ରଖି ରାକ୍ଷସ ନିଧନାର୍ଥେ ଯାତ୍ରା ଆରମ୍ଭ କରିଅଛନ୍ତି ।

ଅପରୂପ ସୌନ୍ଦର୍ଯ୍ୟର ଅଧିକାରିଣୀ ଦେବୀ ଦୁର୍ଗା ରତ୍ନଗିରି ଉପରେ ଅବସ୍ଥାନ କରିଅଛନ୍ତି । ସୌନ୍ଦର୍ଯ୍ୟମୟୀ ଦେବୀଙ୍କ ଦର୍ଶନ ପାଇ ଚଣ୍ଡମୁଣ୍ଡ ରାକ୍ଷସ ଦ୍ୱୟ ମହିଷାସୁରକୁ ଜଣାଇଅଛନ୍ତି ଏବଂ ଦେବୀଙ୍କୁ ବଳାତ୍କାରରେ ତା ନିକଟକୁ ଧରିନେବା ପାଇଁ ମହିଷା ସେମାନଙ୍କୁ ନିର୍ଦ୍ଦେଶ ଦେଇଅଛି । ଫଳରେ ଚଣ୍ଡମୁଣ୍ଡ ଏବଂ ପରେ ପରେ ଶୁମ୍ଭ ନିଶୁମ୍ଭ, ଭ୍ରମର ବେତାଳ, କାଳମାଳୀ, ବିଡ଼ାଳାକ୍ଷ, ରକ୍ତବୀଜ, ଘୋରଘଣ୍ଟ, କାଳଦଣ୍ଡ, ଧୂମ୍ର-ଲୋଚନ ପ୍ରମୁଖ ରାକ୍ଷସଗଣ ଦେବୀଙ୍କ ହସ୍ତରେ ମୃତ୍ୟୁ ବରଣ କରିଅଛନ୍ତି । ଦେବୀ ଦୁର୍ଗା ଅନନ୍ତ କୋଟି ଦେବୀଙ୍କୁ ଉତ୍ପତ୍ତି କରି ରାକ୍ଷସ ସୈନ୍ୟଙ୍କୁ ବିନାଶ କରି-ଅଛନ୍ତି ।

ଶେଷରେ ସ୍ୱୟଂ ମହିଷାସୁର ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରିଅଛି । ଦେବୀଙ୍କ ସହିତ ତା'ର ଭୀଷଣ ଯୁଦ୍ଧ ହୋଇଅଛି । ମହିଷାସୁରକୁ ଦେବୀ ନିଧନ କରି ନ ପାରିବାରୁ ହତୋତ୍ସାହ ହୋଇ ପଡ଼ିଅଛନ୍ତି । ଏହିଠାରେ ସର୍ବ ମଙ୍ଗଳା ମହିଷା ନିଧନର ଭେଦ ଦୁର୍ଗାଙ୍କୁ ବତାଇ ଦେଇଅଛନ୍ତି । ସେ କହୁଛନ୍ତି ଯେ ଦୁର୍ଗାଙ୍କ ଜାନୁ ଯୌବନ ପାପିଷ୍ଠ ରାକ୍ଷସ ନ ଦେଖିଲା ପର୍ଯ୍ୟନ୍ତ, ତା'ର ମୃତ୍ୟୁ ହେବ ନାହିଁ । ପ୍ରଥମେ ଦୁର୍ଗା ଲଜ୍ଜାବଶତଃ ଉଲଗ୍ନ ହେବା ନିମିତ୍ତ ଅସମ୍ମତ ହୋଇଅଛନ୍ତି । ରାକ୍ଷସର ଉତ୍ପାତ ବେଳକୁ ବେଳ ସୀମାତିକ୍ରମ କରିବାରୁ ସର୍ବମଙ୍ଗଳା ଦୁର୍ଗାଙ୍କୁ ଅତି ବିନୀତ ଭାବେ ଅନୁରୋଧ କରିଅଛନ୍ତି । କବି ଲେଖିଛନ୍ତି—

"ମଙ୍ଗଳା ବିନୟ ଶୁଣି ଦୁର୍ଗତି ତାରିଣୀ
ଭ୍ରମୁ ଣ୍ଡୀ ରୂପେକ ଧରିଲେକ ଗୋହାମଣି ।

ବିବସନା ହେଲେ କେଶ କରିଣ ମୁକୁଳ
କାଛଟା ପିନ୍ଧିଲେ ଦିଶେ ଜାନୁ ଯେ ଯୁଗଳ ।

ସ୍ତନ ଯୌବନ ସମସ୍ତ ହୋଇଲାକ ଦୃଶ୍ୟ
ତେତିଶ କୋଟି ଦେବତା ପାଇ ମହାତ୍ରାସ ।

ଏସନ ଦେଖିଣ ମୈଷା ଚକିତେ ରହିଛ
ବେନି ଲୋଚନରେ ଦୁର୍ଗା ରୂପକୁ ଚାହିଁଛ ।

ଦେବଙ୍କ ଦୁର୍ଲ୍ଲଭ ଯେଉଁ ଭଗ ମାର୍ଗସ୍ଥାନ
ତା ଦେଖିବାକୁ ମହିଷା ହୋଇଲା ଖଜନ ।"

( ପୃ-୧୪୯ )

ବିବସ୍ତ୍ରା ଦୁର୍ଗାଙ୍କର ଯାନୁଯୌବନ ଦେଖି ମହିଷାସୁର ବିମୋହିତ ହୋଇ ଯାଇଅଛି । ଏହି ଅବସରରେ ଦୁର୍ଗା ତାହାର ବକ୍ଷସ୍ଥଳରେ ଶୂଳ ବିଦ୍ଧ କରିଅଛନ୍ତି । ଫଳରେ ମଦମତ ରାକ୍ଷସର ପିଣ୍ଡରୁ ପ୍ରାଣ ଉଡ଼ିଯାଇଅଛି । ତାପରେ ଦୁର୍ଗାଙ୍କ ଆଦେଶରେ କୋଟି କୋଟି ଯୋଗିନୀ, ପିଶାଚୁଣୀ, ଡାକଣୀ ଇତ୍ୟାଦି ଅସୁର ରାଜ୍ୟରେ ପ୍ରବେଶ କରି ସମସ୍ତ ରାକ୍ଷସ ଓ ରାକ୍ଷସୀଙ୍କୁ ନିପାତ କରିଅଛନ୍ତି । ଦେବଗଣ ଅତ୍ୟନ୍ତ ଆନନ୍ଦିତ ହୋଇ ଦେବୀଙ୍କ ନିକଟକୁ ଅଗ୍ରସର ହୋଇଅଛନ୍ତି ; ମାତ୍ର ଦେବୀଙ୍କୁ ବିବସନା ଥିବା ଦେଖି ତାଙ୍କ ନିକଟକୁ ଯିବା ନିମନ୍ତେ ସଙ୍କୋଚ ବୋଧ କରିଛନ୍ତି । ଦେବଗଣଙ୍କୁ ଦେଖି ଦେବୀ କ୍ରୋଧାନ୍ୱିତା ହୋଇପଡ଼ିଛନ୍ତି । କାରଣ ଦେବତାଗଣ ଦୈତ୍ୟଙ୍କୁ ବରପ୍ରଦାନ କରିଥିବାରୁ ତାଙ୍କୁ ଦୈତ୍ୟ ସମ୍ମୁଖରେ ଉଲଗ୍ନା ହେବାକୁ ପଡ଼ିଛି । ଉଲଗ୍ନା ଦେବୀ କେଶ ମୁକୁଳିତ କରି ବିକଟାଳ ରୂପ ଧାରଣ କରିଅଛନ୍ତି ଏବଂ ଖଣ୍ଡା ଖର୍ପର ସହ ଦେବଗଣଙ୍କ ଆଡ଼କୁ ମାଡ଼ିଆସିଛନ୍ତି । କଙ୍କାଳୀ ରୂପ ଦର୍ଶନରେ ଦେବଗଣ ମହାଭୟ ପାଇ ଆତ୍ମଗୋପନ କରିଅଛନ୍ତି । ଦେବ ଦେବ ମହାଦେବ ପଳାଇଯାଇ ନ ପରି ତାଣ୍ଡବ ନୃତ୍ୟରେ ଭୋଳ ହୋଇ ଯାଇଛନ୍ତି । ମହାମାୟା ତାଙ୍କୁ ଭକ୍ଷଣ କରିବାକୁ ଉଦ୍ୟତ ହୁଅନ୍ତେ, ସେ ତାଙ୍କୁ ସ୍ତୁତି କରିଅଛନ୍ତି । ଅନେକ ବିନୀତ ପ୍ରାର୍ଥନା କରିବା ପରେ, ଦେବୀ ପଚାରିଛନ୍ତି, "ତୁମ୍ଭେ ଅଜ୍ଞାନ ଦେବଗଣ ରାକ୍ଷସଙ୍କୁ କାହିଁକି ଏପରି ବର ପ୍ରଦାନ କର ? ତୁମ୍ଭେମାନେ ବର ପ୍ରଦାନ କରି ନିଜର ମହତ୍ତ୍ୱ ପ୍ରତିପାଦନ କର; କିନ୍ତୁ ମୋତେ ରାକ୍ଷସଙ୍କୁ ବଧ କରିବା ପାଇଁ ନିଜ ମହତ୍ତ୍ୱ ନଷ୍ଟ କରିବାକୁ ପଡ଼େ । ଏଣୁ ପ୍ରଥମେ ତୋତେ ବଧ କରି ପରେ ଅନ୍ୟ ସମସ୍ତ ଦେବତାଙ୍କୁ ବଧ କରିବି ।" ଈଶ୍ୱର ଭୟଭୀତ ହୋଇପଡ଼ିଛନ୍ତି ସତ, ମାତ୍ର ନୃତ୍ୟ ତ୍ୟାଗ କରି ନାହାନ୍ତି । ଯେଉଁ ନୃତ୍ୟ ଦେଖି ଦେବତାଗଣ ବିମୁଗ୍ଧ ହୋଇ ଯାଆନ୍ତି, ସେ ନୃତ୍ୟ ଦେଖି ଦୁର୍ଗା ବିମୋହିତ ହେବା ସ୍ୱାଭାବିକ । ଏଣୁ ଈଶ୍ୱରଙ୍କ ପ୍ରତି ତାଙ୍କର ଦୟା ଜାତ ହୋଇଛି ଏବଂ ତାଙ୍କୁ ଏକ ବର ମାଗିବାକୁ ସେ ଈଶ୍ୱରଙ୍କୁ କହିଅଛନ୍ତି । ଈଶ୍ୱର ଦୁର୍ଗାଙ୍କୁ ସତ୍ୟ କରାଇଛନ୍ତି ଏବଂ ତାପରେ କହିଛନ୍ତି; "ହେବୁ ତୁ ମୋର ଘରଣୀ" ତାପରେ ଈଶ୍ୱର ଭବାନୀଙ୍କୁ କୋଳାଗତ କରିଅଛନ୍ତି ଏବଂ ସମସ୍ତ ଦେବତାଗଣ ସେଠାରେ ଉପସ୍ଥିତ ହୋଇ ଈଶ୍ୱରଭବାନୀଙ୍କୁ ଆରାଧନା କରିଅଛନ୍ତି ।

## ଲକ୍ଷ୍ମୀ ନାରାୟଣୀ ବଚନିକା :

ପୂର୍ବରୁ ଆଲୋଚିତ ଗ୍ରନ୍ଥମାନଙ୍କ ବ୍ୟତୀତ ଉତ୍କଳ ବ୍ୟାସ ସାରଳା ଦାସଙ୍କର ଆହୁରି ଗୋଟିଏ କ୍ଷୁଦ୍ର ଗ୍ରନ୍ଥ ଥିବାର ଜଣାଯାଏ । ୭୯ ସଂଖ୍ୟକ ପଦ ସମ୍ବଳିତ ଏହି

କ୍ଷୁଦ୍ର ଅପ୍ରକାଶିତ ଗ୍ରନ୍ଥଟି ମାତ୍ର ନଅଗୋଟି ପୃଷ୍ଠାର ସମାହାର । ଏହାର ଭଣିତାରୁ ଜଣାଯାଏ, ଏହା ସାରଳା ଦାସଙ୍କ କୃତ । ଭଣିତାରେ ଅଛି—

"ଲକ୍ଷ୍ମୀ ନାରାୟଣଙ୍କ ପଦ୍ମ ଚରଣେ ସେବା
ସୁଦ୍ରମୁନି ସାରଳା ଦାସଙ୍କୁ ଗତି ମୁକତି ଦେବା ।"

ଏହି ଅପ୍ରକାଶିତ ପୋଥିର ସନ୍ଧାନ ଏବେ ଡଃ ବଂଶୀଧର ମହାନ୍ତିଙ୍କ ଦୃଷ୍ଟିକୁ ଆସିଅଛି ଏବଂ ସେ ମହାଶୟ ଏହି ଗ୍ରନ୍ଥ ଉପରେ ସବଶେଷ ଆଲୋଚନା ସ୍ୱରଚିତ 'ଓଡ଼ିଆ ସାହିତ୍ୟର ଇତିହାସ' ( ୨ୟ ଭାଗ ) ରେ କରିଅଛନ୍ତି । ଉକ୍ତ କ୍ଷୁଦ୍ର ଗ୍ରନ୍ଥଟିର ରଚନାର କ୍ରମ ଓ ରଚନାର କାଳ ସମ୍ବନ୍ଧରେ କୌଣସି ସୂଚନା କବିଙ୍କର ଏହି ଗ୍ରନ୍ଥରେ କିମ୍ବା ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ଦେଖିବାକୁ ମିଳେନା । କ୍ଷୁଦ୍ର ହେଲେ ହେଁ ଏହିପରି ଏକ ସରସ ସୁନ୍ଦର ଗ୍ରନ୍ଥ କିପରି ଲୋକଲୋଚନକୁ ଏତେ ବିଳମ୍ବରେ ଆସିଲା; ଏହି ପ୍ରଶ୍ନ ସ୍ୱତଃ ମନକୁ ଆସେ । ଅନୁମିତ ହୁଏ, ଏହା ସାରଳାଦାସଙ୍କ କବି ଜୀବନର ପ୍ରାକ୍ କାଳରେ ରଚିତ ଏବଂ ପରବର୍ତ୍ତୀ ବିଶାଳକାୟ ସାହିତ୍ୟକୃତି ମଧ୍ୟରେ ଏହା ସନ୍ତ୍ରୀ ହୋଇ ବସିଅଛି । କେବଳ ଭଣିତାରୁ କବିଙ୍କ ନାମ ପାଇ ଏହାକୁ ତାଙ୍କ ରଚନା ଭାବେ ଗ୍ରହଣ କରି ନେବାରେ କେତେକ ତ୍ରୁଟି ରହିଯିବାର ଆଶଙ୍କା ମଧ୍ୟ ଅଛି । ପରବର୍ତ୍ତୀ କାଳରେ ପ୍ରସିଦ୍ଧି ଲାଭ କରି ନ ଥିବା କୌଣସି ଜଣେ କବି ନିଜ କୃତିକୁ ଅଧିକ ଲୋକପ୍ରିୟ କରିବା ନିମନ୍ତେ ଅସାଧାରଣ ପ୍ରତିଭାର ସାରଳାଙ୍କ ନାମରେ ଭଣିତ କରିଥିବାର ସମ୍ଭାବନାକୁ ମଧ୍ୟ ଏଡ଼େଇ ଦେଇହେବ ନାହିଁ । କାରଣ ଏପରି ଅନେକ ଦୃଷ୍ଟାନ୍ତ ପ୍ରାଚୀନ ସାହିତ୍ୟ ଆଲୋଚନା ଅବକାଶରେ ଦୃଷ୍ଟିକୁ ଆସିଥାଏ । ସେ ଯାହା- ହେଉ, ଏହା ସାରଳାଙ୍କ କୃତି ନୁହେଁ, ପରବର୍ତ୍ତିକାଳୀନ ଅନ୍ୟ କୌଣସି କବିଙ୍କର— ଏକଥା ଅନ୍ୟ ଆଲୋଚକମାନଙ୍କ ଦ୍ୱାରା ପ୍ରମାଣିତ ନ ହେବା ପର୍ଯ୍ୟନ୍ତ, ଆମେ ଏହାକୁ ସାରଳାଙ୍କ ରଚନା ଭାବେ ଗ୍ରହଣ କରିନେବା ଅଯୌକ୍ତିକ ମନେ ହୁଏନା । ଏ ଗ୍ରନ୍ଥର ମୁଦ୍ରିତ ରୂପ ଲୋକଲୋଚନକୁ ଆସି ନ ଥିବା ହେତୁ, ଆମର ଏହି ଆଲୋଚନା ଡଃ ମହାନ୍ତିଙ୍କ ଆଲୋଚନା ଅନୁସରଣରେ କରାଯାଇପାରେ ।

ଆଲୋଚ୍ୟ କ୍ଷୁଦ୍ର ଗ୍ରନ୍ଥଟି ଦାଣ୍ଡିବୃତ୍ତରେ ଲିଖିତ । ମହାଲକ୍ଷ୍ମୀ ଏବଂ ନାରାୟଣଙ୍କ ମଧ୍ୟରେ କଥୋପକଥନ ଛଳରେ ଏଥିରେ ସ୍ଥାନ ପାଇଥିବା ଆଖ୍ୟାୟିକାଟି ବର୍ଣ୍ଣିତ । ମହାଲକ୍ଷ୍ମୀଙ୍କ ବନ୍ଦନାରୁ ଚଉତିଟି ଆରମ୍ଭ । କବି ଗାଇଛନ୍ତି ।

"ଜୟତୁ ମୋହାଲକ୍ଷ୍ମୀ ମାଗୋ ହରିର ଘରଣୀ
ଜୟତୁ ମହାଲକ୍ଷ୍ମୀ ମାଗୋ ତ୍ରିଭୁବନ ଗୋସାମଣି ।

କ୍ଷିର ସୋମେନ୍ଦ୍ର ଯାତ ତୈଲୋକ ମୋହନ
ତୁମ୍ଭର ଚରଣେ ମାଗୋ କରଇ ଦଇନ ।" ଇତ୍ୟାଦି ।

ତାପରେ ଲକ୍ଷ୍ମୀ ନାରାୟଣଙ୍କୁ ନିଜର ଗୁରୁବାର ବ୍ରତ ନାମକ ଏକ ବ୍ରତ ଥିବାର ଜଣାଇ ଅଛନ୍ତି । ଏହି ପୂଜା ବିଧି ଏବଂ ଏହା ପାଳନ କରିବା ଦ୍ୱାରା ପ୍ରାପ୍ତ ହେଉଥିବା ଫଳ ସମ୍ପର୍କରେ ସେ ସମ୍ୟକ୍ ଆଲୋକପାତ କରିଅଛନ୍ତି । ପୁନଶ୍ଚ କି କି କାର୍ଯ୍ୟ କରିବା ଫଳରେ ସେ ଅସନ୍ତୁଷ୍ଟ ହୁଅନ୍ତି ତାହା ମଧ୍ୟ ଏହି ବର୍ଣ୍ଣନାରେ ସ୍ଥାନ ପାଇଅଛି । ଏହି ବର୍ଣ୍ଣନା ଅନ୍ତରାଳରେ ତତ୍କାଳୀନ ଓଡ଼ିଶାର ସାମାଜିକ ରୀତିନୀତି ଓ ଲୋକ ବିଶ୍ୱାସ ପ୍ରତିଫଳିତ । ଭାତ ଖାଇବା ସମୟରେ ମୁଣ୍ଡ କୁଣ୍ଡାଇବା, ପାଦ ଧୋଇବା ସମୟରେ ଅର୍ଦ୍ଧେକ ଅଂଶ ନ ଧୋଇବା, ବୁଧବାର ଓ ଶନିବାରରେ ଧାନ ବିକ୍ରୟ କରିବା, ଗୁରୁବାର ଧନ ସୁନା ବିକ୍ରୟ କରିବା, ବସିଥିବା ସମୟରେ ନଖଦ୍ୱାରା ଭୂଇଁରେ ଗାର ପକାଇବା, ସଶବ୍ଦରେ ନିଃଶ୍ୱାସ ତ୍ୟାଗ କରିବା, ସ୍ତ୍ରୀ ହୋଇ ସ୍ୱାମୀର ସେବା ନ କରିବା, ସ୍ୱାମୀ ହୋଇ ସ୍ତ୍ରୀର ସେବା କରିବା ଆଦି କାର୍ଯ୍ୟ ସମାଜ-ଗର୍ହିତ କାର୍ଯ୍ୟ ଭାବେ ଗଣ୍ୟ ହୁଏ ଏବଂ ଏପରି କାର୍ଯ୍ୟ ଆଚରଣ କରୁଥିବା ନରନାରୀ ଲକ୍ଷ୍ମୀଦେବୀଙ୍କ କରୁଣାରୁ ବଞ୍ଚିତ ହୁଅନ୍ତି ।

ଯେଉଁ ପରିବାର ପୁରୁଷ-କେନ୍ଦ୍ରିକ ଏବଂ ପରିବାରର ସମସ୍ତ ସଭ୍ୟ ପ୍ରଧାନ ପୁରୁଷର ଅନୁଗତ, ସେ ପରିବାରକୁ ଲକ୍ଷ୍ମୀ ଆଦୌ ପରିତ୍ୟାଗ କରିପାରନ୍ତି ନାହିଁ । ଏ ପ୍ରସଙ୍ଗରେ କୁହାଯାଇଅଛି—

"ଘରର ଗିରସ୍ତ ବୋଲେ ସମସ୍ତ ପ୍ରାଣି ଥାଇଁ
ଶତ ଜନ୍ମ ପର୍ଯ୍ୟନ୍ତେ ମୁଁ ତାହାକୁ ନ ଛାଡ଼ଇଁ ।"

ଯେଉଁ ସ୍ତ୍ରୀ ନିଜ ସ୍ୱାମୀ ପ୍ରତି ରୁଷ୍ଟ ହୁଏ, ସ୍ୱାମୀଙ୍କୁ ଅବଜ୍ଞା କରେ, ପରପୁରୁଷରେ ରତ ରହେ, ଏବଂ ସର୍ବଦା ଅପରିଷ୍କାର ରହେ, ତାହା ପ୍ରତି ଲକ୍ଷ୍ମୀ ବିମୁଖ ହୁଅନ୍ତି ଏବଂ ସେ କାଙ୍ଗାଳିନୀ ହୋଇ ଦ୍ୱାରଦ୍ୱାର ବୁଲେ । ଏହା ବ୍ୟତୀତ ଯେଉଁ ସ୍ତ୍ରୀ ଖର ଖର ହୋଇ ହସେ, ପୁରୁଷ ଆଗରେ ବଡ଼ାଇ ଦେଖାଇ ହୁଏ, ଘର ଝାଡ଼ୁଆକୁ ଚୁଲିରେ ପୂରାଏ, ଯେଉଁ ପୁରୁଷ କାଉ ଭଳି ବୁଡ଼ ମାରେ, ନଖରେ ଦାନ୍ତ ଖୋଳେ, ଏମାନଙ୍କୁ ଲକ୍ଷ୍ମୀ ଘୃଣା କରନ୍ତି । ଅମାବାସ୍ୟା ସଂକ୍ରାନ୍ତିରେ ଧାନ ଉସୁଆଁଇବା ଏବଂ ଅମାବାସ୍ୟା, ସଂକ୍ରାନ୍ତି, ଗୁରୁବାର ଓ ଏକାଦଶୀ—ଏହି ଚାରିଦିନରେ ଆମ୍ବିଲ ଖାଇବା ନିଷିଦ୍ଧ । ଏହି ନିୟମଗୁଡ଼ିକ ପାଳନ କରୁଥିବା ବ୍ୟକ୍ତିକୁ ଶୁଚିବନ୍ତ ଓ ବଗୁରବନ୍ତ କୁହାଯାଏ । ଏହିପରି ମାର୍ଜିତ ଆଗୁର ଓ ବଗୁର ଯେଉଁଠି ଲକ୍ଷ୍ମୀ ନ ଦେଖନ୍ତି, ସେଠାରେ ସେ କ୍ଷଣେ ସୁଦ୍ଧା ରହନ୍ତି ନାହିଁ ।

ଯେଉଁମାନେ ଲକ୍ଷ୍ମୀଙ୍କ କୋପ ଦୃଷ୍ଟିରେ ପଡ଼ି କାଳ କାଳ ଦରିଦ୍ର ଜୀବନ ଅତିବାହିତ କରନ୍ତି ସେମାନେ ହେଉଛନ୍ତି—ରଜୋବତୀ ନାରୀକୁ ସ୍ପର୍ଶ କରୁଥିବା ପୁରୁଷ, ଅନ୍ନ ଭୋଜନ ବେଳେ ଭୂମିରେ ଅନ୍ନ ନିକ୍ଷେପ କରୁଥିବା ବ୍ୟକ୍ତି, ଜଳରେ ଉଲଗ୍ନ ହୋଇ ପ୍ରବେଶ କରୁଥିବା ବ୍ୟକ୍ତି, ମଧୁର ଭାଷା ବ୍ୟବହାର କରୁ ନ ଥିବା

ଜନ, କ୍ଷୀରରେ କ୍ଷାର ମିଶାଉଥିବା ଜନ ଏବଂ ବାଛୁରୀକୁ ପର୍ଯ୍ୟାପ୍ତ ପରିମାଣ ପର୍ଯ୍ୟନ୍ତ ଗୋଦୁଗ୍ଧ ପାନ କରିବାକୁ ନ ଦେଉଥିବା ଜନ ।

ଏହି ଗ୍ରନ୍ଥଟି ଆକାରରେ କ୍ଷୁଦ୍ର ହେଲେ ହେଁ ଏଥିରେ ସ୍ଥାନ ପାଇଥିବା ନୀତିକଥାମାନ ଯେ କୌଣସି ଆଧୁନିକ ମାନବ ପକ୍ଷରେ ମଧ୍ୟ ଗ୍ରହଣୀୟ । ଏଥିରେ ସାମାଜିକ ଜୀବନରେ ଶୁଚିତାର ଆବଶ୍ୟକତା, ନାରୀର ଶ୍ରେଷ୍ଠତ୍ୱ, ଆସ୍ତିର ବିସ୍ତୃତ ପରିଚ୍ଛନ୍ନତା, ଧନଚର୍ଯ୍ୟା, ପାପପୁଣ୍ୟ ଓ ନ୍ୟାୟାନ୍ୟାୟ ସମ୍ପର୍କରେ ବିଶଦ ବର୍ଣ୍ଣନା ଥିବାରୁ ସାମାଜିକ ଜୀବନରେ ଏହାର ଯଥେଷ୍ଟ ଉପଯୋଗିତା ରହିଅଛି । ସାମ୍ପ୍ରତିକ ସମାଜରେ ମଧ୍ୟ ଏହାର ପ୍ରୟୋଜନୀୟତା ଅନୁଭୂତ ହୁଏ । ଆଲୋଚିତ ନିଷିଦ୍ଧ କାର୍ଯ୍ୟ ମଧ୍ୟରୁ କୌଣସି ଗୋଟିଏ କେହି ବ୍ୟକ୍ତି ଭୁଲ ବଶତଃ କରିଦେଲେ, ତାହାକୁ ପୁରୁଣାକାଳିଆ ବୁଢ଼ାବୁଢ଼ୀମାନେ ଲକ୍ଷ୍ମୀଛଡ଼ା ବୋଲି କହନ୍ତି । କୌଣସି ଝିଅ ବା ବୋହୂ ଏ ପ୍ରକାର ଭୁଲ କଲେ ତାକୁ ଅଲକ୍ଷଣୀ ବୋଲି ଭର୍ତ୍ସନା କରାଯାଏ ।

ସାରଳା ପରବର୍ତ୍ତୀ ପଞ୍ଚସଖା ଯୁଗର କବି ବଳରାମ ଦାସ 'ଲକ୍ଷ୍ମୀ ପୁରାଣ' ରଚନା କରିଥିଲେ । ଏଥିରେ ସେ ଲକ୍ଷ୍ମୀଙ୍କ ମାହାତ୍ମ୍ୟ ବର୍ଣ୍ଣନା କରି ତାଙ୍କର ପ୍ରାଧାନ୍ୟ ପ୍ରକାଶ କରିଅଛନ୍ତି । ଏ ଗ୍ରନ୍ଥରେ ମଧ୍ୟ ନ୍ୟାୟ ଅନ୍ୟାୟ, ପାପ ପୁଣ୍ୟ, ନାରୀ ନିମନ୍ତେ ପ୍ରୟୋଜନୀୟ ସଂଯମତା, ଶୁଚିତା ଇତ୍ୟାଦିର ବହୁଳ ବର୍ଣ୍ଣନା ରହିଅଛି । ଏକ ସୁନ୍ଦର ଆଖ୍ୟାୟିକା ମାଧ୍ୟମରେ କବି ସମାଜକୁ ସୁନ୍ଦର ନୀତିଶିକ୍ଷା ପ୍ରଦାନ କରିଅଛନ୍ତି, ଯାହା ଆଜିର ସମାଜରେ ମଧ୍ୟ ନୈତିକ ଜୀବନ ଯାପନ ନିମନ୍ତେ ଅପରିହାର୍ଯ୍ୟ । ଏ ଗ୍ରନ୍ଥ ଆଜି ମଧ୍ୟ ଘରେ ଘରେ ପଠିତ ଏବଂ ପୁଣ୍ୟ ଗ୍ରନ୍ଥ ହିସାବରେ ପୂଜିତ । ଏହି ଗ୍ରନ୍ଥ ସାରଳାଙ୍କ ଆଲୋଚ୍ୟ ଗ୍ରନ୍ଥର ଏକ ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ ଭାବେ ଗ୍ରହଣ କରାଯାଇପାରେ । ଅନୁମିତ ହୁଏ, ସାରଳାଙ୍କ ଗ୍ରନ୍ଥ ବଳରାମକାଳୀନ ସମାଜରେ ବେଶ୍ ଆଦର ଲାଭ କରିଥିବାରୁ ଏହାର ଅନୁସରଣରେ କବି ଅନ୍ୟ ଏକ ସରସ ସୁନ୍ଦର ଗ୍ରନ୍ଥ ରଚନା କରିବା ନିମନ୍ତେ ଆଗ୍ରହୀ ହୋଇଥିଲେ । ଆଲୋଚ୍ୟ ଗ୍ରନ୍ଥଟି ଆକାରରେ କ୍ଷୁଦ୍ର ହେଲେ ହେଁ ପ୍ରାଚୀନ ସାହିତ୍ୟ ଦୃଷ୍ଟିରୁ ଏହା ଯେ ନିଶ୍ଚିତ ଭାବେ ମୂଲ୍ୟବାନ, ଏଥିରେ ସନ୍ଦେହ ନାହିଁ ।

## ବିବିଧ ଆଲୋଚନା

## ସାରଳା ମହାଭାରତର ଜନପ୍ରିୟତା :

ସାରଳା ଦାସଙ୍କ ଆବିର୍ଭାବ ଏକ ସନ୍ଧିସନ୍ଧ ମୁହୂର୍ତ୍ତରେ । ଯେତେବେଳେ ସଂସ୍କୃତ ଭାଷା ତାହାର ଅପ୍ରତିହ ରାଜତ୍ୱ ବିସ୍ତାର କରିଥିଲା ଏବଂ ପ୍ରାନ୍ତୀୟ ଭାଷାରେ ସାହିତ୍ୟ ରଚନା କରିବା ନିମନ୍ତେ ପୃଷ୍ଠପୋଷକତା ମିଳୁ ନ ଥିଲା, ସେତିକବେଳେ ସାରଳା ଦାସ ଲେଖନୀ ଚାଳନା କରି ସାହସିକତାର ପରିଚୟ ଦେଲେ । ସମକାଳୀନ

ସମାଜରେ ସଂସ୍କୃତ ପଣ୍ଡିତମାନଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା । ସେମାନେ ସଂସ୍କୃତ ଗ୍ରନ୍ଥମାନ ପଢ଼ି ସାଧାରଣ ଜନତାକୁ ତା'ର ଅର୍ଥ ବୁଝାଉଥିଲେ । କଥିତ ଭାଷାରେ ସାହିତ୍ୟ ରଚନା କରିବା ପାପ—ଏହା ସାଧାରଣ ଜନତାର ବିଶ୍ୱାସ ଥିଲା । ଏହି ପରିପ୍ରେକ୍ଷୀରେ ଜନ ସାଧାରଣଙ୍କ ଦ୍ୱାରା ତାଙ୍କ ଗ୍ରନ୍ଥ ଯେ ଆଦୃତ ହେବ, ଏ ସମ୍ବନ୍ଧରେ ସେ ସନ୍ଦିହାନ ଥିଲେ । ସୁତରାଂ ଗ୍ରନ୍ଥ ରଚନା ସମ୍ପର୍କରେ ତାଙ୍କୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥିଲା । ତତ୍କାଳୀନ ସମାଜରେ ତାଙ୍କର ଗ୍ରନ୍ଥ ଯେଉଁମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା, ସେମାନେ ହେଲେ, ରାମା, ଦାମା, ଶାମା, ଯଦୁଆ, ମଧୁଆ ପ୍ରମୁଖ ସରଳ ଗ୍ରାମ୍ୟ ଜନତା । ସେମାନଙ୍କ ମନସ୍ତତ୍ତ୍ୱ କବିଙ୍କୁ ବେଶ୍ ଜଣାଥିଲା । ତେଣୁ ଗ୍ରନ୍ଥର ଛତ୍ରେ ଛତ୍ରେ ଗ୍ରାମ୍ୟଜନ ସୁଲଭ ଚିତ୍ର ଫୁଟାଇ ସେ ପାଠକମାନଙ୍କ ମନକୁ ଟାଣି ନେଇଥିଲେ ।

ମହାଭାରତରେ ସାଧାରଣ ବିଷୟ ସାଧାରଣ ଭାବରେ ହିଁ କୁହାଯାଇଛି । ଉତ୍କଳୀୟ ଜନତାର ସୁଖ-ଦୁଃଖ, ହର୍ଷ-ବିଷାଦ ଏବଂ ଆଶା-ଆକାଙ୍କ୍ଷାର ଏହା ହେଉଛି ଏକ ପୂର୍ଣ୍ଣାଙ୍ଗ ଦଲିଲ । ଏଥିରେ ହୁଏତ କୌଣସି ଉଚ୍ଚ ଆଦର୍ଶ ବା ତ୍ୟାଗର ବାର୍ତ୍ତା ନାହିଁ, ମାତ୍ର ସାଧାରଣ ଜନତା ଅଛନ୍ତି, ସେମାନଙ୍କ ସୀମିତ ଉଦାରତା ରହିଛି, ବ୍ୟକ୍ତିଗତ ଈର୍ଷା, ଅସୂୟାର କାହାଣୀ ରହିଛି, ଯାହା ଏହାର ଲୋକପ୍ରିୟତା ନିମନ୍ତେ ଏକାନ୍ତ ଅପରିହାର୍ଯ୍ୟ ।

ସାରଳା ମହାଭାରତର ଜୀବନଧର୍ମୀ ରଚନାଶୈଳୀ ହିଁ ଏହାର ଜନପ୍ରିୟତାର ଏକ ପ୍ରଧାନ କାରଣ । 'ଦାଣ୍ଡି' ବୃତ୍ତର ସ୍ରଷ୍ଟା ସାରଳା ନିଜର ସମସ୍ତ ଗ୍ରନ୍ଥରେ ଏହି ବୃତ୍ତର ବ୍ୟବହାର କରିଛନ୍ତି । ଏ ବୃତ୍ତର କର୍ଣ୍ଣ-ପ୍ରୀତିପଦ ଆବୃତ୍ତି ଉଭୟ ପାଠକ ଓ ଶ୍ରୋତାଙ୍କୁ ଆକୃଷ୍ଟ କରେ । ଏହାର ଗଣବୋଧ୍ୟତା ମଧ୍ୟ ଜନପ୍ରିୟତାର ଅନ୍ୟ ଏକ କାରଣ । ଏଥିରେ ବ୍ୟବହୃତ ଭାଷା ସରଳା କୃଷକ କନ୍ୟା ପରି ସରଳ, ସ୍ୱାଭାବିକ ଓ ସାବଲୀଳ ଗତିରେ ନାଚି ନାଚି ଯାଇଅଛି । ଏହା ହୁଏତ ଉଚ୍ଚଦରର ସାହିତ୍ୟ ନ ହୋଇପାରେ ; ମାତ୍ର ସମକାଳୀନ ଉତ୍କଳୀୟ ଜନଜୀବନରେ ଯେ ଏକ ସୁଗେୟ ସଙ୍ଗୀତ, ଏଥିରେ ସନ୍ଦେହ ପ୍ରକାଶ କରାଯାଇ ନ ପାରେ ।

ସଂସ୍କୃତ ମହାଭାରତରେ ଥିବା ଭଗବଦ୍ ଗୀତା ପରି ଅଧିକାଂଶ ତାତ୍ତ୍ୱିକ, ଦାର୍ଶନିକ ଓ ଆଧ୍ୟାତ୍ମିକ ଆଲୋଚନା ସେ ନିଜ ମହାଭାରତରେ ପରିହାର କରିଅଛନ୍ତି । କାରଣ ତାଙ୍କର ହୃଦବୋଧ ହୋଇଅଛି ଯେ ଏଗୁଡ଼ିକ ତାଙ୍କର ପ୍ରିୟ ଗ୍ରାମ୍ୟ ଶ୍ରୋତୃବର୍ଗଙ୍କ ନିକଟରେ ଆଦୃତ ହେବ ନାହିଁ ; ଫଳରେ ତାଙ୍କ ଗ୍ରନ୍ଥ ସମାଦର ଲାଭ କରିବ ନାହିଁ । ପୁନଶ୍ଚ ଏହି କୃଷକ କବିଙ୍କର ବର୍ଣ୍ଣନା କଳାପରେ ଅନାବିଳ ଅତିରଞ୍ଜନ ଶ୍ରୋତା ଚିତ୍ତକୁ ଜୟ କରିବାର ଅନ୍ୟ ଏକ କାରଣ । ତାଙ୍କ କଲମରେ ସୈନ୍ୟମାନଙ୍କର ସଂଖ୍ୟା କୋଟି, ଅର୍ବୁଦରୁ ତଳକୁ ଖସିବାର ଦେଖାଯାଏନା । ଗ୍ରନ୍ଥରେ

ଯେଉଁଠି ସେ ସଂଖ୍ୟାର ସୂଚନା ଦେବା ନିମନ୍ତେ ସୁଯୋଗ ପାଇଛନ୍ତି, ସେଠାରେ ସେ ସହସ୍ର ଲକ୍ଷ କୋଟି ଆଦି ଶବ୍ଦର ବହୁଳ ବ୍ୟବହାର କରିଛନ୍ତି । ଗୋଟିଏ ଦୁଇଟିର ଦୃଷ୍ଟାନ୍ତ ଏଠାରେ ଦିଆଯାଇପାରେ । ସ୍ୱୟମ୍ବରକାଳୀନ ଶୋଭାଯାତ୍ରାରେ ଦ୍ରୌପଦୀଙ୍କ ସମ୍ମୁଖରେ ସହସ୍ରେକ ବନିତା ନୃତ୍ୟ କରୁଛନ୍ତି, ସହସ୍ରେକ ସୁନ୍ଦରୀ କନକର ଛତା ଧରିଛନ୍ତି ଏବଂ ସେ ସହସ୍ର ସହସ୍ର ପରିଚାରିକାଙ୍କ ଗହଣରେ ଚାଲିଛନ୍ତି । ବାସ୍ତବତା ଦୃଷ୍ଟିରୁ ଏହା ଅସଙ୍ଗତ ମନେ ହେଲେ ମଧ୍ୟ କବି ଏପରି ବର୍ଣ୍ଣନାର ଆବଶ୍ୟକତା ମନେ କରିଅଛନ୍ତି । ଜଣେ ସାଧାରଣ ଲୋକ ଏବଂ ଜଣେ ରାଜା ଏ ଦୁହିଁଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଏଣୁ ରାଜକନ୍ୟାର ବିବାହ ଉତ୍ସବରେ ସଂଖ୍ୟାର ଏପରି ପରିକଳ୍ପନା ନ କଲେ ସାଧାରଣ ଜନତା ଏଥିରୁ କିଛି ଉତ୍ତେଜନା ସଂଗ୍ରହ କରିପାରିବ ନାହିଁ । ଦ୍ୱିତୀୟତଃ ଭୀମର ଦାନବୀ ପତ୍ନୀ ହିଡ଼ିମ୍ବିକା ଯେତେବେଳେ ପୁତ୍ର ଘଟୋତ୍କଚକୁ ଧରି ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଆସିଛି । ସେ ସଙ୍ଗରେ ଆଣିଛି ଏକ ଶହ ଶଗଡ଼ କସ୍ତୁରୀ, ଏକ ଲକ୍ଷ ଶଗଡ଼ ସୁଗନ୍ଧ ଅଁଳା ଏବଂ ବହୁ ଲକ୍ଷ ଶଗଡ଼ ଆମ୍ବ । ଏ ସମ୍ପର୍କରେ ଡଃ ମାୟାଧର ମାନସିଂହ କହନ୍ତି "ସମ୍ରାଟ କପିଳେନ୍ଦ୍ରଙ୍କ ସାମ୍ରାଜ୍ୟପାକ ଦରିଣ୍ଡି ଥିଲେ ହୁଏତ ଗାଦିଏ କସ୍ତୁରୀ ମିଳିଥାନ୍ତା କି ନାହିଁ ସନ୍ଦେହ, କିନ୍ତୁ ଏହି ପ୍ରକାର ଅତିରଞ୍ଜନ ଓ ନିରଙ୍କୁଶ କଳ୍ପନା ଗ୍ରାମ୍ୟ କୃଷକ ଜନତାର ଅତ୍ୟନ୍ତ ସ୍ୱାଦ୍ୟ ।"

ସାରଳାଙ୍କ ଗ୍ରନ୍ଥରେ ଆମେ ଏକ ପକ୍ଷରେ ଦେଖିବାକୁ ପାଉ ମଧୁର ଅନାବିଳ ଅତିରଞ୍ଜନ ଏବଂ ଅନ୍ୟ ପକ୍ଷରେ ଦେଖୁ ଜଣେ କୃଷକର ବାସ୍ତବ ଦୃଷ୍ଟିକୋଣ, ଯାହା ଗ୍ରାମ୍ୟଜନ ଚିତ୍ତବୃତ୍ତିକୁ ଆକୃଷ୍ଟ କରିବା ନିମନ୍ତେ ଏକାନ୍ତ ଅପରିହାର୍ଯ୍ୟ । ସାରଳା ରାଜା, ମହାରାଜା, ମୁନିଋଷି ବା ଦେବତା ସୃଷ୍ଟି କରି ନାହାନ୍ତି; ସୃଷ୍ଟି କରିଯାଇଛନ୍ତି କେବଳ ମଣିଷ ସାଧାରଣ ମଣିଷ । ଏହି ସାଧାରଣ ମଣିଷର ଆକାର ବଢ଼ାଇଦେଲେ ଯେଉଁ ରାଜା, ମହାରାଜା, ମୁନିଋଷି ବା ଦେବତା ମୂର୍ତ୍ତି ହୁଅନ୍ତି, ସେମାନଙ୍କୁ ବୁଝିବାରେ ଏ ଦେଶର ସାଧାରଣ ଜନତାର କିଛି ଅସୁବିଧା ହୁଏ ନାହିଁ । ଜଣେ ସାଧାରଣ ଉଦରମ୍ଭରି ଉତ୍କଳୀୟ ନିମନ୍ତେ ଗୋଟିଏ ଚୁଲି ଏବଂ ଜଣେ ସୂପକାର ଯଥେଷ୍ଟ ହେଉଥିବାବେଳେ ସାରଳାଙ୍କ ଭୀମା ଓରଫ୍ ମଧ୍ୟମ ପାଣ୍ଡବ ଭୀମସେନ ନିମନ୍ତେ ସହସ୍ରେକ ଚୁଲି ଓ ମହସ୍ରେକେ ସୂପକାର ଆବଶ୍ୟକ । ତତ୍କାଳୀନ ଉତ୍କଳୀୟ ଜନତା ମଧ୍ୟରେ ବାସ କରୁଥିବା ଜଣେ ହଣ୍ଡା, ଗୁଣ୍ଡା, ହରୁମା ସ୍ୱଭାବ ସମ୍ପନ୍ନ ବ୍ୟକ୍ତି ବିଶେଷକୁ ଆଖିରେ ରଖି ଭୀମ ଚରିତ୍ରର ସୃଷ୍ଟି । ସମାଜର ଜଣେ ସ୍ୱେଚ୍ଛାଚାରିଣୀ, ଉଗ୍ରସ୍ୱଭାବ ସପତ୍ନୀ ନାରୀର ପ୍ରକୃଷ୍ଟ ପରିଚୟ ମିଳେ ସାରଳାଙ୍କ ଗଙ୍ଗା ଚରିତ୍ରରେ । ହିଡ଼ିମ୍ବିକା ଓ ଦ୍ରୌପଦୀଙ୍କ ମଧ୍ୟରେ ସୂତ୍ରପାତ ହୋଇଥିବା କଳହ ସମସାମୟିକ ସମାଜରେ ଦୁଇ ସପତ୍ନୀଙ୍କ ମଧ୍ୟରେ ଘଟୁଥିବା କଳହର ଚିତ୍ର ପ୍ରଦାନ କରେ ।

ଲକ୍ଷ୍ମୀ ଓ ଦାଟଣଙ୍କ ମଧ୍ୟରେ ଘଟିଥିବା ଗୁରୁତ୍ୱପୂର୍ଣ୍ଣ ବାକ୍ୟୁଦ୍ଧ ସେମାନଙ୍କୁ ଦେବୀ ସ୍ତରରୁ ମାନବୀ ସ୍ତରକୁ ନେଇଆସେ ଏବଂ ସେମାନେ ସମକାଳୀନ ସମାଜର ଦୁଇ ଈର୍ଷାପରାୟଣା ଓ କଳହପ୍ରିୟା ନାରୀ ଚରିତ୍ରର ପ୍ରତିନିଧିତ୍ୱ କରୁଥିବା ଭଳି ମନେହୁଅନ୍ତି । ସେହିପରି ସୁଭଦ୍ରା ଚରିତ୍ର ସାରଳାକାଳୀନ ଜଣେ କାମୁକୀ ନାରୀ ଚରିତ୍ରର ସ୍ୱରୂପ ଉଦ୍‌ଘାଟନ କରେ । ଏହି ଗ୍ରନ୍ଥ ପାଠକରିବା ସମୟରେ ଜଣାଯାଏ, ଯେପରି ଏହି ଚରିତ୍ରଗୁଡ଼ିକ ଆମ ସମାଜର ଜଣେ ଜଣେ ସଭ୍ୟ ।

ସାରଳା ଥିଲେ ଜଣେ ସୁଦକ୍ଷ କଥାକାର । ସେ ମୂଳ ମହାଭାରତର କଥାବସ୍ତୁର କଙ୍କାଳକୁ ଗ୍ରହଣ କରି ନିଜ ଗ୍ରନ୍ଥ ରଚନା କରିଥିଲେ । ଏଣୁ କେତେବେଳେ ସେ ମୂଳଗ୍ରନ୍ଥକୁ ବିଶ୍ୱସ୍ତ ଭାବରେ ଅନୁସରଣ କରିଅଛନ୍ତି ତ କେତେବେଳେ କଥାବସ୍ତୁକୁ ସଂକ୍ଷେପ କରିଦେଇଅଛନ୍ତି । ପୁନଶ୍ଚ କେତେବେଳେ ମୌଳିକ କଥାବସ୍ତୁର ସଂଯୋଜନାରେ ଗ୍ରନ୍ଥକୁ ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କରିଅଛନ୍ତି । ନିଜ କଳ୍ପନାରୁ ପରିବେଷିତ ଅଜସ୍ର ଗଳ୍ପ, ନୀତିଗଳ୍ପ ଓ କିମ୍ବଦନ୍ତୀଗୁଡ଼ିକ ଓଡ଼ିଆ ପାଠକର ଅତି ଆଦରଣୀୟ । ଏଥିରେ ସନ୍ନିବେଶିତ ପ୍ରବଚନଗୁଡ଼ିକ ଏତେ ଲୋକପ୍ରିୟ ଯେ ଆଜି ପର୍ଯ୍ୟନ୍ତ ଲୋକମୁଖରେ ସେଗୁଡ଼ିକର ପ୍ରଚଳନ ଅଛି । ସାମାନ୍ୟ କାରଣରୁ ବୃହଦାକାର ବିବାଦର ସୃଷ୍ଟି ହେଲେ ହଠାତ୍ ସେ କୌଣସି ଓଡ଼ିଆ ଜନତାର ପାଟିରୁ ବାହାରିପଡ଼େ 'ଝିମିଟି ଖେଳରୁ ମହାଭାରତ' କିମ୍ବା ଯେ କୌଣସି କାର୍ଯ୍ୟରେ ପ୍ରାଥମିକ ଅସଫଳତା ଦେଖିଲେ, ଓଡ଼ିଆ ପୁଅ କହିଉଠେ, 'ପ୍ରଥମ ଯୁଦ୍ଧରେ ଭୀମ ହାରେ' ଇତ୍ୟାଦି । ସାରଳାଙ୍କ ନିଜସ୍ୱ ଏହି ଗଳ୍ପ, ନୀତିକଥା, ପ୍ରବଚନ ଓ ନୀତିବାକ୍ୟ-ଗୁଡ଼ିକ (ଏଗୁଡ଼ିକର ବିଶଦ ଆଲୋଚନା ପୂର୍ବରୁ କରାଯାଇଛି) ନିମନ୍ତେ ସାରଳା ମହାଭାରତ ଉପନ୍ୟାସ ସୁଲଭ ଗରିମା ନେଇ ବିଦ୍ୟମାନ, ଯାହା ଶତ ଶତ ବର୍ଷ ଓଡ଼ିଆ ଜନତାର ମନୋରଞ୍ଜନ କରିଆସିଅଛି । କେବଳ ଓଡ଼ିଆ ପାଠକ ଏହାର ବିଶେଷତ୍ୱ ଉପଲବ୍‌ଧି କରି ନାହାନ୍ତି; ଓଡ଼ିଶାର ପଡ଼ୋଶୀ ରାଜ୍ୟ ବଙ୍ଗଳାର ପାଠକ-ବର୍ଗଙ୍କୁ ମଧ୍ୟ ଏହା ଏତେଦୂର ଆକୃଷ୍ଟ କରିଥିଲା ଯେ ଏହା ବଙ୍ଗ ଲିପିରେ ମୁଦ୍ରିତ ହୋଇ ବଙ୍ଗଳାରେ ଅନେକ ବର୍ଷଧରି ଆଦୃତ ହୋଇଥିଲା । ଏହା ସାରଳା ମହାଭାରତର ଲୋକପ୍ରିୟତାର ଅନ୍ୟତମ ଦୃଷ୍ଟାନ୍ତ ।

ସାରଳା ମହାଭାରତ ଏ ଦେଶର ଜାତୀୟ ମହାକାବ୍ୟ । ପଞ୍ଚଦଶ ଶତାବ୍ଦୀରେ କେବଳ ନୁହେଁ, ଆଧୁନିକ କାଳରେ ମଧ୍ୟ ଏହାର ଜନପ୍ରିୟତାର ଅକ୍ଷୁଣ୍ଣତା ପରିଲକ୍ଷିତ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଜାତି ବଞ୍ଚି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହା ଓଡ଼ିଆ ଜାତିର ଗର୍ବ ଓ ଗୌରବ ହୋଇ ରହିଥିବ ।

## ସାରଳା ମହାଭାରତ ଓ ପୁରାଣ :

'ପୁରାଣ' ଶବ୍ଦର ଅର୍ଥ 'ପ୍ରାଚୀନ' ଏବଂ ପ୍ରକୃତରେ ଦେଖିବାକୁ ଗଲେ ପୁରାଣ ସାହିତ୍ୟ ଏକ ପ୍ରାଚୀନ ସାହିତ୍ୟ । ବିଷ୍ଣୁ ପୁରାଣର ଏକ ଆଖ୍ୟାନ ଅନୁଯାୟୀ ବ୍ୟାସଦେବ ଚାରିଗୋଟି ବେଦକୁ ନିଜର ଚାରିଜଣ ଶିଷ୍ୟଙ୍କ ମଧ୍ୟରେ ବିତରଣ କଲେ । ଏହାପରେ ସେ ରଚନା କଲେ 'ପୁରାଣ ସଂହିତା', ଯାହା ଥିଲା ବିଭିନ୍ନ ଆଖ୍ୟାନ, ଉପାଖ୍ୟାନ ଗାଥା ଇତ୍ୟାଦିର ଏକ ମଧୁର ସମନ୍ୱୟ । ଏହି ପୁରାଣ ସଂହିତାଗୁଡ଼ିକ ମଧ୍ୟ ଅନ୍ୟାନ୍ୟ ଶିଷ୍ୟ ଏବଂ ପ୍ରଶିଷ୍ୟଙ୍କ ମଧ୍ୟରେ ବିତରିତ ହେଲା । ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ ପୁରାଣଗୁଡ଼ିକ ଏହି ମୂଳ ପୁରାଣଗୁଡ଼ିକରୁ ରଚିତ ହୋଇଥିବାର ବିଶ୍ୱାସ କରାଯାଏ । ସଂସ୍କୃତ ଭାଷାରେ ଅଠରଗୋଟି ପୁରାଣ ଓ ଅଠରଗୋଟି ଉପପୁରାଣ ଅଛି । ଭାଗବତ ପୁରାଣ ତଥା ଦେବୀ ଭାଗବତ ଅନୁସାରେ ସ୍ତ୍ରୀ, ଶୂଦ୍ର, ଅଧଃପତିତ ଦ୍ୱିଜ ପ୍ରଭୃତି ବେଦ ଶ୍ରବଣ କରିବା ନିମନ୍ତେ ଅନୁପଯୁକ୍ତ । ଏଣୁ ସେମାନଙ୍କ ନିମନ୍ତେ ପୁରାଣ ସାହିତ୍ୟ ରଚିତ ହେଲା । ଏହି କାରଣରୁ ପୁରାଣ-ସାହିତ୍ୟ ପଞ୍ଚମ ବେଦ ଭାବରେ ଗୃହୀତ ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଅମର ସିଂହଙ୍କ ମତରେ ପୁରାଣ ହେଉଛି ପଞ୍ଚ-ଲକ୍ଷଣଯୁକ୍ତ ରଚନା । ଯଥା—

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ।"

ଅର୍ଥାତ୍ ସର୍ଗ (ସୃଷ୍ଟି-ପ୍ରକ୍ରିୟା), ପ୍ରତିସର୍ଗ (କ୍ଷୁଦ୍ରସୃଷ୍ଟି ବା ପୁନଃସୃଷ୍ଟି) ବଂଶ (ବଂଶ-ପରମ୍ପରା), ମନ୍ୱନ୍ତର (ମନୁଙ୍କର ବିଭିନ୍ନ ଯୁଗ ଓ ବଂଶାନୁଚରିତ (ସଂପୃକ୍ତ ରାଜବଂଶର ବଂଶଲତା) ଇତ୍ୟାଦି ପାଞ୍ଚଗୋଟି ଲକ୍ଷଣ ପୁରାଣରେ ଦେଖିବାକୁ ମିଳେ । ପରବର୍ତ୍ତୀ କାଳରେ ଏହି ପାଞ୍ଚଗୋଟି ଲକ୍ଷଣ ବ୍ୟତୀତ ବୃତ୍ତି, ରକ୍ଷା (ଅବତାର ଗ୍ରହଣ). ମୁକ୍ତି, ହେତୁ (ଜୀବନତତ୍ତ୍ୱ) ଓ ଅପାଶ୍ରୟ (ବ୍ରହ୍ମସମ୍ପର୍କୀୟ ତତ୍ତ୍ୱ) ଇତ୍ୟାଦି ଆହୁରି ପାଞ୍ଚଗୋଟି ଅଧିକ ଲକ୍ଷଣ ପୁରାଣ ସହିତ ସଂଶ୍ଳିଷ୍ଟ କରାଗଲା । ଏହି ଲକ୍ଷଣ-ଗୁଡ଼ିକ ବ୍ୟତୀତ ଯେଉଁ ଅନ୍ୟାନ୍ୟ କେତେକ ବିଷୟ ପୁରାଣ ସାହିତ୍ୟରେ ସ୍ଥାନ ପାଇବା ନିମନ୍ତେ ଅପରିହାର୍ଯ୍ୟ ହୋଇପଡ଼ିଲା, ସେଗୁଡ଼ିକ ହେଉଅଛି ଦାନ, ବ୍ରତ, ତୀର୍ଥ, ଶ୍ରାଦ୍ଧ ଇତ୍ୟାଦି ବିଷୟକ ବର୍ଣ୍ଣନା । ସର୍ବୋପରି ପୁରାଣର ଉପଜୀବ୍ୟ କଥାବସ୍ତୁ ହେଉଛି ଏକ ପ୍ରାଚୀନ ବିଷୟ ; ଯେଉଁଥିରେ ମାନବ ଜୀବନର ପ୍ରତ୍ୟେକ ପ୍ରତିଫଳନ ଦେଖିବାକୁ ମିଳେ ।

ଏକ ସମୟରେ ଓଡ଼ିଶାର ବହୁ ସଂସ୍କୃତ ପୁରାଣ ରଚିତ ହୋଇଥିଲା; ମାତ୍ର ସେଗୁଡ଼ିକ ଓଡ଼ିଶାର ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇ ପାରି ନ ଥିଲା ।

ସଂସ୍କୃତ ପୁରାଣ ଯୁଗର ଅବସାନ ଯେଉଁ ସମୟରେ ଘଟିଛି, ଓଡ଼ିଆ ପୁରାଣ ଯୁଗର ଆରମ୍ଭ ସେହି ସମୟଠାରୁ ହୋଇଅଛି । ଓଡ଼ିଶାର ପ୍ରଥମ ପୁରାଣକାର ହେଉଛନ୍ତି, ଉତ୍କଳ ବ୍ୟାସ ସାରଳା ଦାସ ଏବଂ ତାଙ୍କ ମହାଭାରତ ହେଉଛି ଓଡ଼ିଆ ଭାଷାରେ ପ୍ରଥମ ପୁରାଣ । ସାରଳା ମହାଭାରତ କିପରି ପୁରାଣ ଲକ୍ଷଣ ଯୁକ୍ତ, ତାହା ଆଲୋଚନା କରାଯାଉ ।

ସାରଳା ଦାସ ମୂଳ ସଂସ୍କୃତ ମହାଭାରତର ଅନୁବାଦ କରି ନାହାନ୍ତି, ସେ ଏକ ସ୍ୱତନ୍ତ୍ର ମହାଭାରତର ରଚୟିତା । ମହାଭାରତ ରଚନା କରିବା ସମୟରେ ସେ ମୂଳ ମହାଭାରତର ବିଭିନ୍ନ ଚରିତ, ଉପାଖ୍ୟାନ, ଆଖ୍ୟାୟିକା ପ୍ରଭୃତି ପରିବେଷଣ କରିବା ସଙ୍ଗେ ସଙ୍ଗେ ଅନେକ ଚରିତ, ଗଳ୍ପ, ଉପାଖ୍ୟାନ ଇତ୍ୟାଦି ଅନ୍ୟାନ୍ୟ ପୁରାଣରୁ ଗ୍ରହଣ କରି ଏଥିରେ ସନ୍ନିବେଶ କରିଛନ୍ତି । ଫଳରେ ତାଙ୍କ ଗ୍ରନ୍ଥ ଅଷ୍ଟାଦଶ ପୁରାଣର ସାରସଂଗ୍ରହ ରୂପ ଗ୍ରହଣ କରିଅଛି । ପୂର୍ବାଲୋଚିତ ପଞ୍ଚ ଲକ୍ଷଣ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ, ଯେଉଁଠି ସୁବିଧା ମିଳିଛି, ସାରଳା ଦାସ ତାଙ୍କ ଗ୍ରନ୍ଥର ବିଭିନ୍ନ ସର୍ଗ-ମାନଙ୍କରେ ସୃଷ୍ଟି ତତ୍ତ୍ୱ ସମ୍ପର୍କୀୟ ବିବରଣୀ ଦେବାକୁ ଭୁଲି ନାହାନ୍ତି । ପ୍ରତିସର୍ଗ ବା ଅନ୍ୟାନ୍ୟ କ୍ଷୁଦ୍ର ସୃଷ୍ଟି ସମ୍ବନ୍ଧୀୟ ବିଭିନ୍ନ ଉପାଦାନ ତାଙ୍କ ଗ୍ରନ୍ଥରେ ମଧ୍ୟ ଦେଖିବାକୁ ମିଳେ । ବିଭିନ୍ନ ରାଜପରିବାରର ବଂଶଲତା ପ୍ରଦାନର ଅଭାବ ମଧ୍ୟ ଏହି ଗ୍ରନ୍ଥରେ ଦେଖିବାକୁ ମିଳେନା । ଆଦି ପର୍ବରେ କୃଷ୍ଣଙ୍କ ବିବାହ ପ୍ରସଙ୍ଗରେ ବହୁ ରାଜବଂଶର ସୂଚନା ସାରଳା ପ୍ରଦାନ କରିଅଛନ୍ତି । କେତେକ ସ୍ଥଳରେ କାଳ ପରିମାଣ, ଯୁଗ ପରିମାଣ ବା ମନ୍ୱନ୍ତର ପ୍ରଭୃତି ବିଷୟର ମଧ୍ୟ ଉଲ୍ଲେଖ ରହିଛି । ସର୍ବୋପରି ବିବାହ, ସ୍ୱୟମ୍ବର ଆଦି ପ୍ରସଙ୍ଗ ଉତ୍ଥାପନ କରିବା ସମୟରେ ସଂପୃକ୍ତ କନ୍ୟାର ପିତା, ମାତା, ବଂଶ ଇତ୍ୟାଦି ସମ୍ପର୍କୀୟ ସୂଚନା ଏବଂ ସ୍ୱୟମ୍ବରରେ ଯୋଗଦେଇଥିବା ରାଜନ୍ୟ-ବର୍ଗଙ୍କ ବଂଶଲତା ସମ୍ପର୍କୀୟ ସୂଚନା ସାରଳାଙ୍କ ମହାଭାରତରେ ପରିଦୃଷ୍ଟ ହୁଏ । ପୁନଶ୍ଚ ଏଥିରେ ଏକ ପୁରାତନ ଓ ପୌରାଣିକ ବିଷୟ ବର୍ଣ୍ଣିତ, ଯହିଁରେ ମାନବ ଜୀବନର ପ୍ରତ୍ୟେକ ବିଭାଗ ପ୍ରତିଫଳନ ଏବଂ ଦାନ, ବ୍ରତ, ତୀର୍ଥ, ଶ୍ରାଦ୍ଧାଦି ବିବିଧ ବିଷୟକ ବର୍ଣ୍ଣନାରେ ଏହାର ପୁରାଣତ୍ୱ ପ୍ରକଟିତ ।

କେବଳ ପୁରାଣ ନୁହେଁ, ମହାଭାରତ ମହାକାବ୍ୟ, ଇତିହାସ ଓ ନୀତିଶାସ୍ତ୍ର ଭାବେ ମଧ୍ୟ ଗୃହୀତ ହୋଇଥାଏ । ଏ ସମ୍ପର୍କରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ମହୋଦୟଙ୍କ ଅଭିମତ ଉଦ୍ଧାର କରାଯାଇପାରେ ।

"ମହାଭାରତ ଏକ ପ୍ରକାର ମହାକାବ୍ୟ ପ୍ରମାଣ ଯଥା—

ଇଦଂ ମହାକାବ୍ୟ ମୃଷେର୍ମହାତ୍ମନଃ
ପଠନ୍ନୃଣାଂ ପୂଜ୍ୟତମୋ ଭବେନ୍ନରଃ ।

ପ୍ରକୃଷ୍ଟମାୟୁଃ ସମବାପ୍ୟ ଦୁର୍ଲଭଂ
ଲଭେଚ ସର୍ବଫଳଂ ଚ କେଶବଂ ।

ଇତି ଶିଳାହରେ ବଂଶ ଭବିଷ୍ୟପର୍ବ ୫ ଅ. ୫ ଶ୍ଳୋକ ।”

ଏତଦ୍‌କ୍ରମେ ଏହି ମହାମହିମ ଗ୍ରନ୍ଥକୁ ଧର୍ମତତ୍ତ୍ୱଜ୍ଞମାନେ ଧର୍ମଶାସ୍ତ୍ର ବୋଲି, ଅଧ୍ୟାତ୍ମଜ୍ଞାନକୋବିଦମାନେ ବେଦାନ୍ତ ବୋଲି, ନୀତିବିଚକ୍ଷଣମାନେ ନୀତିଶାସ୍ତ୍ର ବୋଲି, କବିବୃନ୍ଦମାନେ ମହାକାବ୍ୟ ବୋଲି, ଲାକ୍ଷଣିକମାନେ ସର୍ବ ଲକ୍ଷଣ ବା ଲକ୍ଷଣଶାସ୍ତ୍ର ବୋଲି, ଐତିହାସିକମାନେ ଇତିହାସ ବୋଲି, ପରମ ପୌରାଣିକମାନେ ପୁରାଣ ସମୁଚ୍ଚୟ ବୋଲି ମଧ୍ୟ କହନ୍ତି ।”

( ଶ୍ରୀ ଭାରତ ଦର୍ପଣ—୧୯୭୪-ପୃ ୭୭ )

## ଆଦିକବି ଆଖ୍ୟାର ଯଥାର୍ଥତା :

‘ସାରଳାଙ୍କ ପୂର୍ବବର୍ତ୍ତୀ ଓଡ଼ିଆ ସାହିତ୍ୟ’ ପରିଚ୍ଛେଦ ଏବଂ ‘ଭାଷା’ ପରିଚ୍ଛେଦର ଦ୍ୱିତୀୟ ଅନୁଚ୍ଛେଦ ଦ୍ରଷ୍ଟବ୍ୟ ।

## ସାରଳା ଦାସଙ୍କ କବିତ୍ୱ :

ସାରଳା ମହାଭାରତର ‘ସାହିତ୍ୟିକ ମୂଲ୍ୟ’ ଦ୍ରଷ୍ଟବ୍ୟ ।

## ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଉପରେ ସାରଳା ସାହିତ୍ୟର ପ୍ରଭାବ :

ସାରଳା ମହାଭାରତର ‘ସାହିତ୍ୟିକ ମୂଲ୍ୟ’ର ଶେଷାଂଶ ଦ୍ରଷ୍ଟବ୍ୟ ।

## ସାରଳା ସାହିତ୍ୟରେ ସମର କାଳୀନ ଚିତ୍ର :

ସାରଳା ମହାଭାରତର ‘ଐତିହାସିକ ମୂଲ୍ୟ’ରେ ଆଲୋଚିତ ବିଭିନ୍ନ ବିଷୟ, ‘ବିଲଙ୍କା ରାମାୟଣ’ ଓ ‘ଚଣ୍ଡୀପୁରାଣ’ ଆଲୋଚନାରେ ପ୍ରଦତ୍ତ ସମର ଚିତ୍ର ଦ୍ରଷ୍ଟବ୍ୟ ।

## ସାରଳା ମହାଭାରତରେ ଭୌଗୋଳିକ ବିବରଣୀ :

ସାରଳା ମହାଭାରତର ‘ଐତିହାସିକ ମୂଲ୍ୟ’ ଦ୍ରଷ୍ଟବ୍ୟ ।

## ସାରଳାଙ୍କ ଜଗନ୍ନାଥ କ୍ଷେତ୍ର ପ୍ରତି ପ୍ରଗାଢ଼ ଗୌରବ :

ପୂର୍ବରୁ ପ୍ରଦତ୍ତ ‘କବିଙ୍କ ସ୍ୱଦେଶପ୍ରୀତି’ ପରିଚ୍ଛେଦର ତୃତୀୟ ଅନୁଚ୍ଛେଦ ଦ୍ରଷ୍ଟବ୍ୟ ।

## ସାରଳା ମହାଭାରତରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ :

ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଓଡ଼ିଆ ସାହିତ୍ୟରେ ବହୁ ପ୍ରାଚୀନ । କାଳଚକ୍ର ଯାନ, ସହଜଯାନ, ବଜ୍ରଯାନ ଏବଂ ପରବର୍ତ୍ତୀ କାଳରେ ନାମଧର୍ମ ଓ ବୈଷ୍ଣବ ଧର୍ମରେ ମଧ୍ୟ ଏହା ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ସରହପାଦଙ୍କ ବିରଚିତ ଏକ ଦୋହା-କୋଷରେ ଦେଖିବାକୁ ମିଳେ ଯେ ଏହି ଶରୀର ହେଉଛି ସରସ୍ୱତୀ, ଗଙ୍ଗା, ସାଗର-ସଙ୍ଗମ, ପ୍ରୟାଗ, ବାରଣାସୀ ପ୍ରଭୃତି ତୀର୍ଥମାନଙ୍କର ସଙ୍ଗମସ୍ଥଳୀ । ଏହି ଶରୀର ମଧ୍ୟରେ ମଧ୍ୟ ସୂର୍ଯ୍ୟ, ଚନ୍ଦ୍ର ଆଦି ଆତଜାତ ହୁଅନ୍ତି । ଏହିଭଳି ଏକ ବିଶିଷ୍ଟ ତୀର୍ଥସ୍ଥଳ ସେ ଅନ୍ୟ କେଉଁଠାରେ ଦେଖି ନାହାନ୍ତି ।

ସାରଳା ସାହିତ୍ୟରେ ଏହି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ କିପରି ପ୍ରତିଫଳିତ, ତାହା ଆଲୋଚନା କରାଯାଇପାରେ । ଶିଶୁ ଭୀମଙ୍କର ଅସୀମ କ୍ଷୁଧା । ଯେତେ ବେଶୀ ପରିମାଣର ଖାଦ୍ୟ ଗ୍ରହଣ କଲେ ମଧ୍ୟ ତାଙ୍କର ଅତୃପ୍ତି । କୁନ୍ତୀ ରାନ୍ଧିସାରିବା ପରେ ଭୀମ ପ୍ରତିଦିନ ଖାଦ୍ୟ ଲୁଚାଇ ଖାଆନ୍ତି । ଖାଇବା ନିମନ୍ତେ ଶେଷକୁ ରହନ୍ତି ପଣ୍ଡୁ । ପ୍ରତିଦିନ ଆବଶ୍ୟକ ମୁତାବକ ଖାଦ୍ୟ ସେ ପାଆନ୍ତି ନାହିଁ । ଯେତେ ଅଧିକ ରନ୍ଧନ କଲେ ମଧ୍ୟ ଖାଦ୍ୟ ନିଅଣ୍ଟ । ଏପରି ଘଟିବାର କାରଣ ଜାଣିବା ନିମିତ୍ତ ଏକଦା ସେ ଶିଙ୍କା ଉପରେ ଲୁଚି ରହିଛନ୍ତି । ଖାଦ୍ୟ ପ୍ରସ୍ତୁତି ପରେ କୁନ୍ତୀ ଓ ମାଦ୍ରୀ ପାକଶାଳା ତ୍ୟାଗ କରିବା ପରେ ବାଳକ ଭୀମ ସେଠାରେ ଉପସ୍ଥିତ ହୋଇ ଖାଦ୍ୟ ଦ୍ରବ୍ୟ ଲୁଚାଇ ଖାଇବାକୁ ଆରମ୍ଭ କଲେ । ପଣ୍ଡୁ ପ୍ରତ୍ୟହ ଖାଇବା ପୂର୍ବରୁ ଭୋଜ୍ୟ ଅନ୍ନ ନୈବେଦ୍ୟ କରିଥାନ୍ତି । ପ୍ରତ୍ୟହ ଭୀମଙ୍କର ଉଚ୍ଛିଷ୍ଟାନ୍ନ ଅଗ୍ନିଦେବତାଙ୍କୁ ପ୍ରଦାନ କରି ଘୋର ପାପର ଅଧିକାରୀ ହୋଇଥିବାର ମନେ କରି ସେ ଭୀମଙ୍କୁ ହତ୍ୟା କରିବା ନିମନ୍ତେ ଉଦ୍ୟତ ହୋଇଅଛନ୍ତି । ପବନ ବେଗରେ ଧାବିତ ଭୀମଙ୍କର ପଶ୍ଚାଦ୍‌ଧାବନ କରିବା ନିମନ୍ତେ ସେ ସକ୍ଷମ ହୋଇ ନାହାନ୍ତି । ଏହି ସମୟରେ ଅଗ୍ନିଦେବତା ସେଠାରେ ଆବିର୍ଭୂତ ହୋଇ କ୍ରୋଧରୁ ନିବୃତ୍ତ ହେବା ନିମନ୍ତେ ଉପଦେଶ ଦେଇ ଅଛନ୍ତି । ସେ କହିଛନ୍ତି ଯେ ମଣିଷର ଉଚ୍ଛିଷ୍ଟ ଦେବତାଙ୍କୁ ଅର୍ପଣ କରିବା କାର୍ଯ୍ୟକୁ ପାପ ବୋଲି ମନେ କରିବା ଉଚିତ ନୁହେଁ । କାରଣ ମନୁଷ୍ୟ ହେଉଛି ଦେବତା ଏବଂ ତା'ର ଶରୀର ଦେବଗଣଙ୍କ ଆବାସସ୍ଥଳ । ଶରୀରର କେଉଁ ଅଂଶରେ କେଉଁ ଦେବତା ବାସ କରନ୍ତି, ତା'ର ଏକ ଦୀର୍ଘ ବିବରଣୀ ପଣ୍ଡୁଙ୍କୁ ଦେଇଥିବା ଉପଦେଶରେ ସେ ପ୍ରଦାନ କରିଛନ୍ତି ।

"ଦେବତାସ୍ତେ କାହିଂ ଥାନ୍ତି ହୋ ମହାବୀର
ଶରୀରରେ ଯେ ନିଜ ଦେବତା ବଦନ୍ତି ଦୋହରି ।

ପ୍ରଥମ ଶିର ତାଳୁରେ ବିଜେ କରନ୍ତି ବ୍ରହ୍ମା
କପାଳ ପାଟିରେ ହାଦେ ନାରାୟଣ ମହାତ୍ମା ।

ଚନ୍ଦ୍ର ସୂର୍ଯ୍ୟ ଦେବତା ଅଛନ୍ତି ଚକ୍ଷୁବେନି
ନାସିକାୟେ ବସଇ ପବନ ମହାଗ୍ୟାନୀ

ଦୁଇ ଆଡ଼େ ଯେ କର୍ଣ୍ଣସ୍ଥାନୀ ଯେନି
ରୁଦ୍ର ଦେବତା ବସଇ ଭ୍ରୂକୁଟିଗଣ ଯେନି ।

ବେନି ଶ୍ରବଣେ ବସଇ ଗ୍ରନ୍ଥେ ଚଇତନ
ଗର୍ଭ ଭେଦ ବସଇ ଗ୍ରନ୍ଥେ ଶୂନ୍ୟ ନିରଞ୍ଜନ ।

ବତିଶ ଦନ୍ତ ଯେ ବସଇ ବେନିପାଟି
ବଜ୍ର ନିର୍ଘାତ ବସନ୍ତି ଇନ୍ଦ୍ରଗଣ ଯେନିଟି ।

× × ×

ନାଭିଠାରୁ ଉପରକୁ ତାଳୁ ବ୍ରହ୍ମଦ୍ୱାରଯାକେ
ସ୍ୱେଥେଂ ଭୋଗ କରନ୍ତି ତେତିଶ କୋଟି ଦେବଲୋକେ ।

ପିତୃ ଦଇବତ ପୁରୁଷ ବସନ୍ତି ନାଭିମଣ୍ଡଳ
ଫଳଜଳ ଉଦକ ଅନ୍ନେ ସେହୁ ଯାଆନ୍ତି ଭୃପ୍ତି ।

× × ×

ବେନି ଜାନୁ ମାଡ଼ି ନାଭି ମଣ୍ଡଳ ପରଯନ୍ତେ
ଯୋଗ ପୁରୁଷମାନେ ସ୍ୱେଥେ ବସନ୍ତି ପଞ୍ଚଶତେ ।

ଗୁରୁ ଯେ ବୋଇଲୁ ମୁଁ ଦେବତାଂକୁ ଇଅଇ ଅନ୍ନ
ଶରୀରେ ସେ ଥାନ୍ତି ନା ସମସ୍ତ ଦେବତାମାନ ।"

ଏଥିରୁ ପ୍ରମାଣିତ ହୁଏ ଯେ ମନୁଷ୍ୟର ପିଣ୍ଡ ହିଁ ବ୍ରହ୍ମାଣ୍ଡ । ଅଗ୍ନିଙ୍କର ଏହି ଉପଦେଶ ଶ୍ରବଣ କରି ପଣ୍ଡୁ ଶାନ୍ତ ହୋଇଅଛନ୍ତି ।

ସାରଳାଙ୍କ ପରବର୍ତ୍ତୀ ବହୁ କବି ନିଜ ରଚନାମାନଙ୍କରେ ଶରୀର ତତ୍ତ୍ୱକୁ ସ୍ଥାନ ଦେଇ ଗତାନୁଗତିକ ବୈଷ୍ଣବ ଧର୍ମର ମହତ୍ତ୍ୱ ପ୍ରତିପାଦନ କରିଅଛନ୍ତି । ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ, ଅନନ୍ତ ପ୍ରଭୃତି ପଞ୍ଚସଖାଙ୍କ କ୍ଷୁଦ୍ର ଓ ବୃହତ୍ ରଚନାବଳୀରେ ତତ୍ତ୍ୱବୋଧ, ମନବୋଧ, ଜ୍ଞାନବୋଧ ଇତ୍ୟାଦି ବହୁକ୍ଷେତ୍ରରେ ଏହାର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ । ସେମାନଙ୍କର ଭଜନ, ସ୍ତୁତି ଓ ସ୍ତବମାନଙ୍କରେ ଶରୀରତତ୍ତ୍ୱ, ଆତ୍ମତତ୍ତ୍ୱ, ଜ୍ଞାନତତ୍ତ୍ୱ ଓ ବ୍ରହ୍ମତତ୍ତ୍ୱ ବିଭିନ୍ନ ପ୍ରସଙ୍ଗରେ ଆଲୋଚିତ ହୋଇଥିବାର ଦେଖାଯାଏ ।

## ସମାଜର ନୀଚଶ୍ରେଣୀର ଲୋକଙ୍କ ପାଇଁ ସାରଳାଙ୍କ ସମବେଦନା :

ସାରଳାଦାସଙ୍କ ଜନ୍ମ ଏକ ଅଖ୍ୟାତ କୃଷକ ପରିବାରରେ । ତେଣୁ ସମାଜର ନିମ୍ନଜନଙ୍କ ପାଇଁ ତାଙ୍କର ସହାନୁଭୂତି ରହିବା ସ୍ୱାଭାବିକ । ମହାଭାରତରେ ସେ ପତିତ ଜନତା ପାଇଁ ଉଦାର ସମବେଦନା ପ୍ରଦର୍ଶନ କରିଅଛନ୍ତି । ଜାରା ଶବରକୁ ତାଙ୍କ ମହାକାବ୍ୟ ମହାଭାରତରେ ସେ ସମଗ୍ର ଅନାର୍ଯ୍ୟ ସଂସ୍କୃତିର ପ୍ରତୀକ ରୂପେ ଗ୍ରହଣ କରିଅଛନ୍ତି । ତାଙ୍କ ବର୍ଣ୍ଣନାରୁ ଜଣାଯାଏ, ଏକଦା ଜଗନ୍ନାଥ ଶବରୀ-ନାରାୟଣ ରୂପରେ ବିଶ୍ୱାବସୁ ଶବର ଦ୍ୱାରା ପୂଜିତ ହେଉଥିଲେ; କିନ୍ତୁ ଶେଷରେ ଅନ୍ନଭୋଜନ ନ ପାଇବାରୁ ବିଶ୍ୱାବସୁଙ୍କ ପୂଜା ଗ୍ରହଣ ନ କରି ଶବରୀ-ନାରାୟଣ ଅନ୍ତର୍ହିତ ହେଲେ । ଶବରୀ ନାରାୟଣ ନାମର ଅର୍ଥ ହୁଏତ ହୋଇପାରେ ଶବରମାନଙ୍କ ନାରାୟଣ ବା ଶବର-ପୂଜିତ-ନାରାୟଣ ।

ସାରଳା ମହାଭାରତ ଅନୁସାରେ, ବିଶ୍ୱାବସୁର ପୁତ୍ର ଜାରା ଶବର ଶରରେ ଶ୍ରୀକୃଷ୍ଣ ଆହତ ହୁଅନ୍ତି । ଶ୍ରୀକୃଷ୍ଣଙ୍କ ଇଚ୍ଛାନୁସାରେ ଜାରାଶବର ଅର୍ଜ୍ଜୁନଙ୍କୁ ଡାକି ଆଣେ । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ସ୍ପର୍ଶ କରିବା ମାତ୍ରେ ଶ୍ରୀକୃଷ୍ଣଙ୍କ ମୃତ୍ୟୁ ହେବ, ଏକଥା ଉଭୟେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଜାଣିଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ଅନୁରୋଧ ଭଙ୍ଗ କରି ନ ପାରି ଏବଂ ତାଙ୍କ କଷ୍ଟର ପରିସମାପ୍ତି ଇଚ୍ଛା କରି ଅର୍ଜ୍ଜୁନ ତାଙ୍କୁ ସ୍ପର୍ଶ କରନ୍ତି । ଫଳରେ ଶ୍ରୀକୃଷ୍ଣଙ୍କ ପ୍ରାଣବାୟୁ ଉଡ଼ିଯାଏ । ଜରାଶବରକୁ ଶ୍ରୀକୃଷ୍ଣଙ୍କ ମୃତ୍ୟୁ ନିମନ୍ତେ ଦାୟୀ କରି ଅର୍ଜ୍ଜୁନ ତାଙ୍କୁ ଆକ୍ରମଣ କରନ୍ତି । ଶୂନ୍ୟବାଣୀ ହୁଏ ଅର୍ଜ୍ଜୁନ ଓ ଜାରା ଉଭୟ ନୀଳ ସୁନ୍ଦର ପର୍ବତକୁ ଯାଇ ଶ୍ରୀକୃଷ୍ଣଙ୍କ ପିଣ୍ଡ ଦାହ କରିବା ନିମନ୍ତେ । ଅଗୁରୁ ବୃକ୍ଷ ଦ୍ୱାରା ପିଣ୍ଡ ଦାହ କାର୍ଯ୍ୟ କରାଯାଏ । ବୃକ୍ଷ ଦଗ୍ଧିଭୂତ ହୋଇଗଲା ପରେ ପିଣ୍ଡ ଅର୍ଦ୍ଧଦଗ୍ଧ ରହିଯାଏ । ପୁଣି ଶୁଣାଯାଏ ଶୂନ୍ୟବାଣୀ । ତଦନୁଯାୟୀ ଅର୍ଦ୍ଧଦଗ୍ଧ ପିଣ୍ଡକୁ ସମୁଦ୍ରରେ ନିକ୍ଷେପ କରି ଅର୍ଜ୍ଜୁନ ହସ୍ତିନାକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଜାରା ଶବର ସାଗର ବେଳାରେ ଅନେକ ଦୂର ଅତିକ୍ରମ କରିବା ପରେ ଉକ୍ତ ପିଣ୍ଡର ସନ୍ଧାନ ପାଏ । ଏହାକୁ ସେ ଶିଳାରୂପେ ସେ ଆରାଧନା କରେ । କେତେଦିନ ପରେ ରାଜା ଗାଳମାଧବ ବାସୁଦେବ ବ୍ରାହ୍ମଣ ସାହାଯ୍ୟରେ ଏହି ଶିଳାରୂପୀ ଦେବତାଙ୍କର ସନ୍ଧାନ ପାଆନ୍ତି ଏବଂ ପରେ ପରେ ଏହି ଦେବତାଙ୍କ ମାଲିକାନା ନେଇ ଜାରା ଓ ଗାଳମାଧବଙ୍କ ମଧ୍ୟରେ ଯୁଦ୍ଧର ସୂତ୍ରପାତ ହୁଏ । ଏହି ଯୁଦ୍ଧରେ ଏକ ଶହ ଛତିଶ ଜଣ ଶବରଙ୍କ ଶିରଚ୍ଛେଦ ହୁଏ । ଏଥିରେ ନାରାୟଣ ବାଧ୍ୟ ହୋଇ ହସ୍ତକ୍ଷେପ କରନ୍ତି । ଆକାଶବାଣୀ ଦ୍ୱାରା ସେ ଜଣାଇ ଦିଅନ୍ତି ଯେ ପରମ ସେବକ ଶବରମାନଙ୍କୁ ହତ୍ୟା କରିଥିବାରୁ ଗାଳମାଧବ ନିର୍ବଂଶ ହେବେ । ପୁନଶ୍ଚ ସେ ଜଣାଇ ଦିଅନ୍ତି ଯେ ଭବିଷ୍ୟତରେ ସେ ଯମନିକ ତୀର୍ଥରେ ପୁନର୍ବାର ଆବିର୍ଭୂତ ହେବେ ଏବଂ ନୀଳଗିରି

ପର୍ବତରେ ତାଙ୍କର ପୂଜାପୀଠ ସ୍ଥାପିତ ହେବ । ସେଠାରେ ସେ ନୀଳମାଧବ ନାମରେ ପୂଜିତ ହେବେ । କେବଳ ସେତିକି ନୁହେଁ, ତାଙ୍କ ପାଖରେ ଜାରାଶବର ବଂଶଧରଗଣ ଉପସ୍ଥିତ ହେବେ ।

"ଯେତେ ଜାରା ଶବର ବଂଶ ଥିବ ମୋର କତ
ଯେହାଙ୍କୁ ଦେଖିଲେ ଆମ୍ଭେ ହୋଇବୁ ହିପୂତ ।"

(ମୂଷଲୀ ପର୍ବ—ପୃ. ୮୫)

ମାଳବର ରାଜା ଇନ୍ଦ୍ରନୀଳସୁନ୍ଦର ପର୍ବତରେ ଏକ ପ୍ରକାଣ୍ଡ ମନ୍ଦିର ନିର୍ମାଣ କରନ୍ତି ; ମାତ୍ର ଦେବତା କାହାନ୍ତି ? ରାଜା ଇନ୍ଦ୍ରଦ୍ୟୁମ୍ନ ଜାରା ଶବରକୁ ବାରମ୍ବାର ଅନୁରୋଧ କରନ୍ତି ଶ୍ରୀକୃଷ୍ଣଙ୍କ ପିଣ୍ଡର ସନ୍ଧାନ ନେବା ନିମନ୍ତେ । ରାଜାଙ୍କୁ ସ୍ୱପ୍ନାଦେଶ ହୁଏ ଏବଂ ପରଦିନ ପ୍ରାତଃକାଳରେ ସେ ପିଣ୍ଡ ଖଣ୍ଡେ ରକ୍ତଚନ୍ଦନ କାଷ୍ଠ ରୂପରେ ରୋହିଣୀ କୁଣ୍ଡରେ ଭାସିଆସନ୍ତି । ରାଜା ଏହାକୁ ନିଜେ ଉଠାଇ ଆଣିବାକୁ ଉଦ୍ୟମ କରନ୍ତି ; ମାତ୍ର ଏହା ଏତେ ବେଶୀ ଓଜନ ବୋଧ ହୁଅନ୍ତି ଯେ ରାଜା ଏକାକୀ ଏହାକୁ ଉଠାଇବା ନିମନ୍ତେ ସମର୍ଥ ହୁଅନ୍ତି ନାହିଁ । ଶେଷରେ ରାଜାଙ୍କୁ ପୁନର୍ବାର ସ୍ୱପ୍ନାଦେଶ ହୁଏ ଯେ ଏହି ରକ୍ତଚନ୍ଦନ କାଠ ଖଣ୍ଡିକ ଉଠାଇବା ନିମନ୍ତେ ଏକ ପାର୍ଶ୍ୱରେ ଅନାର୍ଯ୍ୟ ଜାରା ଶବର ଏବଂ ଅନ୍ୟ ପାର୍ଶ୍ୱରେ ଆର୍ଯ୍ୟ ବିପ୍ର ବ୍ରାହ୍ମଣଙ୍କ ମିଳିତ ପ୍ରଚେଷ୍ଟା ହିଁ ଆବଶ୍ୟକ । ସେହିପରି ହୋଇଛି, ଜଗନ୍ନାଥ ଉଠିଛନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନ ତାପରେ କାଠରୁ ମୂର୍ତ୍ତି କାଟିବାର ଦାୟିତ୍ୱ ଦେଇଛନ୍ତି ଜାରା ଶବରକୁ । ଜଗନ୍ନାଥଙ୍କ ଆବିର୍ଭାବ ପ୍ରସଙ୍ଗରେ ଅନାର୍ଯ୍ୟ ଶବର ଜାତିକୁ ସଂଯୁକ୍ତ କରି ସାରଳା ଦାସ ସ୍ୱକୀୟ ଉଦାର୍ଯ୍ୟର ପରିଚୟ ପ୍ରଦାନ କରିଅଛନ୍ତି ।

ପୁନଶ୍ଚ କବିଙ୍କ ଚଣ୍ଡୀ ପୁରାଣରେ ଆମେ 'ଚଣ୍ଡାଳପୁର' ନାମକ ଏକ ନଗରର ବର୍ଣ୍ଣନା ଦେଖିବାକୁ ପାଉ । ପରୀକ୍ଷିତ ରାଜା ପ୍ରସଙ୍ଗ କ୍ରମେ ଚଣ୍ଡାଳପୁର ସମ୍ବନ୍ଧରେ ଜାଣିବାକୁ ଚାହିଁଛନ୍ତି । ଶୁକ ମୁନି କହୁଛନ୍ତି ଯେ ସତ୍ୟଯୁଗରେ ନହୁଷ ନାମରେ ଜଣେ ନରପତିଙ୍କ ରାଜ୍ୟରେ ପାଞ୍ଚବର୍ଷ ପର୍ଯ୍ୟନ୍ତ ବର୍ଷା ହୋଇନାହିଁ । ପୂର୍ବ ବର୍ଷର ଫସଲରେ ପ୍ରଜାଗଣ କଷ୍ଟେସୃଷ୍ଟେ ଚଳିଯାଇଅଛନ୍ତି ; ମାତ୍ର ତାପରେ ଖାଦ୍ୟାଭାବ ଅତି ଉତ୍କଟ ହେବାରୁ ସେହି ରାଜ୍ୟର ବ୍ରାହ୍ମଣଗଣ ବଶିଷ୍ଠ ମହର୍ଷିଙ୍କୁ ଅନୁରୋଧ କରିଛନ୍ତି ଯେ ସେ ତାଙ୍କ ପିତା ବ୍ରହ୍ମାଙ୍କୁ ଏ ବିଷୟ ଜଣାଇ ସମାଧାନର ପନ୍ଥା ସ୍ଥିର କରନ୍ତୁ । ବଶିଷ୍ଠ ମହର୍ଷି ବ୍ରହ୍ମାଙ୍କୁ ଜଣାଇବାରୁ ବ୍ରହ୍ମା ନାରଦଙ୍କୁ ଡାକି ତିନି ଭୁବନରେ କେଉଁଠାରେ ଶସ୍ୟ ମହଜୁଦ୍ ରହିଛି, ତାର ସନ୍ଧାନ ନେବାକୁ ଆଦେଶ ଦେଇଛନ୍ତି । ନାରଦ ବୁଲିଆଡ଼େ ବୁଲି ବୁଲି ଶେଷରେ ସିଂହଳ ଦ୍ୱୀପ ମଧ୍ୟସ୍ଥ ପୁଣ୍ୟତୋୟା ନଦୀ କୂଳରେ ଅବସ୍ଥିତ ଚଣ୍ଡାଳ ନଗରରେ ପ୍ରବେଶ କରିଛନ୍ତି । ସେଠାରେ ବାସ କରୁଥିବା ଅମ୍ବିକା ନାମକ ଚଣ୍ଡାଳର ପାଞ୍ଚପଦ୍ମ ଧାନଗଦା ଥିବାର ଦେଖିଛନ୍ତି । ଚଣ୍ଡାଳକୁ

ଯେ ନହୁଷ ରାଜାଙ୍କ ଜୀବନ ସୂତ୍ରରେ କିଛୁ ଧ୍ୟାନ ଦେବା ନିମନ୍ତେ ଅନୁରୋଧ କରିଛନ୍ତି । ମାତ୍ର ଚଣ୍ଡାଳ କହିଛନ୍ତି ଯେ ତା'ର ଅବିବାହିତ କନ୍ୟାକୁ ଯେ ବିବାହ କରିବ, ତା'ର ଗଚ୍ଛିତ ସମସ୍ତ ଧାନ ସେ ତାକୁ ଯୌତୁକ ସ୍ୱରୂପ ପ୍ରଦାନ କରିବ । ବଶିଷ୍ଠ ନହୁଷ ରାଜାଙ୍କୁ ଧାନର ସନ୍ଧାନ ଦେବାରୁ, ନହୁଷ ଅମ୍ବିକା ଚଣ୍ଡାଳ ନିକଟରେ ପହଞ୍ଚି ତା'ଠାରୁ ଧାନ ନେବାକୁ ଚାହିଁଛନ୍ତି । ଚଣ୍ଡାଳ ତା'ର ପୂର୍ବ ସର୍ତ୍ତ ବାଢ଼ିବାରୁ ରାଜା ଫେରି ଆସିଛନ୍ତି । ବଶିଷ୍ଠ ମହର୍ଷି ରାଜାଙ୍କ ଫେରିଆସିବାର କାରଣ ବ୍ରହ୍ମାଙ୍କୁ କହିବାରୁ, ବ୍ରହ୍ମା ଅମ୍ବିକା ଚଣ୍ଡାଳର କନ୍ୟାକୁ ବିବାହ କରିବା ପାଇଁ ବଶିଷ୍ଠଙ୍କୁ ଆଦେଶ ଦେଇଛନ୍ତି । ବଶିଷ୍ଠ ପିତୃ ଆଦେଶ ପାଳନ କରି ଅମ୍ବିକା ଚଣ୍ଡାଳର କନ୍ୟା ଅରୁନ୍ଧତୀର ପାଣିଗ୍ରହଣ କରିଛନ୍ତି ଏବଂ ଯୌତୁକ ସ୍ୱରୂପ ପାଇଥିବା ଶସ୍ୟ ନହୁଷଙ୍କୁ ପ୍ରଦାନ କରି ତାଙ୍କ ରାଜ୍ୟର ପ୍ରଜାବର୍ଗଙ୍କ ଦୁଃଖମୋଚନ କରିଛନ୍ତି ।

ଚଣ୍ଡାଳ କନ୍ୟା ଅରୁନ୍ଧତୀ ବଶିଷ୍ଠଙ୍କ ସହିତ ସଂସାର ଆରମ୍ଭ କରିଛନ୍ତି । ତାଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ଦେବର୍ଷି, ରାଜର୍ଷି ଓ ମହର୍ଷିଗଣ ମହାନନ୍ଦରେ ଭୋଜନ କରିଛନ୍ତି । ଯଜ୍ଞ କଲାବେଳେ ବଶିଷ୍ଠ ଅରୁନ୍ଧତୀଙ୍କ ସହାୟତା ମଧ୍ୟ ଲାଭ କରିଛନ୍ତି । କବି ଲେଖିଛନ୍ତି—

> 'ଯାହା ରାନ୍ଧେ ଅରୁନ୍ଧତୀ ସୁଧାହୋଇଯାଇ
> ଦେବଋଷି ରାଜଋଷି କରନ୍ତି ତା ଭୋଗ ।
> ବଶିଷ୍ଠେ ଯାଗ କରିଲେ ଅରୁନ୍ଧତୀ ଯେନି
> ଅନ୍ନପୂର୍ଣ୍ଣା ସଙ୍ଗେ ହେଲ ସେ ସ୍ୱର୍ଗଗାମିନୀ ।'

(ଚଣ୍ଡୀ ପୁରାଣ—ପୃ. ୬୨)

ଏଠାରେ ଚଣ୍ଡାଳ ଯୁବତୀ ସହିତ ବେଦପତି ବ୍ରହ୍ମାଙ୍କ ପୁତ୍ର ବଶିଷ୍ଠ ମହର୍ଷିଙ୍କୁ ବିବାହ ବନ୍ଧନରେ ବାନ୍ଧି ଦେବା ଫଳରେ ସାରଳା ଦାସ ଚଣ୍ଡାଳ ଜାତି ଭଳି ସମାଜର ନୀଚ ଜାତି ପ୍ରତି ସମ୍ବେଦନଶୀଳ ଥିବାର ପ୍ରମାଣିତ ହୁଏ । ସାରଳାଙ୍କ ଗ୍ରନ୍ଥମାନଙ୍କରେ ଏକ ସ୍ୱତନ୍ତ୍ର ମାନବିକ ଆବେଦନ ରହିଥିବାର ଲକ୍ଷ୍ୟ କରାଯାଏ । ଆହୁରି ମଧ୍ୟ ଲକ୍ଷ୍ୟ କରାଯାଏ ଯେ ସାମ୍ୟ ମୈତ୍ରୀର ମନ୍ତ୍ର ପ୍ରଚାର କରି ଏକ ଶ୍ରେଣୀହୀନ ସମାଜ ଗଠନ କରିବାର ସ୍ୱପ୍ନ ଏହି କୃଷକ କବି ଆଜିଠାରୁ ଛଅଶହ ବର୍ଷ ପୂର୍ବରୁ ଦେଖିଥିଲେ ।

## ପ୍ରସଙ୍ଗାତ୍ମକ ବିବରଣୀ

### ସୁରେଖା ରାକ୍ଷସୀ :

ରାମଙ୍କ ସହିତ ଯୁଦ୍ଧକରି ସହସ୍ରଶିରା ରାବଣର ମନ୍ତ୍ରୀ ସପ୍ତଶିରା ଓ ସପ୍ତଶିରାର ପୁତ୍ର ନାଭିଦୈତ୍ୟ ମୃତ୍ୟୁ ବରଣ କରିବା ପରେ ସପ୍ତଶିରାର ସ୍ତ୍ରୀ ସୁରେଖା ଅସୁରା ସ୍ୱାମୀ

ଓ ପୁତ୍ରହନ୍ତାଙ୍କୁ ହତ୍ୟାକରି ପ୍ରତିଶୋଧ ନେବା ନିମନ୍ତେ ମନସ୍ଥ କରିଛି । ମାୟାବଳରେ ଏକ ଅପୂର୍ବ ସୁନ୍ଦରୀ ନାରୀବେଶ ଧାରଣ କରି ସେ ଶ୍ରୀରାମ ଓ ହନୁମାନ ବାସ କରୁଥିବା ପର୍ବତ ନିକଟରେ ପହଞ୍ଚି ଉଚ୍ଚ ସ୍ୱରରେ ରୋଦନ କରିଛି । ତା'ର କରୁଣ କ୍ରନ୍ଦନ ଶୁଣି ସବିଶେଷ ତଥ୍ୟ ଜାଣିବା ନିମନ୍ତେ ରାମ ହନୁମାନଙ୍କୁ ପଠାଇଛନ୍ତି । ହନୁମାନ ସେଠାରେ ପହଞ୍ଚି ସେହି କ୍ରନ୍ଦନରତା ଯୁବତୀର ପରିଚୟ ପଚାରିଛି । ଉତ୍ତରରେ ମାୟାବିନୀ ରାକ୍ଷସୀ କହୁଛି ଯେ ପୁଣ୍ୟବନରେ ତା'ର ନିବାସ । ତା'ର ପିତା ତାରକା ଓ ଭାଇ ସୁରସେନ । ଶତ୍ରୁ ସେମାନଙ୍କ ରାଜ୍ୟ ଆକ୍ରମଣ କରି ସେମାନଙ୍କୁ ହତ୍ୟା କରିଛି ଏବଂ ସେମାନଙ୍କ ରାଜ୍ୟ ଧ୍ୱଂସ କରିଛି । ଅନ୍ୟ ଉପାୟ ନ ଦେଖି, ସେ ଅଯୋଧ୍ୟା ଯିବାକୁ ବାଟ ଖୋଜୁଛି । କାରଣ ଅଯୋଧ୍ୟାରେ ବାସ କରୁଥିବା ଜନକ ନନ୍ଦିନୀ ଜାନକୀ ତା'ର ବାଲ୍ୟସାଥୀ । ତାପରେ ସେ ହନୁମାନଙ୍କୁ ଅନୁରୋଧ କରିଛି, ତାକୁ ଅଯୋଧ୍ୟାରେ ପହଞ୍ଚିବାରେ ସାହାଯ୍ୟ କରିବା ନିମନ୍ତେ । ହନୁମାନ ତାଙ୍କୁ ବିଭିନ୍ନ ପ୍ରକାର ସାନ୍ତ୍ୱନା ଦେଇଅଛି ଏବଂ ରାମଙ୍କ ପାଖକୁ ଫେରିଆସି ସମସ୍ତ ବୃତ୍ତାନ୍ତ ଜଣାଇଛି । ରାମଚନ୍ଦ୍ରଙ୍କ ପରାମର୍ଶ କ୍ରମେ ସେ ମାୟାରୂପଧାରିଣୀ ଅସୁରୀକୁ ସସମ୍ମାନେ ନିଜ ବାସସ୍ଥାନ ପର୍ବତକୁ ନେଇଆସିଛି ଏବଂ ତାକୁ ସୁମିଷ୍ଟ ଫଳମୂଳ ଭୋଜନ କରିବା ନିମନ୍ତେ ପ୍ରଦାନ କରିଛି ।

ସନ୍ଧ୍ୟାପରେ ରାତି ହୋଇଛି । ରାକ୍ଷସୀ ମନେ ମନେ ଚିନ୍ତା କରିଛି, କିପରି ରାମଚନ୍ଦ୍ରଙ୍କୁ ଭକ୍ଷଣ କରିବ । ଶେଷରେ ସ୍ଥିର କରିଛି ଯେ ପ୍ରଥମେ ସେ ହନୁମାନଙ୍କୁ ଗିଳିବ । ହନୁମାନଙ୍କୁ ସେ ପାଖକୁ ଡାକି ତା ସହିତ ରତିକ୍ରୀଡ଼ା କରିବାର ଇଚ୍ଛା ପ୍ରକାଶ କରିଛି । ଏପରି ଆଚରଣରେ ହନୁମାନର ମନରେ ସନ୍ଦେହ ଜନ୍ମିଛି । ସେ ଭାବିଛି ବୋଧହୁଏ ସେ ପ୍ରକୃତରେ ସୀତାଙ୍କ ମିତଣୀ ନୁହେଁ, ବଳଙ୍କାର ଅସୁରୀ । ହନୁମାନ ତା'ର ପ୍ରକୃତ ପରିଚୟ ଜାଣିଯିବା ଭୟରେ ସେ ମୁହଁ ବିସ୍ତାର କରି ହନୁମାନଙ୍କୁ ଉଦରସ୍ଥ କରିଛି ଏବଂ ତତ୍‌କ୍ଷଣାତ୍ ସେହି ସ୍ଥାନ ତ୍ୟାଗକରି ବଳଙ୍କା ନଗରକୁ ଫେରି-ଯାଇଛି । ସେଠାରେ ସେ ସହସ୍ରଶିରା ସମ୍ମୁଖରେ ସମସ୍ତ କଥା ବର୍ଣ୍ଣନ କରି ଗର୍ଭସ୍ଥ କରିଥିବା ହନୁମାନଙ୍କୁ ଉଦ୍‌ଗାର କରିଛି ।

ହନୁମାନର ମାଂସ କାଟି ଖାଇଯିବାକୁ ବଳଙ୍କା ରାବଣ ଆଦେଶ ଦେଇଛି । ହନୁମାନଙ୍କୁ ଦେଖିବା ପାଇଁ ବହୁ ରାକ୍ଷସ ରାକ୍ଷସୀଙ୍କର ଭିଡ଼ ଜମିଛି । ରାବଣରେ ସାତ-ଶହ ପରିବୃତ୍ତରାଣୀ ହନୁମାନର ମାଂସ କାଟି ଖାଇବା ଉଦ୍ଦେଶ୍ୟରେ କୁଠାର ଓ ପନିକି-ମାନ ହାତରେ ଧରି ତା'ର ଚାରିପାଖରେ ବେଢ଼ି ଯାଇଛନ୍ତି । ମୃତପ୍ରାୟ ପଡ଼ିରହିଥିବା ହନୁମାନ ଏହା ଦେଖି ସାମାନ୍ୟ ହସି ଦେଇଛି । ପଡ଼ିଥିବା ସ୍ଥାନରୁ ଉଠି ସେ ସେମାନଙ୍କ ହାତରୁ କୁଠାର, ପନିକି ଇତ୍ୟାଦି ଛଡ଼ାଇ ସେମାନଙ୍କୁ ଲଙ୍ଗୁଡ଼ରେ ଛନ୍ଦି ଗୋଟି ଗୋଟି କରୁଛି । ସେମାନଙ୍କ ମଧ୍ୟରୁ କେତେକଙ୍କ କାନ, କେତେକଙ୍କ ନାକ

ଓ ଅନ୍ୟ କେତେକଙ୍କ ଗାଲ୍ କାଟି ପକାଇଛନ୍ତି । ଆବାଳ ବୃଦ୍ଧ-ବନିତାଙ୍କୁ ସେ ପ୍ରହାର କରିଛି ଏବଂ ଲଙ୍କା ପୁରକୁ ଛାରଖାର କରି ପକାଇଛି ।

( ବିଲଙ୍କା ରାମାୟଣ )

## ବେଲ୍ଲାଳସେନ :

ଭୀମଙ୍କ ଔରସରୁ ଓ ନାଗକନ୍ୟା ବେଲ୍ଲବଳୀଙ୍କ ଗର୍ଭରୁ ବେଲ୍ଲାଳସେନଙ୍କ ଜନ୍ମ । ଧନୁର୍ବିଦ୍ୟାରେ ବେଲ୍ଲାଳସେନ ଏତେ ସିଦ୍ଧହସ୍ତ ଥିଲେଯେ ବଞ୍ଚିରହିଥିଲେ ସେ ଏକାକୀ କୌରବ କୁଳକୁ ନିମିଷକ ମଧ୍ୟରେ ଧ୍ୱଂସ କରି ପାରିଥାନ୍ତେ । ଫଳତଃ ଅଳ୍ପ ସମୟ ମଧ୍ୟରେ ମହାଭାରତ ଯୁଦ୍ଧର ଅବସାନ ଘଟିଥାନ୍ତା; କିନ୍ତୁ ଯୁଦ୍ଧର ସମାପ୍ତି ଏତେ ଶୀଘ୍ର ଘଟୁ; ଏକଥା କପଟୀ ଶ୍ରୀକୃଷ୍ଣ ଚାହୁଁ ନ ଥିଲେ । କାରଣ ଦୀର୍ଘ ଅଠର ଦିନ ଧରି ଯୁଦ୍ଧର କୌତୁକ ଉପଭୋଗ କରିବା ସୁଯୋଗ ହାତରୁ ଛାଡ଼ି ଦେବାକୁ ସେ ଚାହୁଁ ନ ଥିଲେ । ଏହି ପରିପ୍ରେକ୍ଷୀରେ ସେ କୌଶଳ କ୍ରମେ ନିଷ୍କପଟ ବେଲ୍ଲାଳସେନକୁ ପ୍ରତିଜ୍ଞା-ବଦ୍ଧ କରାଇ ତା'ର ଶିର ମାଗି ବସିଲେ । ପ୍ରତିଜ୍ଞାବଦ୍ଧ ବେଲ୍ଲାଳସେନ ଶିର ଦାନ ନିମନ୍ତେ ସମ୍ମତ ହେବାକୁ ବାଧ୍ୟ ହେଲେ; ମାତ୍ର ଏଥି ନିମନ୍ତେ ସେ ଏକ ସର୍ତ୍ତ ଆରୋପ କଲେ । କାଳେ ବେଲ୍ଲାଳ ତାଙ୍କ ଶିର ପୁନର୍ବାର ଫେରାଇ ନେବା ନିମନ୍ତେ ସର୍ତ୍ତ ବାଢ଼ିବେ ସେଥି ନିମନ୍ତେ ଶ୍ରୀକୃଷ୍ଣ କହିଲେ ଯେ ମୁଣ୍ଡ ଫେରାଇ ଦେବା ସର୍ତ୍ତ ବ୍ୟତୀତ ଅନ୍ୟ ଯେ କୌଣସି ସର୍ତ୍ତରେ ସେ ରାଜି । ଏହା ଶୁଣି ବେଲ୍ଲାଳ ସାମାନ୍ୟ କ୍ଷୁଣ୍ଣ ହେଲେ । କାରଣ ଥରେ ପ୍ରଦାନ କରିଥିବା ପଦାର୍ଥ ଫେରସ୍ତ ଚାହିଁବା କ୍ଷତ୍ରିୟ-ଧର୍ମ ବିରୁଦ୍ଧ । ସେ କେବଳ ଦିବ୍ୟ-ଚକ୍ଷୁ ଚାହୁଁଥିଲେ, ଅଠର ଦିନର ଯୁଦ୍ଧ ଅବଲୋକନ ନିମିତ୍ତ । ତାଙ୍କ ସର୍ତ୍ତାନୁ-ଯାୟୀ ତାଙ୍କ ଶିରଚ୍ଛେଦ କରାଗଲା ଏବଂ ଶ୍ରୀକୃଷ୍ଣଙ୍କ ଦ୍ୱାରା ଦିବ୍ୟଚକ୍ଷୁ ପ୍ରଦାନ କରାଯାଇ ତାହାକୁ ଏକ ସ୍ତମ୍ଭ ଉପରେ ସ୍ଥାପନ କରାଗଲା । ଏଠାରେ ସତ୍ୟସନ୍ଧ ବେଲ୍ଲାଳଙ୍କର ମହନୀୟ ଉଦାରତା, କୁଚକ୍ରୀ ଶ୍ରୀକୃଷ୍ଣଙ୍କ ହୀନ ଧୂର୍ତ୍ତତା ତୁଳନାରେ ଅନେକ ବଡ଼ ବୋଲି ମନେ ହୁଏ ।

## ଜରାସନ୍ଧ ବଧ :

ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ଯୁଧିଷ୍ଠିର ରାଜସୂୟ ଯଜ୍ଞର ଆୟୋଜନରେ ଲାଗି ପଡ଼ିଛନ୍ତି । ରାଜସୂୟ ଯଜ୍ଞକୁ ବିଭିନ୍ନ ଦେଶର ରାଜାମାନଙ୍କୁ ନିମନ୍ତ୍ରଣ କରିବାର ବିଧି ଥିବାରୁ ସେମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ସ୍ଥିର କରାଯାଇଛି; ମାତ୍ର ମଗଧ ଦେଶର ରାଜା ଜରାସନ୍ଧ ସୁଦ୍ଧା ତିରିଶି ଲକ୍ଷେ ରାଜାଙ୍କୁ ବନ୍ଦୀକରି ରଖିଥିବାରୁ ଯଥେଷ୍ଟ ସଂଖ୍ୟକ ରାଜାଙ୍କ ଅଭାବରେ ଯଜ୍ଞ ଅନୁଷ୍ଠିତ ହେବାର ପ୍ରତିବନ୍ଧକ ସୃଷ୍ଟି ହୋଇଛି । ଜରାସନ୍ଧକୁ ବଧ ନ କଲେ ଏହି ରାଜାମାନଙ୍କର ମୁକ୍ତି ସମ୍ଭବ ନୁହେଁ । ଏଣୁ ତାକୁ ବଧ କରିବା ନିମନ୍ତେ ଶ୍ରୀକୃଷ୍ଣ, ଭୀମ ଓ ଅର୍ଜ୍ଜୁନ ବ୍ରାହ୍ମଣ ବେଶ ଧାରଣ ପୂର୍ବକ ମଗଧ ଯାତ୍ରା କରି-

ଛନ୍ତି । ସେମାନେ ଦେଖିଛନ୍ତି ଯେ ଜରାସନ୍ଧର ପ୍ରାସାଦ ମଧ୍ୟରେ ପ୍ରବେଶ କରିବା ନିମିତ୍ତ ସେମାନଙ୍କୁ ଗୃହଗୋଟି ଜାଗ୍ରତ ପ୍ରହରୀଙ୍କୁ ଅତିକ୍ରମ କରିଯିବାକୁ ପଡ଼ିବ । କୌଶଳକ୍ରମେ ସେମାନେ ଏହି ଗୃହଗୋଟି ପ୍ରହରୀଙ୍କୁ ବଶକରି ଜରାସନ୍ଧ ନିକଟରେ ପହଞ୍ଚିଛନ୍ତି । ଜରାସନ୍ଧର ରାଜସଭାରେ ବେଦ ଧ୍ୱନି କରି ଶ୍ରୀକୃଷ୍ଣ ତାର ଦୃଷ୍ଟି ଆକର୍ଷଣ କରିଅଛନ୍ତି ଏବଂ ପରେ ପରେ ତାକୁ ସତ୍ୟବଦ୍ଧ କରାଇଛନ୍ତି । ତାପରେ ଆରମ୍ଭ ହୋଇଛି ଦାନ ଗ୍ରହଣ ପର୍ବ । ପ୍ରତିଜ୍ଞାବଦ୍ଧ ଜରାସନ୍ଧକୁ ଦାନ ସ୍ୱରୂପ ସେମାନଙ୍କ ସହିତ ଯୁଦ୍ଧ କରିବାକୁ କୁହାଯାଇଛି । ଏହି ତିନିଜଣ ବ୍ରାହ୍ମଣଙ୍କୁ ଯୁଦ୍ଧରେ ହତ୍ୟା କରିବା କିଛି ଗୋଟିଏ ଗୌରବପୂର୍ଣ୍ଣ କାର୍ଯ୍ୟ ହୋଇ ନ ଥିବାରୁ ସେ ଏହା କରିବାକୁ ପ୍ରଥମେ କୁଣ୍ଠା ପ୍ରକାଶ କରିଛି । ଏହି ସମୟରେ ଶ୍ରୀକୃଷ୍ଣ ସରସ୍ୱତୀଙ୍କୁ ସ୍ମରଣ କରି ତାଙ୍କୁ ଜରାସନ୍ଧର କଣ୍ଠରେ ବିଜେ କରିବା ନିମିତ୍ତ ନିର୍ଦ୍ଦେଶ ଦେଇଛନ୍ତି । ବାକ୍‌ଦେବୀଙ୍କ ପ୍ରଭାବ ଫଳରେ ଜରାସନ୍ଧ ଯୁଦ୍ଧ କରିବା ପାଇଁ ଆଗେଇ ଆସିଛି ଏବଂ ଏହି ତିନି ବ୍ରାହ୍ମଣଙ୍କ ମଧ୍ୟରେ ସେ ପ୍ରଥମେ ମଲ୍ଲ ଚେହେରା ଯୁକ୍ତ ଭୀମଙ୍କୁ ମନୋନୀତ କରିଛି । ଭୀମ ଓ ଜରାସନ୍ଧଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଛି । ବାରମ୍ବାର ଚେଷ୍ଟାକରି ଭୀମ ଜରାସନ୍ଧକୁ ବଧ କରିବା ନିମନ୍ତେ ସମର୍ଥ ହୋଇ ନାହାନ୍ତି । ଶେଷରେ ଶ୍ରୀକୃଷ୍ଣ ଜରାସନ୍ଧର ମୃତ୍ୟୁ-ଭେଦ ଭୀମଙ୍କୁ କୌଶଳକ୍ରମେ ଜଣାଇ ଦେଇଅଛନ୍ତି । ସେ ଗୋଟିଏ ଘାସତିକୁ ଲେଉଟାଇ ଧରି ତାହାକୁ ଦୋନି ଫାଳ କରି ଚିରି ଦେଇଅଛନ୍ତି । ଭୀମ ଶ୍ରୀକୃଷ୍ଣଙ୍କ ଇଙ୍ଗିତାନୁଯାୟୀ ଜରାସନ୍ଧକୁ ଚିରି ଦୁଇ ଫାଳରେ ବିଭକ୍ତ କରିଦେଇଛନ୍ତି । ଫଳରେ ଜରାସନ୍ଧର ମୃତ୍ୟୁ ଘଟିଛି ।

## ଜତୁଗୃହ ଦାହ :

ଶକୁନି ଦୁର୍ଯ୍ୟୋଧନର ମନ୍ତ୍ରୀତ୍ୱ ଲାଭ କରିବା ପରେ ପାଣ୍ଡବମାନଙ୍କୁ ବିନାଶ କରିବା ନିମନ୍ତେ କୌରବମାନଙ୍କ ଦ୍ୱାରା ଉପାୟ ଚିନ୍ତା କରାଯାଇଛି । ଏହି ସମୟରେ ପୁରୋଚନ ପଣ୍ଡା ନାମକ ଏକ ବ୍ରାହ୍ମଣର ସନ୍ଧାନ ଦୁର୍ଯ୍ୟୋଧନ ପାଇଛନ୍ତି ଏବଂ ଏହି ପୁରୋଚନ ପାଣ୍ଡବମାନଙ୍କ ନିଧନର ଉପାୟ ସ୍ଥିର କରିଛି । ତା ଯୋଜନା ଅନୁଯାୟୀ ପାଣ୍ଡବମାନଙ୍କୁ ଏକ ଗ୍ରାମ ଛାଡ଼ି ଦିଆଯିବ, ଯେଉଁଠାରେ ସେମାନଙ୍କ ରହିବା ନିମନ୍ତେ ପୂର୍ବରୁ ଜଉ, ଗୁଆ ଘିଅ, ଛଣପଟ ଇତ୍ୟାଦି ସାହାଯ୍ୟରେ ଏକ ସୁନ୍ଦର ଗୃହ ନିର୍ମାଣ କରାଯାଇଥିବ । ସେମାନେ ସେଥିରେ ବାସ କରିବା ପରେ କୌଶଳକ୍ରମେ ସେଥିରେ ଅଗ୍ନି ସଂଯୋଗ କରାଯିବ, ଯାହା ଫଳରେ ସେମାନେ ପଞ୍ଚତ୍ୱ ପ୍ରାପ୍ତ ହେବେ ।

ଆବଶ୍ୟକ ମୁତାବକ ଦ୍ରବ୍ୟ ପୁରୋଚନ ପଣ୍ଡାଙ୍କୁ ଯୋଗାଇ ଦିଆଯାଇଛି । ସେ ଦୀର୍ଘ ପାଞ୍ଚ ବର୍ଷ କାଳ ପରିଶ୍ରମ କରି ବାରୁଣାବନ୍ତରେ ଏକ ସୁରମ୍ୟ ପ୍ରାସାଦ ନିର୍ମାଣ କରିଛି । ଏହାର କାଛ, ଗୃଳ, ରୁଅ, ବତା ଇତ୍ୟାଦି ଜଉ, ଗୁଆଘିଅ, ଛଣପଟ ଇତ୍ୟାଦି ଦ୍ରବ୍ୟର ମିଶ୍ରଣରେ ନିର୍ମିତ ହୋଇଥିଲେ ହେଁ ଏହା ଅଷ୍ଟରତ୍ନ, ମୁକ୍ତା ଇତ୍ୟାଦି

ବହୁ ମୂଲ୍ୟବାନ ରତ୍ନ ଖଚିତ ହୋଇ ଅତି ମନୋରମ ଦିଶୁଛି । ପାଣ୍ଡବ ପାଞ୍ଚଭାଇଙ୍କୁ ଡକାଇ ଏହି ଗୃହରେ ବାସ କରିବା ପାଇଁ ଧୃତରାଷ୍ଟ୍ର ସେମାନଙ୍କୁ କହିଛନ୍ତି । ପାଣ୍ଡବମାନେ ଏହି ସୁନ୍ଦର ଗୃହ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଛନ୍ତି ଏବଂ ଦୁର୍ଯ୍ୟୋଧନର ତାଙ୍କ ପ୍ରତି ଦୟାର କାରଣ ଅନୁସନ୍ଧାନ କରିବାରେ ଲାଗିପଡ଼ିଛନ୍ତି । ଦୁର୍ଯ୍ୟୋଧନର ଏହା ପଛରେ କି ଉଦ୍ଦେଶ୍ୟ ରହିଛି ତାହା ଯୁଧିଷ୍ଠିର ସର୍ବଜ୍ଞ ସହଦେବଙ୍କଠାରୁ ଜାଣିବାକୁ ପାଇଛନ୍ତି । ବିଦୁର ମଧ୍ୟ ଦୁର୍ଯ୍ୟୋଧନର ମନ୍ଦ ଉଦ୍ଦେଶ୍ୟ ପାଣ୍ଡବଙ୍କୁ ଜଣାଇଛନ୍ତି । ତାଙ୍କ ନିର୍ଦ୍ଦେଶାନୁଯାୟୀ ଭୀମ ରାତିରେ ଜତୁଗୃହର ଚତୁପାର୍ଶ୍ୱରେ ପ୍ରହରୀ କାର୍ଯ୍ୟ କରିଛନ୍ତି ।

ଏହି ବିପଦରୁ ପାଣ୍ଡବମାନଙ୍କୁ ରକ୍ଷା କରିବା ନିମନ୍ତେ ବିଦୁର ଚିନ୍ତିତ ହୋଇପଡ଼ିଛନ୍ତି । ସେ ରାତରେ ସିନ୍ଧି କରୁଥିବା ଏକ ଚୋରର ସନ୍ଧାନ ପାଇଛନ୍ତି ଯେ ଶ୍ରୀକୃଷ୍ଣ ଓ ବୃଦ୍ଧା ଦୂତୀ ସହଜ ସୁନ୍ଦରୀର ମିଳନ ଫଳରେ ଜନ୍ମ ନେଇଥିବାର ନିଜର ପରିଚୟ ପ୍ରଦାନ କାଳରେ ପ୍ରକାଶ କରିଛି । ତାହାର ସାହାଯ୍ୟରେ ବିଦୁର ବିଶାଳକାୟ ସୁଡ଼ଙ୍ଗ ସୁରନଦୀ କୂଳରୁ ଜତୁଗୃହ ପର୍ଯ୍ୟନ୍ତ ଖୋଳାଇଛନ୍ତି । ସୁବିଧା ସମୟ ଦେଖି ନିଜର ଚାରିଭାଇ ଓ ମାତା କୁନ୍ତୀଙ୍କୁ ବହନ କରି ଭୀମ ଏହି ସୁଡ଼ଙ୍ଗ ବାଟେ ସୁରନଦୀ କୂଳକୁ ନେଇଯାଇଅଛନ୍ତି ଏବଂ ସେଠାରୁ ଫେରି ଜତୁଗୃହରେ ଅଗ୍ନି ସଂଯୋଗ କରିଦେଇଛନ୍ତି । ସେଠାରେ ନିଦ୍ରା ଯାଇଥିବା ପୁରୋଚନ ପଣ୍ଡାଙ୍କୁ ଭୀମ ଅଗ୍ନିକୁ ନିକ୍ଷେପ କରିଛନ୍ତି । ପରଦିନ ପଞ୍ଚପାଣ୍ଡବ ମାତା କୁନ୍ତୀଙ୍କ ସମେତ ଜତୁଗୃହରେ ଦଗ୍ଧୀଭୂତ ହୋଇଥିବା ସନ୍ଧାନ ପ୍ରଚାରିତ ହୋଇଛି ।

## ଦୁର୍ଦ୍ଦକ୍ଷ :

ଗାନ୍ଧାରୀ ଚରିତ୍ର ଦ୍ରଷ୍ଟବ୍ୟ ।

## ଦୁର୍ଯ୍ୟୋଧନର ଚକ୍ରନଦୀ ସନ୍ତରଣ :

'ସାହିତ୍ୟିକ ମୂଲ୍ୟ' ପରିଚ୍ଛେଦର 'ବିଭିନ୍ନ ରସ' ଆଲୋଚନା ଦ୍ରଷ୍ଟବ୍ୟ ।

## ଗୋଲକ ପୁତ୍ର ରହସ୍ୟ :

ଅନ୍ୟତ୍ର ଆଲୋଚିତ 'ମନ ଜାଣେ ପାପ, ମାଆ ଜାଣେ ବାପ' ପ୍ରବଚନ ଦ୍ରଷ୍ଟବ୍ୟ ।

## ଶାହାଡ଼ାଗଛ ମାହାତ୍ମ୍ୟ :

'ସଂସ୍କୃତ ମହାଭାରତ ଓ ସାରଳା ମହାଭାରତ' ପରିଚ୍ଛେଦ ଅନ୍ତର୍ଗତ 'ଅନୁକ୍ତ ପ୍ରକ୍ଷେପ' ଦ୍ରଷ୍ଟବ୍ୟ ।

## ଶିବପୁରରେ ଭୀମଙ୍କ ସିଂହାସନାରୋହଣ :

ଅଜ୍ଞାତବାସ କାଳରେ ପାଣ୍ଡବମାନେ ଭାରତସାରା ଭ୍ରମଣ କରୁଥିଲେ । ସେମାନେ ତୀର୍ଥସ୍ଥାନ ରୂପେ ପରିଚିତ ଓଡ଼ିଆ ଶିବପୁରରେ ପହଞ୍ଚିବା ପରେ ବିଷ୍ଣୁକର ପଣ୍ଡା ନାମକ ଜନୈକ ବ୍ରାହ୍ମଣ ଗୃହରେ ଆଶ୍ରୟ ଗ୍ରହଣ କଲେ । ଏହି ସମୟରେ ଗୌତମୀ ତୀର୍ଥରେ ବୁଡ଼ ପଡୁଥିବାର ଖବର ପାଇ ଯୁଧିଷ୍ଠିର, ଅର୍ଜୁନ, ନକୁଳ ଓ ସହଦେବ ବୁଡ଼ ପକାଇବା ନିମନ୍ତେ ବାହାରିଲେ । ବିଷ୍ଣୁକର ପଣ୍ଡା ଘରେ ରହିଲେ କୁନ୍ତୀ ଓ ଭୀମ । ଦିନେ ଭୀମ ଦେଖିଲେ ଯେ ସେହି କ୍ଷୁଦ୍ର ନଗରୀରେ ଯୁଦ୍ଧ ନିମନ୍ତେ ଆୟୋଜନ ଚାଲିଛି । ଶାନ୍ତ ବାତାବରଣ କ୍ରମଶଃ ଅଶାନ୍ତ ହୋଇ ଉଠୁଛି । ଭୀମ ଏହାର କାରଣ ବିଷ୍ଣୁକର ପଣ୍ଡାଙ୍କୁ ପଚାରିବାରୁ , ସେ ଉତ୍ତର ଦେଲେ ଯେ ବହୁକାଳ ପୂର୍ବେ ସେହି ନଗରୀରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର ଦୁଇଗୋଟି ପୁତ୍ର ଥିଲେ । ଏକଦା ସେ ବୈତରଣୀରେ ସ୍ନାନ କରିବାକୁ ଯାଉଥିବା ସମୟରେ ଏକ ଚଣ୍ଡାଳ ଯୁବତୀ ଦ୍ୱାରା ବଶୀଭୂତ ହେଲେ । ତାଙ୍କ ସହିତ ସେ ଚଣ୍ଡାଳୀ ଦଶବର୍ଷ ବାସକରି ଦଶଗୋଟି ପୁତ୍ର ସନ୍ତାନ ଜାତକଲା । କାଳକ୍ରମେ ବ୍ରାହ୍ମଣର ବିବାହିତ ବ୍ରାହ୍ମଣୀର ଦୁଇପୁତ୍ର ଏବଂ ଚଣ୍ଡାଳୀର ଦଶପୁତ୍ର ମଧ୍ୟରେ ବିବାଦ ଲାଗିଲା । ସେହିଦିନଠାରୁ ଉତ୍ତରଦେଶରେ ବାସକରୁଥିବା ଚଣ୍ଡାଳୀ ପୁତ୍ରଗଣ ପ୍ରତିବର୍ଷ ଶ୍ରାବଣ ମାସରେ ସେହି ନଗରୀ ଆକ୍ରମଣ କରି ଲୁଣ୍ଠନ କରନ୍ତି । ସେମାନଙ୍କ ଆକ୍ରମଣ କାଳ ନିକଟ ହୋଇ ଆସୁଥିବାରୁ ଗ୍ରାମବାସୀଗଣ ଆକ୍ରମଣର ପ୍ରତିରୋଧ କରିବା ନିମନ୍ତେ ପ୍ରସ୍ତୁତ ହେଉଅଛନ୍ତି । ଏହା ଶୁଣି ଭୀମ ନୀରବ ରହିଲେ ।

ନିର୍ଦ୍ଦିଷ୍ଟ ସମୟରେ ଉତ୍ତରଦେଶର ଚଣ୍ଡାଳମାନେ ଲୁଣ୍ଠନ ନିମନ୍ତେ ଶିବପୁର ଆକ୍ରମଣ କଲେ । ନଗରବାସୀଙ୍କୁ ରକ୍ଷା କରିବା ପାଇଁ ଭୀମ ଗୋଟିଏ ଗଛ ଉପାଡ଼ି ଚଣ୍ଡାଳମାନଙ୍କର ମୁକାବିଲା କଲେ । ତାଙ୍କ ପ୍ରହାରରେ ଭୟଭୀତ ହୋଇ ସେମାନେ ପ୍ରାଣ ବିକଳରେ ସେହି ସ୍ଥାନ ପରିତ୍ୟାଗ କଲେ । ଭୀମଙ୍କ ଅସୀମ ଶକ୍ତିର ପରିଚୟ ପାଇ ସେ ରାଜ୍ୟର ଅଧିବାସୀଗଣ ଭୀମଙ୍କୁ ସେଠାରେ ରାଜା କଲେ । ଭୀମ ବିଷ୍ଣୁକର ପଣ୍ଡାଙ୍କୁ ମନ୍ତ୍ରୀ ରୂପେ ନିଯୁକ୍ତ କଲେ । ସମୟକ୍ରମେ ଭୀମ ପଡ଼ୋଶୀ ରାଜ୍ୟସବୁ ନିଜ ସାମ୍ରାଜ୍ୟଭୁକ୍ତ କରି ଏକ ବିରାଟ ରାଜ୍ୟର ରାଜା ହିସାବରେ ଗୌରବ ଅର୍ଜନ କଲେ । ଅନ୍ୟଭାଇମାନେ ତୀର୍ଥ ଯାତ୍ରାରୁ ଫେରି ଆସିବା ପରେ ଭୀମ ଶିବପୁରରେ ବିଷ୍ଣୁକର ପଣ୍ଡାଙ୍କୁ ରାଜାକରି ସେମାନଙ୍କ ସହିତ ବନଗାମୀ ହେଲେ ।

## ଗ୍ରାମଦେବତୀମାନଙ୍କ ଉତ୍ପତ୍ତି :

'ଚଣ୍ଡୀପୁରାଣ' ଆଲୋଚନା ଦ୍ରଷ୍ଟବ୍ୟ ।

## ମେଦିନୀର ଉତ୍ପତ୍ତି :

ମେଦିନୀ ଉତ୍ପତ୍ତି ସମ୍ବନ୍ଧରେ ଏକ ସୁନ୍ଦର କାହାଣୀ ଚଣ୍ଡୀପୁରାଣର ଆରମ୍ଭରେ ପ୍ରଦତ୍ତ । ମହାପ୍ରଳୟକାଳରେ ସମଗ୍ର ପୃଥିବୀ ଜଳମଗ୍ନ ଥିଲା । ନିଦ୍ରିତ ନାରାୟଣ କର୍ଣ୍ଣମଳ ତ୍ୟାଗ କରିବାରୁ ତହିଁରୁ ଦୁଇଟି ରାକ୍ଷସ ଜାତ ହେଲେ । ସେମାନଙ୍କ ନାମ ମଧୁକୈଟଭ । ସେମାନେ ଆକାରରେ ଏତେ ବିରାଟ ଥିଲେ ଯେ ମହାପ୍ରଳୟରେ ମଧ୍ୟ ସେମାନଙ୍କ ପାଦ ଜଳରେ ବୁଡୁଲା ନାହିଁ । ନାରାୟଣଙ୍କ ନିକଟରେ ଉପସ୍ଥିତା ବାକ୍ୟ ଦେବୀଙ୍କ ଅପରୂପ ସୌନ୍ଦର୍ଯ୍ୟରେ ସେମାନେ ମୁଗ୍ଧ ହୋଇ ତାଙ୍କ ପ୍ରତି ମନ୍ଦ ଇଚ୍ଛା ପୋଷଣ କଲେ । ଭୟଭୀତା ହୋଇ ବାକ୍ୟଦେବୀ ସୁପ୍ତ ନାରାୟଣଙ୍କୁ ଜାଗ୍ରତ କରାଇଲେ । ନାରାୟଣ ରାକ୍ଷସଙ୍କ ଏପରି ଆଚରଣରେ କ୍ଷୁବ୍ଧ ହୋଇ ସେମାନଙ୍କ ବିନାଶ ନିମନ୍ତେ ଚକ୍ର ନିକ୍ଷେପ କଲେ । ରାକ୍ଷସ ଦ୍ୱୟ ଭୟଭୀତ ହୋଇ ନାରାୟଣଙ୍କ ଶରଣ ପଶିଲେ ଏବଂ ଅଜ୍ଞତା ବଶତଃ କରିଥିବା ଅପରାଧ ନିମନ୍ତେ କ୍ଷମା ମାଗିଲେ । ଯେଉଁ ସ୍ଥାନରେ ଜଳ ନ ଥିବ ସେପରି ସ୍ଥାନରେ ସେମାନଙ୍କୁ ବଧ କରିବା ନିମନ୍ତେ ସେମାନେ ପ୍ରାର୍ଥନା କଲେ । ନାରାୟଣ ଗଦାଘାତରେ ସେମାନଙ୍କୁ ବଧ କରି ଜଳ ଉପରେ ନିକ୍ଷେପ କରିବା ଫଳରେ ପୃଥିବୀ ସୃଷ୍ଟି ହେଲା । ରାକ୍ଷସ ଦ୍ୱୟଙ୍କ ମେଦରେ ପୃଥିବୀ ସୃଷ୍ଟି ହୋଇଥିବାରୁ ଏହାର ନାମ ହେଲା ମେଦିନୀ । କବି ଲେଖିଛନ୍ତି—

"ଗଦା ପ୍ରଘାତରେ ତାଙ୍କ ମାଂସ କଲେ ଲେପ୍ତ
ଜଳ ଉପରେ ପକାଇ ପୃଥ୍ୱୀ କଲେ ସୃଷ୍ଟି ।

ମେଦକୁ ମରଦ୍ଦ କରେ ସର୍ଜିଲେ ମେଦିନୀ
ଏ ରୂପେ ମେଦିନୀ ହେଲେ ସେହି ଦୈତ୍ୟବେନି ।"

(ଚଣ୍ଡୀପୁରାଣ—ପୃ. ୬)

## ଶୁମ୍ଭ ନିଶୁମ୍ଭ :

ସମୁଦ୍ରର ପଶ୍ଚିମ କୂଳରେ କୁଳବତୀ ପାଟଣା ନାମକ ରାଜ୍ୟରେ ଶୁମ୍ଭ ନିଶୁମ୍ଭ ନାମକ ରାକ୍ଷସ ଦ୍ୱୟ ନରପତି ଥିଲେ । ଦିଗ୍‌ବିଜୟ କାଳରେ ମହିଷାସୁର ସେମାନଙ୍କ ସହିତ ଯୁଦ୍ଧ କରି ପ୍ରବଳ ପରାକ୍ରମଶାଳୀ ଏହି ରାକ୍ଷସ ଦ୍ୱୟଙ୍କୁ ପରାସ୍ତ କରିପାରିଲା ନାହିଁ । କାରଣ ଏ ଦୁହେଁ ମଧ୍ୟ କଠୋର ତପସ୍ୟା ବଳରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଲକ୍ଷେ ସିଂହର ପରାକ୍ରମ ଲାଭ କରିଥିଲେ । ଏହି ଯୁଦ୍ଧ ପରେ ସେମାନଙ୍କ ମଧ୍ୟରେ ବନ୍ଧୁତା ସ୍ଥାପିତ ହେଲା ଏବଂ କାଳକ୍ରମେ ଶୁମ୍ଭ ନିଶୁମ୍ଭଙ୍କୁ ମହିଷାସୁର ସେନାପତି ପଦ ପ୍ରଦାନ କରାଗଲା ।

ଏକଦା ନାରଦ ମହର୍ଷିଙ୍କଠାରୁ ଶୁମ୍ଭ ନିଶୁମ୍ଭ ଜାଣିବାକୁ ପାଇଲେ ଯେ ସେମାନଙ୍କ ରାଜ୍ୟରେ ଐରାବତ ହସ୍ତୀ, ଉଚ୍ଚୈଃଶ୍ରବାଃ ଅଶ୍ୱ, ରମ୍ଭା ଅପ୍‌ସରା ଓ ପାରିଜାତ ତରୁ ଅଭାବ ଥିବାରୁ ତାହା ସ୍ୱର୍ଗ ସମକକ୍ଷ ନୁହେଁ । ଏଗୁଡ଼ିକ ପାଇବା ପାଇଁ ଶୁମ୍ଭ ନିଶୁମ୍ଭ ସ୍ୱର୍ଗ ନରପତି ଇନ୍ଦ୍ରଙ୍କ ନିକଟକୁ ଶସ୍ତ୍ର ପ୍ରହସ୍ତଙ୍କୁ ଦୂତ ରୂପେ ଏକ ଶ୍ରୀମୁଖ ସହିତ ପଠାଇଲେ । ଦୂତ ଦୁହିଁଙ୍କୁ ଇନ୍ଦ୍ର ହତ୍ୟା କରିବାର ସମ୍ବାଦ ପାଇ ଶୁମ୍ଭ ନିଶୁମ୍ଭ ସ୍ୱର୍ଗପୁର ଆକ୍ରମଣ କଲେ । ସେମାନେ ଦେବତାଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଇଲେ । ଦେବତାଗଣ ଭୟଭୀତ ହୋଇ ଆତ୍ମଗୋପନ କଲେ । ରାକ୍ଷସ ଦ୍ୱୟଙ୍କ ନିମନ୍ତ୍ରଣ ପାଇ ମହିଷାସୁର ସ୍ୱର୍ଗରେ ପ୍ରବେଶ ହେଲା । ଏହାର ଉପସ୍ଥିତରେ ଦେବତାଙ୍କ ଦୁଃଖ ବଢ଼ିଗଲା । ଏଣୁ ସେମାନେ ଏକତ୍ରିତ ହୋଇ ବିଷ୍ଣୁଙ୍କୁ ସେମାନଙ୍କ କଷଣ ଦୂର କରିବା ନିମନ୍ତେ ପ୍ରାର୍ଥନା କଲେ । ସମସ୍ତ ଦେବତାଙ୍କ ଉପସ୍ଥିତରେ ମହାନଳ ଜାତ ହେଲା ଏବଂ ସେଥିରୁ ଦେବୀ ଦୁର୍ଗା ଜାତ ହେଲେ । ଦେବତାଙ୍କଠାରୁ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର, ବାହନ ଏବଂ ଶକ୍ତି ଗ୍ରହଣ କରି ସେ ରାକ୍ଷସମାନଙ୍କୁ ବିନାଶ କରିବା ନିମିତ୍ତ ରତ୍ନଗିରି ପର୍ବତରେ ଅବସ୍ଥାନ କଲେ ।

ମହିଷାସୁରର ଆଦେଶରେ ଶୁମ୍ଭ ନିଶୁମ୍ଭ ଅସାଧାରଣ ଲାବଣ୍ୟମୟୀ ଦେବୀ-ଦୁର୍ଗାଙ୍କୁ ଧରିନେବା ପାଇଁ ରତ୍ନଗିରିରେ ପ୍ରବେଶ ହେଲେ । ଦେବୀଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ସେମାନଙ୍କ ମନରେ ଚମକ ଖେଳାଇଦେଲା । ସେମାନେ ଦେବୀଙ୍କୁ ପାଇବା ନିମନ୍ତେ ବ୍ୟାକୁଳ ହୋଇ ପଡ଼ିଲେ । ଦେବୀଙ୍କର ଯେ କୌଣସି ଆଦେଶ ପାଳନ କରିବା ନିମିତ୍ତ ସେମାନେ ଅବିଲମ୍ବେ ରାଜି ହୋଇଗଲେ । ନୃତ୍ୟ ପରିବେଷଣ କରିବା ପାଇଁ ଆଦେଶ ପାଇ ସେମାନେ ବିଭିନ୍ନ ପ୍ରକାର ନୃତ୍ୟ ଆରମ୍ଭ କଲେ । କାମାନ୍ଧ ରାକ୍ଷସ ଦ୍ୱୟ ନୃତ୍ୟରେ ମଜ୍ଜି ଯାଇଥିବା ସମୟରେ ଜଣଙ୍କର ହାତ ଅନ୍ୟ ଜଣଙ୍କର ମୁଣ୍ଡରେ ରଖି ନୃତ୍ୟ କରିବା ନିମନ୍ତେ ଦେବୀଙ୍କଠାରୁ ଆଦେଶ ପାଇ ମନ୍ତ୍ରମୁଗ୍ଧବତ୍ ଦୁହେଁ ସେହିପରି କରିବାରୁ ବ୍ରହ୍ମାଙ୍କ ବରାନୁଯାୟୀ ପ୍ରଜ୍ୱଳିତାଗ୍ନି ପ୍ରାୟ ଜଳି ଉଠିଲେ ।

(ଚଣ୍ଡୀ ପୁରାଣ)

## ବୈରୋଚନ :

ଚଣ୍ଡୀ ପୁରାଣରେ ବୈରୋଚନ ଚରିତ୍ରର ଆବଶ୍ୟକତା ଥିଲା ଭଳି ମନେହୁଏ ନାହିଁ । ଏହି ଚରିତ୍ରଟି ବାଦ୍ ଦେଇଥିଲେ ପୁସ୍ତକର ଆଙ୍ଗିକ ସୌନ୍ଦର୍ଯ୍ୟ ହାନି ହୋଇ ନ ଥାନ୍ତା । ଅନ୍ଧକ ମର୍ଦ୍ଦୀ ଏହି ଚରିତ୍ରଟି ମହିଷାସୁରକୁ କହିଅଛି । ହିରଣ୍ୟ ରାକ୍ଷସର ପୁତ୍ର ପ୍ରହଲ୍ଲାଦ ଏବଂ ପ୍ରହଲ୍ଲାଦର ପୁତ୍ର ବୈରୋଚନ । ଏହି ବୈରୋଚନ ବ୍ରହ୍ମାଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ବରଲାଭ କରିଥିଲା ଯେ ସେ ଦେବ କିମ୍ବା ଦାନବଙ୍କ ଦ୍ୱାରା ନିହତ ହେବ ନାହିଁ, ରାତିରେ ମରିବ ନାହିଁ କିମ୍ବା ଦିନରେ ମରିବ ନାହିଁ, ଘରେ

ମରିବ ନାହିଁ କିମ୍ବା ବାହାରେ ମରିବ ନାହିଁ ଏବଂ ପୁରୁଷ ରୂପରେ କେହି ତାକୁ ମାରିପାରିବେ ନାହିଁ । ଦିନକୁ ଦିନ ତ୍ରୈଲୋଚନ ରାକ୍ଷସର ଉପଦ୍ରବ ବଢ଼ିବାରେ ଲାଗିଲା । ତା' ଭୟରେ ଦେବତାମାନେ ସୁଖଶାନ୍ତିରେ କାଳାତିପାତ କରିପାରିଲେ ନାହିଁ । ଏହି ପ୍ରତିକାର ନିମନ୍ତେ ସେମାନେ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ତ୍ରୈଲୋଚନକୁ ମାରିବା ପାଇଁ ବିଷ୍ଣୁ ସ୍ତ୍ରୀ ରୂପ ଧାରଣ କରି ମର୍ତ୍ତ୍ୟକୁ ଆଗମନ କଲେ । ମୃଗୟାରେ ଆସିଥିବା ତ୍ରୈଲୋଚନ ବନ ମଧ୍ୟରେ ମାଳତୀ ନାମ୍ନୀ ଏହି ଅପୂର୍ବ ସୁନ୍ଦରୀ ଯୁବତୀକୁ ଦେଖି ତାକୁ ନିଜର ସ୍ତ୍ରୀ କରିବା ନିମନ୍ତେ ରାଜପ୍ରାସାଦକୁ ନେଇଆସିଲା । ସଦାସର୍ବଦା ସେ ମାଳତୀ ନିକଟରେ ରହି ଦୁନିଆର ଅନ୍ୟ ସମସ୍ତ କଥା ଭୁଲିଯିବାକୁ ଲାଗିଲା ।

ଅସୁରକୁ ସମ୍ପୂର୍ଣ୍ଣ ରୂପେ ବଶ କରିବା ପରେ ମାଳତୀ ତା'ର ମୃତ୍ୟୁ ରହସ୍ୟ ପଚାରିଲା । ଅସୁର ପ୍ରେମ ବିହ୍ୱଳରେ କହିଲା ଯେ ତା ମୁଣ୍ଡରେ ଗୋଟିଏ ପିଙ୍ଗଳ କେଶ ରହିଛି । ଯଦି କେହି ସ୍ତ୍ରୀ ରାତି ବା ଦିନ ଭିନ୍ନ ଅନ୍ୟ ସମୟରେ ଏବଂ ଘର ବା ବାହାର ଭିନ୍ନ ଅନ୍ୟସ୍ଥାନରେ ସେହି କେଶଟି ଉପାଡ଼ି ପାରିବ, ତେବେ ତା'ର ପ୍ରାଣ ଜନ୍ତୁରାଣି ନେବାକୁ ସମର୍ଥ ହେବ । କପରି ତ୍ରୈଲୋଚନକୁ ଶମନପୁରୀ ପଠାଇବାକୁ ମାଳତୀ ଚିନ୍ତା କଲା । ଗୋଟିଏ ମୃଗଚର୍ମର ଆବଶ୍ୟକତା ଥିବାର ଦର୍ଶାଇ ମାଳତୀ ତ୍ରୈଲୋଚନକୁ ବନକୁ ପଠାଇଲା । କୌଣସି ଜୀବଜନ୍ତୁ ନ ପାଇ ସେ ଫେରି ଆସିଲା । ମାୟାବଳରେ ମାଳତୀ ତା ମୁଣ୍ଡରେ କିଛି ଉକୁଣୀ ନିକ୍ଷେପ କଲା । ନଖରେ ମୁଣ୍ଡକୁ କୁଣ୍ଡାଇ କୁଣ୍ଡାଇ ସେ ମାଳତୀ ନିକଟରେ ପହଞ୍ଚିଲା । ମୁଣ୍ଡର ଉକୁଣୀ ଖୋଜି ମାରିଦେବାକୁ ସେ ମାଳତୀକୁ ମୁଣ୍ଡ ଦେଖାଇଲା । ମାଳତୀ ଏହି ସୁଯୋଗ ଖୋଜୁଥିଲା । ସେ ନିଜର ଦୁଇ ଜାନୁ ମଧ୍ୟରେ ରାକ୍ଷସର ମୁଣ୍ଡ ରଖି ଉକୁଣି ମାରିବାକୁ ଆରମ୍ଭ କଲା । ସେ ଏପରି ଏକ ସ୍ଥାନରେ ବସି ରାକ୍ଷସର ଉକୁଣୀ ମାରିଲା ଯେ ରାକ୍ଷସର ଅଣ୍ଟାଠାରୁ ଗୋଡ଼ ପର୍ଯ୍ୟନ୍ତ ଘରର ବାହାରେ ରହିଲା ଏବଂ ଅଣ୍ଟାଠାରୁ ମୁଣ୍ଡ ପର୍ଯ୍ୟନ୍ତ ଅଂଶ ଘର ଭିତରେ ରହିଲା । ଉକୁଣି ଖୋଜିବା ସମୟରେ ପିଙ୍ଗଳ କେଶର ସନ୍ଧାନ ସେ ପାଇଗଲା । ତ୍ରୈଲୋଚନ ଉକୁଣୀଙ୍କ ପ୍ରକୋପରୁ ରକ୍ଷା ପାଇବା ପାଇଁ 'ଶୀଘ୍ର ମାର', 'ଶୀଘ୍ର ମାର' କହି ପାଟି କରୁଥିଲା । ସନ୍ଧ୍ୟା ଆଗତ ହେଲା । ଏହି ସମୟ ଥିଲା ଉପଯୁକ୍ତ ସମୟ । କାରଣ ଏହା ରାତି ନ ଥିଲା ବା ଦିନ ନ ଥିଲା । ଦୁର୍ଦ୍ଦାନ୍ତ ରାକ୍ଷସର ସମ୍ପୂର୍ଣ୍ଣ ଶରୀର ଘର ଭିତରେ ନ ଥିଲା କିମ୍ବା ଘର ବାହାରେ ନ ଥିଲା । ମଦ୍ୟପ ରାକ୍ଷସ ପ୍ରାୟ ଚେତନା ହରାଇ ସାରିଥିଲା । ମାଳତୀ ପିଙ୍ଗଳ କେଶଟିକୁ ଧରି ଖୁବ୍ ଜୋରରେ ଉପାଡ଼ି ଦେବା ଫଳରେ ରାକ୍ଷସର ପ୍ରାଣବାୟୁ ଉଡ଼ିଗଲା ।

(ଚଣ୍ଡୀପୁରାଣ)

## ସହାୟକ ଗ୍ରନ୍ଥସୂଚୀ


୧ । ଶ୍ରୀ ଭାରତ ଦର୍ପଣ - ପଣ୍ଡିତ ଗୋପୀନାଥ ନନ୍ଦଶର୍ମା (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ୧୯୬୪

୨ । ସାରଳା ସ୍ମରଣିକା ପ୍ରଜାତନ୍ତ୍ର ପ୍ରଚାର ସମିତି ୧୯୫୪

୩ । ଓଡ଼ିଆ ସାହିତ୍ୟର ଇତିହାସ (୨ୟ ଭାଗ)—ଡଃ ବଂଶୀଧର ମହାନ୍ତି

୪ । ଓଡ଼ିଆ ସାହିତ୍ୟର ଇତିହାସ (୧ମ ଭାଗ)—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ

୫ । ଓଡ଼ିଆ ସାହିତ୍ୟର ଆଦିପର୍ବ—ଶ୍ରୀ ସୁରେନ୍ଦ୍ର ମହାନ୍ତି (୧୯୭୭)

୬ । ଓଡ଼ିଆ ସାହିତ୍ୟର ଇତିହାସ ସମ୍ପର୍କରେ (୧ମ ଭାଗ)—ଡଃ ହେ. କୃ. ଦାସ ଓ ଶ୍ରୀ ଜଗମଣି ମିଶ୍ର

୭ । ଓଡ଼ିଆ ସାହିତ୍ୟର ଇତିହାସ—ଶ୍ରୀ ପଠାଣି ପଟ୍ଟନାୟକ

୮ । ଓଡ଼ିଆ ସାହିତ୍ୟର ଇତିହାସ —ଡଃ ମାୟାଧର ମାନସିଂହ

୯ । ସାରଳା ସାହିତ୍ୟର ଐତିହାସିକ ଚିତ୍ର - ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

୧୦ । ସାରଳା ମହାଭାରତ (ଶୁଦ୍ଧ ସଂସ୍କରଣ)—ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା

୧୧ । ଝଙ୍କାର, ନବରବି, ସହକାର ପ୍ରଭୃତି ମାସିକ ପତ୍ରିକା